ଭକ୍ତକବି ଜଗନ୍ନାଥ ଦାସ ଙ୍କ

# ଶୈବାଗମ ଭାଗବତ



ସଂପାଦନା· ପ୍ରଦୀପ୍ତ କୁମାର ପଣ୍ଡା

ଭକ୍ତକବି ଜଗନ୍ନାଥ ଦାସଙ୍କ ବିରଚିତ

# ବୈଷ୍ଣବାଗମ ଭାଗବତ

ଶୁଦ୍ଧ ସମ୍ପାଦନା ଓ ବୈଜ୍ଞାନିକ ମୁଖବନ୍ଧ

ଶ୍ରୀ ପ୍ରଦୀପ୍ତ କୁମାର ପଣ୍ଡା



ପ୍ରାପ୍ତିସ୍ଥାନଃ

ଧର୍ମଗ୍ରନ୍ଥ ଷ୍ଟୋର

ଅଲିଶା ବଜାର, କଟକ-୨

ଫୋନ୍ ନଂ-୨୪୭୯୬

# ଶୈବାଗମ ଭାଗବତ

ଲେଖକ:
ଭକ୍ତକବି ଜଗନ୍ନାଥ ଦାସ

ସମ୍ପାଦକ:
ଶ୍ରୀ ପ୍ରଦୀପ୍ତ କୁମାର ପଣ୍ଡା
ଗବେଷକ, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

ପ୍ରକାଶକ:
ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶା ବଜାର, କଟକ-୨

ମୁଦ୍ରଣ:
ବିମଳା ଲ' ପ୍ରିଣ୍ଟର୍ସ
ଅଲିଶା ବଜାର, କଟକ-୨

ପ୍ରଚ୍ଛଦ:
ଶ୍ରୀ ପରେଶ ପଟ୍ଟନାୟକ

ନୂତନ ମୁଦ୍ରଣ:

ଦଶହରା, ୧୯୮୩

ମୂଲ୍ୟ—ବାରଟଙ୍କା ମାତ୍ର

---

Saivagama Bhagavata : written by Jegannatha Das, Edited by P. K. Panda, Published by "Dharma Grantha Store", Alisha Bazar, Cuttack,

ଏ ଗ୍ରନ୍ଥର ବକ୍ତା ଓ ଶ୍ରୋତା

ବିଶ୍ୱ ସୃଷ୍ଟିର ମୂଳାଧାର

ଆଦି ବୈଷ୍ଣବ

ଭଗବାନ ଈଶ୍ୱର-ପାର୍ବତୀଙ୍କର

ଚରଣ କମଳରେ

ଶ୍ରଦ୍ଧା ଓ ଭକ୍ତି ସହ

ନିବେଦନ କରୁଚି ।

ପ୍ରଦୀପ୍ତ

# ମୁଖବନ୍ଧ

"ମାତା ତୋଷିବାକୁ ମୋ ସଖା ଜାଣ
ଭାଗବତ ଗ୍ରନ୍ଥ ମୁଖେ ବଖାଣ ।" ( ଅଚ୍ୟୁତାନନ୍ଦ )

ଜରା ପ୍ରପୀଡ଼ିତା ଜନନୀର ସନ୍ତାନଠାରେ ଭାଗବତ ତତ୍ତ୍ୱ ଶ୍ରବଣର ଆକୁଳ ଆକୁତି, ପରିଂପରା ପ୍ରସୂତ ଜାତିନମନ୍ତେ ଚିରନ୍ତନ ଲାଗି ସୃଷ୍ଟିକଲା ନୂତନ ଇତିହାସ । ବୃଦ୍ଧା ଜନନୀର ଅନ୍ତିମ ଅଭିଳାଷକୁ ଚରିତାର୍ଥ କରିବାକୁ ଯାଇ ଯୁବକ ଜଗନ୍ନାଥ ଦାସ ଲେଖିଲେ ଦେଶ ଭାଷାର ସୁନ୍ଦର ସରଳ ପଦାବଳୀରେ 'ଭାଗବତ'। ଆଜ ଉତ୍କଳର ପୁରପଲ୍ଲୀରେ ଏହି ଭାଗବତ ତାର ଅମୃତ ପ୍ରରୂପ ନିମନ୍ତେ ଆଦୃତ ଲାଭ କରିଅଛି । ଓଡ଼ିଶାରେ ପ୍ରତ୍ୟେକ ଗ୍ରାମରେ ଭାଗବତ ଟୁଙ୍ଗୀ ସୃଷ୍ଟି ହୋଇଛି । ପୁରାଣ ପଣ୍ଡା ପ୍ରତ୍ୟେହ ସନ୍ଧ୍ୟା ସମସ୍ତଙ୍କୁ କହି ଭାଗବତ ପାଠ କରନ୍ତି । କର୍ମକ୍ଳାନ୍ତ ଜୀବନରେ କୃଷିଭିତ୍ତିକ ଓଡ଼ିଆ ଜୀବନର ଶାନ୍ତ ସ୍ନିଗ୍ଧ ସନ୍ଧ୍ୟାରେ ଏତିକ ମାତ୍ର ଆଶ୍ୱସ୍ତି । ଗୋଟିଏ ଜନନୀର ଅଭିପ୍ସା ଚରିତାର୍ଥ କରିବା ପାଇଁ ସୃଷ୍ଟି ଭାଗବତ ଆଜ କୋଟି କୋଟି ଓଡ଼ିଆଙ୍କର ମହାମୂଲ୍ୟ ମଣିରୂପେ ପରିଣତ ହୋଇ ପାରିଛି । ଜାତି ଗଠନ, ନିରକ୍ଷରତା ଦୂରୀକରଣ ଓ ସର୍ବୋପରି ସାଧାରଣ ଜନଜୀବନରେ ଶୃଙ୍ଖଳାଜ୍ଞାନର ପ୍ରସାର ନିମିତ୍ତ ଓଡ଼ିଆ ପରିବାର ନିକଟରେ ଭାଗବତର ଅନେକ ଅବଦାନ ରହିଛି ।

ଏହି ଭାଗବତ ରଚୟିତା ଭକ୍ତକବି ଜଗନ୍ନାଥ ଦାସ ଥିଲେ ସେ ଯୁଗର ଜଣେ ଅସାଧାରଣ ପଣ୍ଡିତ ଓ ଭକ୍ତ । ଜୀବନବ୍ୟାପୀ

ସାଧନା ଫଳରେ ଓଡ଼ିଆ ସାହିତ୍ୟକୁ ସେ କେବଳ ଭାଗବତ ନୁହେଁ; ତତ୍ସହିତ ଅନ୍ୟ ଅନେକ ଗ୍ରନ୍ଥ ଦାନ କରି ଯାଇଛନ୍ତି । ଜଗନ୍ନାଥ ଦାସଙ୍କ ସମ୍ପର୍କରେ ଆଲୋଚନା କରି ବହୁ ଆଲୋଚକ ସେ ଗ୍ରନ୍ଥଗୁଡ଼ିକ ବିଷୟରେ ସୂଚନା ପ୍ରଦାନ କରି ଅଛନ୍ତି । କିନ୍ତୁ ପୌର୍ଣ୍ଣମାସୀ ରଜନୀରେ ଧ୍ରୁବାଦି ସମସ୍ତ ଉଜ୍ଜ୍ୱଳ ଜ୍ୟୋତିଷ୍କ ନିଷ୍ପ୍ରଭ ହେବାଭଳି ଜଗନ୍ନାଥ ଦାସଙ୍କ ସମସ୍ତ ରଚନା ମଧ୍ୟରୁ 'ଭାଗବତ'ର ଉଭୟ ସାହିତ୍ୟିକ ଓ ଆଧ୍ୟାତ୍ମିକ ଗୁରୁତ୍ୱ ନିକଟରେ ତାଙ୍କର ଅନ୍ୟ ସମସ୍ତ ଗ୍ରନ୍ଥ ହୀନପ୍ରଭ ହୋଇପଡ଼ିଛନ୍ତି । ପଠନ, ପାଠନ ଓ ଲିଖନର ଅଭାବରୁ ମଧ୍ୟ ଅନେକ ଗ୍ରନ୍ଥ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଗଲାଣି । କବିଙ୍କର 'ଶୈବାଗମ' ଗ୍ରନ୍ଥ ଏହିପରି ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ ହେଲେ ମଧ୍ୟ ତାହା ଆଜି ପର୍ଯ୍ୟନ୍ତ ପ୍ରକାଶ ଆଲୋକ ଦେଖି ନାହିଁ । ୧୯୨୧ ମସିହାରେ ପ୍ରକାଶିତ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ଅନ୍ତର୍ବର୍ତ୍ତୀ 'ଶ୍ରୀ ଜଗନ୍ନାଥ ଦାସ ଗୋସ୍ୱାମୀ' ପୁସ୍ତକରେ ପଣ୍ଡିତ ମିଶ୍ର ଜଗନ୍ନାଥ ଦାସଙ୍କର ରଚନାଗୁଡ଼ିକର ତାଲିକା ପ୍ରସ୍ତୁତ କଲାବେଳେ 'ଶୈବାଗମ ଭାଗବତ'ର ନାମ ଉଲ୍ଲେଖ କରିଛନ୍ତି । ପୁନଶ୍ଚ ୧୯୭୫ରେ ଡଃ ନିତ୍ୟାନନ୍ଦ ଶତପଥୀଙ୍କ କର୍ତ୍ତୃକ ପ୍ରଜ୍ୟପ୍ରଜ୍ଞା ସଂସଦ' କଟକଙ୍କ ତରଫରୁ ପ୍ରକାଶିତ ଅନ୍ତର୍ବର୍ତ୍ତୀ ପରିକ୍ରମା'ରେ ପଞ୍ଚସଖା ଓ ଜଗନ୍ନାଥ ଦାସ' ପ୍ରବନ୍ଧରେ ପଣ୍ଡିତ କୁଳମଣି ପାଠୀଶର୍ମା 'ଶୈବ ଭାଗବତ'ର ନାମ ଉଲ୍ଲେଖ କରିଛନ୍ତି । ୧୯୭୬ ଖ୍ରୀଷ୍ଟାବ୍ଦରେ ଡ. ଆଶୁତୋଷ ପଟ୍ଟନାୟକ ତାଙ୍କର ଗବେଷଣାତ୍ମକ ନିବନ୍ଧ 'ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀରାଧା'ରେ ଜଗନ୍ନାଥ ଦାସଙ୍କ ସାହିତ୍ୟରେ ଶ୍ରୀରାଧାଙ୍କ ସ୍ୱରୂପ ବିଶ୍ଳେଷଣ କରିବାକୁ ଯାଇ 'ଶୈବାଗମ' ଉପରେ ଆଲୋକପାତ କରିଛନ୍ତି ।

କିନ୍ତୁ ତାହା ଏ ପର୍ଯ୍ୟନ୍ତ ଅପ୍ରକାଶିତ ଅଛି । ଡ. ବଂଶୀଧର ମହାନ୍ତି ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସ 'ତ୍ରିଶପୁରାଣ'ରେ 'ଶୈବାଗମ ଭାଗବତ' ଶୀର୍ଷକ ଆଲୋଚନାରେ ଏହିଗ୍ରନ୍ଥ ଉପରେ ସମ୍ୟକ୍ ଆଲୋକପାତ କରିଛନ୍ତି ।

ଜଗନ୍ନାଥ ଦାସ ପ୍ରମୁଖ ପଞ୍ଚସଖାମାନେ ଥିଲେ ଉତ୍କଳ ଭୂଖଣ୍ଡରେ ଜ୍ଞାନମିଶ୍ରା ଭକ୍ତିଧର୍ମର ପ୍ରବର୍ତ୍ତକ ଓ ପ୍ରଚାରକ । ସର୍ବ-ସାଧାରଣଙ୍କ ନିକଟରେ ଜ୍ଞାନମିଶ୍ରା ଭକ୍ତିର ଜଟିଳତତ୍ତ୍ୱକୁ ପୁରାଣ ଓ କାବ୍ୟଗ୍ରନ୍ଥମାନ ରଚନା କରି ସେମାନଙ୍କ ଧର୍ମ ବିଷୟରେ ସଚେତନ କରାଇବା ଥିଲା ପଞ୍ଚସଖା ଗୋଷ୍ଠୀର ସାଧକ ମାନଙ୍କର ମୁଖ୍ୟ ଲକ୍ଷ୍ୟ । ଏହି ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ବଳରାମ ଦାସଙ୍କର 'ବେଦାନ୍ତସାର ଗୁପ୍ତଗୀତା' ଜଗନ୍ନାଥଦାସଙ୍କର 'ଶୈବାଗମ' ଅଚ୍ୟୁତାନନ୍ଦଙ୍କର 'ଶୂନ୍ୟସଂହିତା, ଓ 'ଗୁରୁଭକ୍ତି ଗୀତା' ଯଶୋବନ୍ତ-ଙ୍କର ପ୍ରେମଭକ୍ତି ବ୍ରହ୍ମଗୀତା ଓ ଅନନ୍ତଦାସଙ୍କର ହେତୁଉଦୟ ଭାଗବତଗ୍ରନ୍ଥ ରଚିତ । ବଡ଼ଦୁଃଖର କଥା ଯେ ଅନ୍ୟ ସମସ୍ତ ସଖାଙ୍କର ଉଲ୍ଲିଖିତ ଗ୍ରନ୍ଥଗୁଡ଼ିକ ଆଧୁନିକ ଯୁଗରେ ମୁଦ୍ରଣ-ଯନ୍ତ୍ର ଦ୍ୱାରା ପ୍ରକାଶିତ ହୋଇ ସାରିଥିଲେ ମଧ୍ୟ ଅଦ୍ୟାବଧି ଜଗନ୍ନାଥ ଦାସଙ୍କର 'ଶୈବାଗମ' ପ୍ରକାଶିତ ହୋଇପାରି ନାହିଁ । ଆଲୋଚକଗଣ ପଞ୍ଚସଖା ସାହିତ୍ୟ ବା ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ଆଲୋଚନା କଲାବେଳେ ଏହି ଗ୍ରନ୍ଥ ବ୍ୟତିରେକ ଆଲୋଚନାଗୁଡ଼ିକ, ପୂର୍ଣ୍ଣାଙ୍ଗ ହୋଇପାରି ନାହିଁ । ମୋର ଦୈନନ୍ଦିନ କର୍ମ ଜଞ୍ଜାଳ ମଧ୍ୟରେ ମୁଁ ଏଭଳି ଏକ ଦୁରୂହ କାର୍ଯ୍ୟରେ ମନୋନିବେଶ କରିଛି । ଅନେକ ସମୟରେ ନିରାଶ ହେବାକୁ ପଡ଼ିଥିଲେ ମଧ୍ୟ ଈଶ୍ୱରଙ୍କ ଅସୀମ କରୁଣାରୁ ଏ ପର୍ଯ୍ୟନ୍ତ କୌଣସି ଆବଶ୍ୟକତା ଅପୂରଣୀୟ

ରହି ନାହିଁ । 'ଶୈବାଗମ'ର ପ୍ରଥମ ପାଣ୍ଡୁଲିପିଟିକୁ ମୁଁ ମୋର ପିଉସା ଶ୍ରୀଯୁକ୍ତ ବିଶ୍ୱନାଥ ଷଡ଼ଙ୍ଗୀଙ୍କଠାରୁ ପାଇ ପରେ ଉତ୍କଳ-ବିଶ୍ୱବିଦ୍ୟାଳୟ ଓ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି ବିଭାଗରେ ସଂରକ୍ଷିତ ଅନ୍ୟ ପୋଥିମାନଙ୍କ ସହ ତୁଳନା କରି ଶୁଦ୍ଧପାଠ କରିବାକୁ ଚେଷ୍ଟା କରିଛି । ପୋଥିଗୁଡ଼ିକର ବିସ୍ତୃତ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

## 'କ' ପୋଥି

ପ୍ରାପ୍ତି ସ୍ଥାନ—କଟକ ଜିଲ୍ଲା ସାଲେପୁର ଥାନାର ଜନାର୍ଦ୍ଦନପୁର ନିବାସୀ ଶ୍ରୀଯୁକ୍ତ ବିଶ୍ୱନାଥ ଷଡ଼ଙ୍ଗୀଙ୍କଠାରୁ ଏହି ପୋଥି ପ୍ରାପ୍ତ ହୋଇଛି ।

ପୋଥିର ନାମ—ଶୈବାଗମ

ଲେଖକ—ଜଗନ୍ନାଥ ଦାସ

ପୋଥିର ଉପାଦାନ—ତାଳପତ୍ର, ପୋଥିର ପତ୍ରସଂଖ୍ୟା—୧୯୪

ପୋଥିର ଆକାର—ଲମ୍ବ ୩୮ ସେ.ମି. ପ୍ରସ୍ଥ ୨.୯ ସେ.ମି.

ପ୍ରତ୍ୟେକ ପତ୍ରରେ ଧାଡ଼ିସଂଖ୍ୟା—୩ ରୁ ୪

ପ୍ରତି ଧାଡ଼ିରେ ଅକ୍ଷର ସଂଖ୍ୟା—୬୦ ରୁ ୬୫

ପୋଥି ସମାପ୍ତ କି ଅସମାପ୍ତ—ସମାପ୍ତ

ପୋଥିର ଲିପି—ଓଡ଼ିଆ

ପୋଥିର ଅବସ୍ଥା—ଭଲ

ଲେଖାର ସମୟ—ବୀରକିଶୋର ଦେବଙ୍କ ୪୭ଅଙ୍କ କା ସ୍ନ ୧୧୮୧ ସାଲ ।

ପୁଷ୍ପିକା—ଶ୍ରୀମଦ୍ଦୀର କେଶରୀ ଦେବ ମହାରାଜାଙ୍କ ଊନଚତ୍ତ୍ୱାରିଂ ସମସ୍ତ ୪୭ଙ୍କ ସ୍ୱ ୧୧୭୧ ସାଲ । ଶରତଙ୍କେ କାର୍ତ୍ତିକ ମାସ। କୃଷ୍ଣପକ୍ଷ ତେରଶିବେଳେ ଭଜନ ପଦଶରକ ସମ୍ପୂର୍ଣ୍ଣ ।

## ‘ଖ’ ପୋଥି

ପ୍ରାପ୍ତି ସ୍ଥାନ —ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥିବିଭାଗ

ପୋଥିର ନାମ—‘ଶୈବାଗମ’

ଲେଖକ—ଜଗନ୍ନାଥ ଦାସ

ପୋଥିର ଉପାଦାନ—ତାଳପତ୍ର

ପୋଥିର ପତ୍ରସଂଖ୍ୟା -୧୬୭

ପୋଥିର କ୍ରମିକ ସଂଖ୍ୟା—0. 1. ୨୪୫

ପୋଥିର ଆକାର—ଲମ୍ବ ୩୭.୩ ସେ.ମି. ପ୍ରସ୍ଥ —୨.୮ ସେ. ମି.

ପୋଥିର ଧାଡ଼ିସଂଖ୍ୟା—୪ ରୁ ୫

ପୋଥିରେ ଅକ୍ଷର ସଂଖ୍ୟା ୭୫ରୁ ୮୦

ପୋଥି ସମାପ୍ତ ବା ଅସମାପ୍ତ —ସମାପ୍ତ

ପୋଥିର ଲିପି—ଓଡ଼ିଆ

ପୋଥିର ଅବସ୍ଥା—ଜୀର୍ଣ୍ଣଶୀର୍ଣ୍ଣ ।

ଲେଖାର ସମୟ—ଦିବ୍ୟସିଂହ ଦେବଙ୍କ ଅଙ୍କ ।

ପୁଷ୍ପିକା—ସମସ୍ତ ଦିବ୍ୟସିଂହ ଦେବଙ୍କ ଅଙ୍କରେ ଏ ପୁସ୍ତକ ସଂପୂର୍ଣ୍ଣ । ଏ ପୁସ୍ତକ ବଡ଼ ଏକାଦଶୀଦିନ ସଂପୂର୍ଣ୍ଣ । ମହାପ୍ରଭୁ ଗୁଣ୍ଡିଚା ଘରେ ଅଛନ୍ତି । ଏ ପୁସ୍ତକ ତାଙ୍କଘର ଅବକାଶଙ୍କ ଜମାରେ ଅଛନ୍ତି । ଏ ମଙ୍ଗଳପୁରର ରହଣୀ ।

## 'ଗ' ପୋଥି

ପ୍ରାପ୍ତି ସ୍ଥାନ—ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ପୋଥି ବିଭାଗ

ପୋଥିର ନାମ —ଶୈବାଗମ

ଲେଖକ—ଜଗନ୍ନାଥ ଦାସ ।

ପୋଥିର ଉପାଦାନ - ତାଳପତ୍ର

ପୋଥିର ପତ୍ରସଂଖ୍ୟା—୧୪୨

ପତ୍ରର କ୍ରମିକ ସଂଖ୍ୟା—O/L ୧୪୯୮

ପୋଥିର ଆକାର —ଲମ୍ବ —୪୧.୫ ସେ. ମି. ପ୍ରସ୍ଥ—୨.୭ ସେ. ମି.

ପୋଥିର ଧାଡ଼ି ସଂଖ୍ୟା —୪ ରୁ ୫

ପୋଥିର ଅକ୍ଷର ସଂଖ୍ୟା—୭୫ ରୁ ୮୦

ପୋଥି ସମାପ୍ତ କି ଅସମାପ୍ତ —ସମାପ୍ତ

ପୋଥିର ଲିପି—ଓଡ଼ିଆ

ପୋଥିର ଅବସ୍ଥା - ନିତାନ୍ତ ଜୀର୍ଣ୍ଣଶୀର୍ଣ୍ଣ ।

ପୁଷ୍ପିକା—ନାହିଁ ।

## 'ଘ' ପୋଥି

ପ୍ରାପ୍ତି ସ୍ଥାନ—ଓଡ଼ିଶା ରାଜ୍ୟ ସଂଗ୍ରହାଳୟ' ପୋଥି ବିଭାଗ

ପୋଥିର ନାମ -ଶୈବାଗମ ।

ଲେଖକ— ବିପ୍ର ଜଗନ୍ନାଥ

ପୋଥିର ଉପାଦାନ –ତାଳପତ୍ର

ପୋଥିର ପତ୍ରସଂଖ୍ୟା—୧୨୨

ପୋଥିର କ୍ରମିକ ସଂଖ୍ୟା— O/L ୧୬୭

ପୋଥିର ଆକାର –ଲମ୍ବ --୩୫.୭ ସେ.ମି. ପ୍ରସ୍ଥ—୨.୭ ସେ. ମି.

ପୋଥିର ଅକ୍ଷର ସଂଖ୍ୟା—୭୮ରୁ ୮୩

ପୋଥି ସମାପ୍ତି କି ଅସମାପ୍ତ –ସମାପ୍ତ । କିନ୍ତୁ ୯ମ ଅଧ୍ୟାୟଟି ନାହିଁ ।

ପୋଥିର ଲିପି --ଓଡ଼ିଆ

ପୋଥିର ଅବସ୍ଥା –ସଂପୂର୍ଣ୍ଣ ଭଲ ।

ଲେଖାର ସମୟ -ମୁକୁନ୍ଦଦେବଙ୍କ ୩୧ ଅଙ୍କ ସନ ୧୩୧୩ ସାଲ ।

ପୁଷ୍ପିକା—ପୋଥିର ପୁଷ୍ପିକାରେ ଲେଖନକାର ନିଜେ ଏକନବାକ୍ଷରୀ ବୃତ୍ତରେ କବିତା ଲେଖିଛନ୍ତି । ।ତାହା ଏହିପରି —

ସମାପ୍ତୋୟଂ ଗ୍ରନ୍ଥଃ । ଯଥା ଦୃଷ୍ଟଂ ତଥା ଲିଖିତଂ ।

ଶ୍ରୀମହାରାଜା ଗଜପତି । ମୁକୁନ୍ଦ ଦେବ ନାମ ଖ୍ୟାତି

ଏହାଙ୍କ ଏକତିରିଶ ଅଙ୍କ । ମାଘ ମାସ ଯେ ଶୁକ୍ଳପକ୍ଷ ।

ତିଥି ଏକାଦଶୀ ଯୁକ୍ତରେ । ବେଳ ଏଗାର ଘଡ଼ିକାରେ ।

ଦ୍ୱାଦଶୀ ତିଥି ଉପଗତ । ଲେଖା ହୋଇଲା ସମାପତ ।

ତେରଶ ତେର ସାଲ ଖ୍ୟାତ । ମକର ଚଉଦ ଦିନ ତ ।

ଲେଖିକା ଲୋକ ଘନ ଜନ । ନାମ କୃପାସିନ୍ଧୁ ଅଧୀନ ।

ଶ୍ରୀରାଧା ଶ୍ୟାମଳ ସୁନ୍ଦର । ସେ ପ୍ରଭୁ ମୋ ପ୍ରାଣ କିଶୋର ।

ସନ୍ତେ କି ଦୟା ମୋତେ ହେବ । ତା ନାମ ଗାଇ ଦିନ ଯିବ ।

ସେ ପ୍ରଭୁ ଗଉର କିଶୋର । ନବ ଦ୍ୱୀପରେ ଅବତାର ।

କେତେ ପାପିଷ୍ଟ ଉଦ୍ଧାରିଲେ । ମୁଁ ପାପିରେ ନିର୍ଦ୍ଦୟା କଲେ ।

ଭବ ସଂସାରେ ପଡ଼ିଅଛି । ଆପୁତ୍ର ନାହିଁ ମୋର କିଛି ।

କୃଷ୍ଣ ଚୈତନ୍ୟ ନାମଧାରି । ପତିତ କି ଜୀବ ଯେ ଦାହାରି ।

ଗୁରୁ ବୈଷ୍ଣବ ପାଦଗତେ । ମୋ ମନ ଥାଉ ଅବିରତେ ।
ଯୁଗଳ କିଶୋର ଚରଣେ । ମୁଁ ମୂଢ଼ ପଶିଛୁ ଶରଣେ ।



ଶ୍ରୀ ଶୁଭମସ୍ତୁ । ରଣପୁର କିଲ୍ଲ ଅଗ୍ରାମ ନିବାସୀ ପ୍ରପିତାମହ ରଘୁନାଥ ଦାସେ ଏହାଙ୍କ ପୁତ୍ର ବିଶ୍ୱନାଥ ଦାସେ ଓ ଏହାଙ୍କ ପୁତ୍ର ଅରକ୍ଷିତ କୃପାସିନ୍ଧୁ ଦାସେ ବିରଃ ।

ଉପର୍ଯ୍ୟୁକ୍ତ ଚାରିଗୋଟି ପୋଥିକୁ ନେଇ 'ଶୈବାଗମ' ଗ୍ରନ୍ଥର ସଂପାଦନା କାର୍ଯ୍ୟ କରାଯାଇଛି । ଆଜକୁ ପ୍ରାୟ ୪୫୦ ବର୍ଷ ତଳେ ଜଗନ୍ନାଥ ଦାସ ଏହିଗ୍ରନ୍ଥ ରଚନା କରିଥିଲେ । ଆମ ଦେଶର ଜଳବାୟୁ ତଥା ପୋଥିଗୁଡ଼ିକର ସଂରକ୍ଷଣଜନିତ ଅବହେଳା ଓ ମୁସଲମାନମାନଙ୍କ ଆକ୍ରମଣ ଫଳରେ ମୂଳ ପୋଥି ନଷ୍ଟ ହୋଇଯାଇଥିବ ନିଶ୍ଚୟ । 'କ' ପୋଥି-ରୂପେ ଗ୍ରହଣ କରାଯାଇଥିବା ପୋଥିଟି ଆଜକୁ ୨୦୭ ବର୍ଷ ତଳେ ନକଲ କରାଯାଇଥିଲା । 'ଖ' ପୋଥିରେ କେବଳ ବୈଦ୍ୟ-ସିଂହଦେବଙ୍କ ନାମ ମିଳିଥିଲେ ମଧ୍ୟ ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ଅଙ୍କର ସଙ୍କେତ ନାହିଁ । 'ଗ' ପୋଥିରେ ପୁଷ୍ପିକା ଆଦୌ ନାହିଁ । ପୁଷ୍ପିକା ନ ଥିଲେ ମଧ୍ୟ ଖ ଓ ଗ ପୋଥିର ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା ଦେଖିଲେ ମନେହୁଏ ଏଗୁଡ଼ିକ ପ୍ରାଚୀନ । 'ଘ' ପୋଥିର ଲେଖା ମାତ୍ର ୮୫-ବର୍ଷ ତଳର । ଏହି ସମୟକୁ ଓଡ଼ିଶାରେ ମୁଦ୍ରାଯନ୍ତ୍ରର ପ୍ରସାର ଘଟି-ସାରିଲାଣି । ଏହି ଚାରିଗୋଟି ପୋଥିରୁ ପ୍ରାଚୀନତା ଦୃଷ୍ଟିରୁ ବା ଅଧିକ ସଠିକ ପାଠ ଦୃଷ୍ଟିରୁ ପ୍ରଥମ ପୋଥିଟିକୁ 'କ' ପୋଥିରୂପେ ନିଆଯାଇଛି । ଏବଂ ଅନ୍ୟ ତିନିଗୋଟି ପୋଥିକୁ ତା' ସହିତ ତୁଳନା କରାଯାଇଛି । 'କ' ପୋଥିଟିରେ ପ୍ରକ୍ଷେପ ଆଦୌ ନାହିଁ; କିନ୍ତୁ

କେତେକ ସ୍ଥାନରେ ପାଦ ଗୁଡ଼ିକ ପରିତ୍ୟକ୍ତ ହୋଇଅଛି । ଏହି ପଦଗୁଡ଼ିକ ପ୍ରାସଙ୍ଗିକତା ଦେଖି ଅନ୍ୟ ତିନିଗୋଟି ପୋଥିରୁ ଉଦ୍ଧାର କରାଯାଇଛି । 'ଘ' ପୋଥି ଅର୍ବାଚୀନ ହେଲେ ମଧ୍ୟ କେତେକ ସ୍ଥଳରେ ତହିଁରୁ ମଧ୍ୟ ଶୁଦ୍ଧ ପାଠ ନିଆଯାଇଛି ।

ଅର୍ଦ୍ଧଶିକ୍ଷିତ ଲିଖନକାର ମାନଙ୍କ ଦ୍ୱାରା ନକଲ କରାଯାଇଥିବା ପୋଥିଗୁଡ଼ିକରେ ସ୍ଥାନେ ସ୍ଥାନେ ତ୍ରୁଟି ରହିବା ସ୍ୱାଭାବିକ । ଗୋଟିଏ ପୋଥିର ପାଠକୁ ମିଳାଇ ଏହିଭଳି ତ୍ରୁଟି ମାନଙ୍କର ସଂଶୋଧନ ନିମିତ୍ତ ଯଥେଷ୍ଟ ଚେଷ୍ଟା କରାଯାଇଛି ।

**ଗ୍ରନ୍ଥର ନାମକରଣ** ଆଲୋଚକମାନେ ଜଗନ୍ନାଥ ଦାସଙ୍କ ଗ୍ରନ୍ଥଗୁଡ଼ିକର ତାଲିକା ଦେବାକୁ ଯାଇ 'ଶୈବାଗମ ଭାଗବତ' 'ଶୈବ ଭାଗବତ' ପ୍ରଭୃତିର ନାମ ଉଲ୍ଲେଖ କରିଛନ୍ତି । ଉତ୍କଳ ବିଶ୍ୱ ବିଦ୍ୟାଳୟ ପୋଥି ବିଭାଗରେ ସଂରକ୍ଷିତ ପୋଥିଟି ଉପରେ କାଗଜରେ 'ଶୈବାଗମ ଭାଗବତ' ବୋଲି ଲେଖାଅଛି । କିନ୍ତୁ 'କ' ପୋଥିର ପ୍ରଥମ ପତ୍ରରେ ଲେଖାଅଛି 'ଶୈବାଗମ ଲେଖ୍ୟ' । ଏତଦ୍ ବ୍ୟତୀତ ଅନ୍ୟ ତିନିଗୋଟି ପୋଥି ମଧ୍ୟରୁ କୌଣସିଟିରେ ଶୈବାଗମ-ଭାଗବତ ବୋଲି ଲେଖା ନାହିଁ । ପୁନଶ୍ଚ କବି ନିଜେ ସ୍ୱଗ୍ରନ୍ଥର ବତିଶଟିଯାକ ଅଧ୍ୟାୟର ଭଣିତାରେ କୌଣସି ସ୍ଥାନରେ 'ଶୈବାଗମ ଭାଗବତ' ବୋଲି କହି ନାହାନ୍ତି । ବୋଧହୁଏ ଆଲୋଚକଗଣ ପ୍ରକୃତ ପୋଥିରେ ସ୍ୱରୂପ ଦେଖିନାହାନ୍ତି, ଅଥବା ଏଥିରେ ଥିବା ଭାଗବତର କେତେକ ବିଷୟବସ୍ତୁ ଏବଂ ଭାଗବତର ବକ୍ତା ଓ ଶ୍ରୋତା ଶୁକ-ପରୀକ୍ଷିତଙ୍କର ନାମରୁ ଏ ଗ୍ରନ୍ଥକୁ 'ଶୈବାଗମ ଭାଗବତ' ଆଖ୍ୟା ଦେଇ ଅଛନ୍ତି । ଆଲୋଚକଗଣ ଗ୍ରନ୍ଥର ଏଭଳି ଭ୍ରମାତ୍ମକ ନାମକରଣ କରିବାରେ ଅନ୍ୟଏକ

କାରଣ ମଧ୍ୟ ରହିଥାଇପାରେ । ଜଗନ୍ନାଥ ଦାସ ଥିଲେ ପୂର୍ଣ୍ଣତଃ ଏକନଷ୍ଠ ବୈଷ୍ଣବ । ଜଣେ ବୈଷ୍ଣବ କବ ଶୈବାଗମ (ତନ୍ତ୍ର ବଷୟକ ଗ୍ରନ୍ଥ) ଲେଖିବା ସମ୍ଭବପର ନୁହେଁ । ପୁଣି ଯଦ୍ଧ ଶିବ ପାର୍ବତୀଙ୍କ କଥୋପକଥନରେ ଭାଗବତର ବର୍ଣ୍ଣିତ ବଷୟବସ୍ତୁ ସନ୍ନି-ବେଶିତ ହୋଇଛ୍ଡ଼ି 'ଶୈବାଗମ' ଏହ୍ଵ ନାମକରଣରେ ଭାଗବତ ବର୍ଣ୍ଣିତ ବଷୟବସ୍ତୁର ସତ୍ତା ପର୍ଯ୍ୟନ୍ତ ରହୁ ନାହିଁ । ଏହ୍ଵସବୁ ଧାରଣା ପୋଷଣ କର ଓଡ଼ିଆ ସାହିତ୍ୟରେ ଆଲୋଚକଗଣ 'ଶୈବାଗମ'କୁ 'ଶୈବାଗମ ଭାଗବତ' ବୋଲି ଆଖ୍ୟା ଦେଇ ଅଛନ୍ତି । ଅବଶ୍ୟ ଭାଗବତ ଧର୍ମର ତତ୍ତ୍ୱ ଏ ଗ୍ରନ୍ଥରେ ପରବେଷିତ ହୋଇଛ୍ଡ଼ି ଏବଂ ଶୁକ ମୁନ ରଜା ପରୀକ୍ଷିତଙ୍କୁ ଉପଦେଶ ଛଳରେ 'ଶ୍ରୁତ ପରମ ଭଗବତ' ବୋଲି କହିଛନ୍ତି ; ହେଲେ ଏ ଦୃଷ୍ଟିରୁ କବଙ୍କର ମୌଳକତ୍ୱକୁ ନର୍ବିବାଦରେ ଅବଲୁପ୍ତ କର ଇଚ୍ଛାନୁଯାୟୀ ଗ୍ରନ୍ଥର ନାମକରଣ 'ଶୈବାଗମ ଭାଗବତ' ବୋଲି କରିବା ଆଦୌ ଯୁକ୍ତିସଙ୍ଗତ ନୁହେଁ ।

କବ ଜଗନ୍ନାଥ ଦାସ ଯଥାର୍ଥରେ ଗ୍ରନ୍ଥର ନାମ 'ଶୈବାଗମ' ରଖିଛନ୍ତି । ଆଗମ'ର ଆଭିଧାନକ ଅର୍ଥ—ତନ୍ତ୍ର । ଏ ଦୃଷ୍ଟିରୁ ବଚାର କଲେ 'ଶୈବାଗମ'ର ଅର୍ଥ ଶୈବତନ୍ତ୍ର । କିଂତୁ ଆଗମର ସଂଜ୍ଞା ପ୍ରଦାନ କର 'ଆଗମ ସଂକ୍ଷିପ୍ତ ସାର' ଗ୍ରନ୍ଥରେ ଲୁହା ଯାଇଛି—

"ଆଗତଂ ଶିବ ବକ୍ତ୍ରେଭ୍ୟୋ ଗତଞ୍ଚ ଗିରଜା ବକ୍ତ୍ରେ,
ମତଞ୍ଚ ବାସୁଦେବସ୍ୟ ତସ୍ମାଦାଗମ ମୁଚ୍ୟତେ ।

ଏହି ଶ୍ଳୋକର ଅନୁକରଣରେ "Tantra in Bengal" ଗ୍ରନ୍ଥରେ Dr. S. C. Banerji କହନ୍ତି—"Those works

in which Parvati ask's questions like a pulil and Siva answers like a teacher, are designated as Agama. ''

ଯେଉଁ ଗ୍ରନ୍ଥରେ ପାର୍ବତୀ ଛାତ୍ରଭଳି ପ୍ରଶ୍ନ କରନ୍ତି ଓ ଶିବ ଜଣେ ଶିକ୍ଷକଭଳି ପାର୍ବତୀଙ୍କ ପ୍ରଶ୍ନମାନଙ୍କର ଉତ୍ତର ପ୍ରଦାନ କରନ୍ତି ତାହାହେଉଛି ଆଗମ ।

ଆଲୋଚକ ଶିନ୍ତାହରଣ ଚକ୍ରବର୍ତ୍ତୀ ଠିକ୍ ଏହି ମତ ପ୍ରଦାନ କରିଥିଲେ ମଧ୍ୟ ସେ ଏକ ନୂତନ ତଥ୍ୟର ଉଦ୍‌ଘାଟନ କରିଛନ୍ତି । ତାଙ୍କ ମତରେ—"The term agama is also Explained as that class of Tantra which is addressed to parvati by Siva··· । The words are supposed to be formed by the initial letters of agata, gata and mata ··''

ଆଗମ ଏକପ୍ରକାର ତନ୍ତ୍ର ଯାହାକି ଶିବଙ୍କ ଦ୍ୱାରା ପାର୍ବତୀଙ୍କୁ କୁହାଯାଏ । ଆଗତ, ଗତ ଏବଂ ମତ ଏହି ତିନି ଶବ୍ଦର ମୂଳ ତିନି ଅକ୍ଷରକୁ ନେଇ 'ଆଗମ' ଶବ୍ଦର ସୃଷ୍ଟି ।

ଉପରୋକ୍ତ ଆଲୋଚକ ଦ୍ୱୟଙ୍କ ମତକୁ ସମୀକ୍ଷା କଲେ ଦେଖାଯାଏ ଯେ ଉଲ୍ଲିଖିତ ଶ୍ଳୋକର ଆଦ୍ୟ ଚରଣକୁ ବ୍ୟାଖ୍ୟା କରି ଉଭୟ ଆଲୋଚକ ମତ ପ୍ରଦାନ କରିଛନ୍ତି । କିନ୍ତୁ 'ମତଞ୍ଚ ବାସୁଦେବସ୍ୟ'ର ଅର୍ଥ କଣ ହୋଇପାରେ ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରକୃତି ଖଣ୍ଡ ୪୮ ଅଧ୍ୟାୟରେ ଶିବ ପାର୍ବତୀଙ୍କର କଥୋପକଥନରେ ରାଧା କୃଷ୍ଣ ତତ୍ତ୍ୱ ବର୍ଣ୍ଣନା କରାଯାଇଛି । ଏଠାରେ ଶିବ ଏହି ବର୍ଣ୍ଣନାକୁ 'ଆଗମ' ବୋଲି ଆଖ୍ୟାୟିତ କରିଛନ୍ତି । ତା' ସହିତ ରାସଲୀଳା

ପର୍ଯ୍ୟାୟରେ ଦେବୀ ପାର୍ବତୀଙ୍କର ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶିବ କୃଷ୍ଣ ରୂପକୁ ଧ୍ୟାନ କରନ୍ତନ୍ତି ।

ତେଣୁ ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ 'ଆଗମ' ହେଉଛି ଶିବ ମୁଖରୁ ନିଃସୃତ ପାର୍ବତୀଙ୍କ ଦ୍ୱାରା ଶ୍ରୁତ ଏକ ଗ୍ରନ୍ଥ ଏବଂ ଏ ଗ୍ରନ୍ଥର ବର୍ଣ୍ଣିତ ବିଷୟବସ୍ତୁରେ 'ବାସୁଦେବଙ୍କ ମତ'ର ପ୍ରାଧାନ୍ୟ ରହିଥାଏ । କବି ନିଜ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଲେଖିଛନ୍ତି—

"ଶୈବାଗମ ଶାସ୍ତ୍ର ଏତେ । ବୈଷ୍ଣବ ଜନଙ୍କ ସମ୍ମତେ ।
ଅନେକ ଶାସ୍ତ୍ର ପରମାଣି । ଆଗମ ନିଗମ ତା ଜାଣି ।"

ଆଲୋଚ୍ୟ ଗ୍ରନ୍ଥର ବିଷୟବସ୍ତୁ ବୈଷ୍ଣବ ଧର୍ମର ସାଧନା ପ୍ରଣାଳୀ ଓ ସାଧନାର କାହାଣୀ । ଏହାର ପ୍ରବକ୍ତା ଶିବ ଏବଂ ପାର୍ବତୀ ଶିବଙ୍କୁ ଏକ ଅବୋଧ୍ୟା ସ୍ତ୍ରୀ ଭଳି ପ୍ରଶ୍ନ କରନ୍ତନ୍ତି । ପାର୍ବତୀଙ୍କର ପ୍ରତି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମଧ୍ୟ ଶିବ ଦେଇଛନ୍ତି— ଭଗବାନ ବାସୁଦେବ ଶ୍ରୀକୃଷ୍ଣଙ୍କର ମତ ହିଁ ଏହି ଗ୍ରନ୍ଥରେ ପ୍ରାଧାନ୍ୟ ଲାଭ କରିଛି । ତେଣୁ କବିଙ୍କର ଗ୍ରନ୍ଥର ନାମ ଶୈବାଗମ ଯଥାର୍ଥ । ଏହି ନାମରୁ ଗ୍ରନ୍ଥବର୍ଣ୍ଣିତ ସମସ୍ତ ବିଷୟବସ୍ତୁର ସୂଚନା ମିଳୁଛି । ତେଣୁ ଏ ଗ୍ରନ୍ଥକୁ 'ଶୈବାଗମ ଭାଗବତ' କହିବାର କୌଣସି ଯଥାର୍ଥତା ନାହିଁ ।

**ଶୈବାଗମ ଗ୍ରନ୍ଥ ରଚନାର ପୃଷ୍ଠପଟ**—କିମ୍ବଦନ୍ତୀରୁ ଜଣାଯାଏ ଜଗନ୍ନାଥ ଦାସଙ୍କ କବି ଜୀବନର ଆଦ୍ୟସ୍ଫୁରଣ ହୁଏ ଭାଗବତ ରଚନାରୁ । ପରୀକ୍ଷିତଙ୍କର ମୁକ୍ତିନିମନ୍ତେ ଶୁକ ମୁନିଙ୍କଠାରୁ ଭାଗବତ ଶ୍ରବଣ ଓ ମୋକ୍ଷଗତି ହେଉଛି ଭାଗବତର ମୁଖ୍ୟ ପ୍ରତି-ପାଦ୍ୟ ବିଷୟବସ୍ତୁ । ଆଲୋଚ୍ୟ 'ଶୈବାଗମ' ଗ୍ରନ୍ଥର ମୁଖ୍ୟ ବିଷୟ ବସ୍ତୁ ମଧ୍ୟ ଭାଗବତର ଅନୁରୂପ । ତେବେ ଭାଗବତ ରଚନାପରେ

କାହ୍ନ ଏଭଳି ଏକ ଗ୍ରନ୍ଥ ରଚନା କଲେ କାହିଁକି ? ଗ୍ରନ୍ଥଟିକୁ ଆମୂଳାନ୍ତ ପାଠ କଲେ ପାଠକର ଏକ ବିଷୟ୍ପ୍ରତି ମନରେ ଦୃଢ଼ ଭୂତ ହୋଇଆଏ । ଇତିହାସ ଓ କିମ୍ବଦନ୍ତୀରୁ ଯାହା ଜଣାଯାଏ ପଞ୍ଚସଖାବୃନ୍ଦ ଚୈତନ୍ୟଙ୍କର ଏକାନ୍ତ ଅନୁଗତ ଥିଲେ । ଅଧିକନ୍ତୁ ସ୍ୱୀୟ ଧର୍ମଧାରଣା ଓ ସାଧନା ମାର୍ଗରେ ସେମାନେ ଥିଲେ ଅଟଳ । ଓଡ଼ିଆ ମାଟିରେ ଅଙ୍କୁରିତ ଜ୍ଞାନମିଶ୍ରା ସାଧନାକୁ ସେମାନେ ଦୃଢ଼ ଭାବରେ ସମର୍ଥନ କରିଥିଲେ । ଏହି ଧର୍ମ ଧାରଣାକୁ ବଳିଷ୍ଠ କରିବା ପାଇଁ ପ୍ରତ୍ୟେକ ରଚନା କଲେ ଏକ ଏକ ଆଦର୍ଶ ଗ୍ରନ୍ଥ । ବଳରାମ ଦାସ ରଚନା କଲେ ବେଦାନ୍ତସାର ଗୁପ୍ତଗୀତା, ଅଚ୍ୟୁତାନନ୍ଦ ରଚନା କଲେ 'ଶୂନ୍ୟ ସଂହିତା' ଓ 'ଗୁରୁ ଭକ୍ତି ଗୀତା', ଯଶୋବନ୍ତ—'ପ୍ରେମଭକ୍ତି ବ୍ରହ୍ମଗୀତା' ପ୍ରଭୃତି ଏବଂ ଠିକ୍ ଏହି କର୍ତ୍ତବ୍ୟ ସମ୍ପାଦନ କରିବାକୁ ଯାଇ ଜଗନ୍ନାଥ ଦାସ ରଚନା କଲେ 'ଶୈବାଗମ', ଏହା ଭାଗବତର ଅବିକଳ ଅନୁକୃତି ନୁହେଁ । ଏହି ଗ୍ରନ୍ଥ ରଚନା ନିମିତ୍ତ କବି ପାଞ୍ଚ ରାଜ ଧର୍ମର —ନାରଦୀୟ ପଞ୍ଚ ରାଜ ବ୍ରହ୍ମସଂହିତା, ବିହଙ୍ଗେନ୍ଦ୍ର ସଂହିତା ତଥା ବେଦାନ୍ତ ଦର୍ଶନ, ସାଂଖ୍ୟ-ଦର୍ଶନ ଓ ଯୋଗ ଦର୍ଶନ, ପଦ୍ମ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ଭାଗବତ ଓ ରାମାନୁଜଙ୍କ ଶ୍ରୀ ସଂପ୍ରଦାୟ ଓ ଅନ୍ୟ ଗୃହ ବୈଷ୍ଣବ ସମ୍ପ୍ରଦାୟ ଆଚାର୍ଯ୍ୟମାନଙ୍କ ରଚନାବଳୀ ପ୍ରଭୃତିକୁ ଅନୁସରଣ କରିଛନ୍ତି । ତନ୍ତ୍ରର ମନ୍ତ୍ରୋପାସନା ପ୍ରଣାଳୀ ଓ ଯନ୍ତ୍ର ଉପାସନାକୁ ମଧ୍ୟ କବି ଗ୍ରହଣ କରିଛନ୍ତି । ସବୁପ୍ରକାର ବୈଷ୍ଣବ ସମ୍ପ୍ରଦାୟର ସାରସ୍ୱତ୍ତ୍ୱକୁ ସଂଗ୍ରହ କରି ସେ ଉତ୍କଳୀୟ ଜ୍ଞାନମିଶ୍ରା ସାଧନାର ଭିତ୍ତିକୁ ଦୃଢ଼ତର କରିବାକୁ ଚେଷ୍ଟା କରି ଅଛନ୍ତି । 'ଶୈବାଗମ' ଗ୍ରନ୍ଥ ରଚନାର ପୃଷ୍ଠପଟରେ ଏହି କାରଣକୁ ନିର୍ଦ୍ଦେଶ କରାଯାଇ ପାରେ ।

## ଶୈବାଗମର ସଂକ୍ଷିପ୍ତ ବିଷୟବସ୍ତୁ

ରାଧାକୃଷ୍ଣଚରିତ୍ର ଶୈବାଗମର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଧର୍ମରୁ ଆଲୋଚିତ ହୋଇଛି ଶିବ ଏଥିର ବକ୍ତା ଓ ପାର୍ବତୀ ଶ୍ରୋତା । ସର୍ବ ୩୨ଟି ଅଧ୍ୟାୟରେ ଗ୍ରନ୍ଥର ବିଷୟବସ୍ତୁ ବର୍ଣ୍ଣିତ । ନିମ୍ନରେ ଏଥିର ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହେଲା ।

**ପ୍ରଥମ ଅଧ୍ୟାୟ**—ପ୍ରଥମ ଅଧ୍ୟାୟରେ କବି ନିଜର ଇଷ୍ଟଦେବ ଜଗନ୍ନାଥଙ୍କୁ ଗ୍ରନ୍ଥର ସୁସମାପ୍ତି ପାଇଁ ସ୍ତୁତି କରିଅଛନ୍ତି । ବିଷୟବସ୍ତୁର ଆରମ୍ଭରେ ଧ୍ୟାନସ୍ଥ ଶିବଙ୍କ ନିକଟରେ ପାର୍ବତୀ ଉପସ୍ଥିତ ହୋଇ ଧ୍ୟାନର କାରଣ ପଚାରିଛନ୍ତି । ଶିବ ଏଥିର ଉତ୍ତରରେ ଶ୍ରୀକୃଷ୍ଣ ଚରିତ ବ୍ୟାଖ୍ୟାନ କରି ଅଛନ୍ତି ।

**ଦ୍ୱିତୀୟ ଅଧ୍ୟାୟ**—ଦ୍ୱିତୀୟ ଅଧ୍ୟାୟରେ ସାତ୍ୱତମତର ସୃଷ୍ଟିତତ୍ତ୍ୱ ବର୍ଣ୍ଣିତ ହୋଇଛି । ତ୍ରିଗୁଣାତୀତ ନିର୍ବିକାରଙ୍କର ସତ୍ତ୍ୱ ରଜ ଓ ତମ ଗୁଣରୁ ବିଷ୍ଣୁ, ବ୍ରହ୍ମା, ଏବଂ ଶିବଙ୍କର ସୃଷ୍ଟି ରହସ୍ୟ ବର୍ଣ୍ଣିତ ହୋଇଛି । ଏହି ଅଧ୍ୟାୟରେ କୃଷ୍ଣ ନାମର ମାହାତ୍ମ୍ୟ ଓ ସୁନ୍ଦର କୃଷ୍ଣରୂପ ଧ୍ୟାନ ବର୍ଣ୍ଣିତ ହୋଇଛି ।

**ତୃତୀୟ ଅଧ୍ୟାୟ**—ତୃତୀୟ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କର ଅଷ୍ଟଗ୍ରନ୍ଥି କୀର୍ତ୍ତନ ବା ଅଷ୍ଟାଙ୍ଗଧ୍ୟାନ ବର୍ଣ୍ଣିତ ହୋଇଅଛି । ବିଷ୍ଣୁପୁରାଣ ଗରୁଡ଼ପୁରାଣ ଓ ବିଷ୍ଣୁଧର୍ମୋତ୍ତର ପୁରାଣରେ ବର୍ଣ୍ଣିତ ବିଷ୍ଣୁଙ୍କର ଅଷ୍ଟାଙ୍ଗ ଧ୍ୟାନ ସହ ସାତ୍ୱତତନ୍ତ୍ରରେ କୃଷ୍ଣଙ୍କର ଅଷ୍ଟାଙ୍ଗମାନସ ଧ୍ୟାନକୁ ଏକତ୍ରିତ କରି କବି ଆଲୋଚ୍ୟ ଅଧ୍ୟାୟରେ କୃଷ୍ଣଙ୍କର ଚୂଳ ଶ୍ରୀମୁଖ ସ୍କନ୍ଧ ଓ ଦୁଇବାହୁ, ହୃଦୟ, ଉଦର, କଟି, ଜାନୁ ଓ ଶ୍ରୀପାଦ ପଦ୍ମର ଧ୍ୟାନ ବର୍ଣ୍ଣନା କରି ଅଛନ୍ତି ।

**ଚତୁର୍ଥ ଅଧ୍ୟାୟ**—ଚତୁର୍ଥ ଅଧ୍ୟାୟରେ ନାରଦ ଗୋପପୁରକୁ ଆଗମନ କରିଛନ୍ତି । ନନ୍ଦଯଶୋଦା ଓ ଗୋପୀ-ଗୋପାଳମାନେ, ନାରଦଙ୍କୁ ପୂଜା ଅର୍ଚ୍ଚନା କରିଛନ୍ତି । ଷୋଳ ସହସ୍ର ସିଦ୍ଧି ଋଷି ଓ ନିତ୍ୟ ବଳାସିନୀ ଶ୍ରୀ ରାଧା,କୃଷ୍ଣଙ୍କ ନିମିତ୍ତ ଗୋପୀରୂପରେ ଗୋପପୁର ରେ ଜନ୍ମଲାଭ କରିବା ବିଷୟ କୃଷ୍ଣ ନାରଦଙ୍କୁ କହିଛନ୍ତି ଏବଂ ନାରଦଙ୍କୁ ଦର୍ଶନ କରି ଗୋପୀମାନେ କୃଷ୍ଣ ପ୍ରେମ ଲାଭ କରିବେ ବୋଲି କହି ତାଙ୍କୁ ଗୋପ ଭ୍ରମଣ କରିବାକୁ ଆଦେଶ ଦେଇଛନ୍ତି ।

**ପଞ୍ଚମରୁ ଏକାଦଶ ଅଧ୍ୟାୟ**—ପଞ୍ଚମ ଅଧ୍ୟାୟରୁ ଏକାଦଶ ଅଧ୍ୟାୟ ପର୍ଯ୍ୟନ୍ତ ଦୀର୍ଘ ସାତଗୋଟି ଅଧ୍ୟାୟରେ ପଦ୍ମ ପୁରାଣ ପାତାଳ ଖଣ୍ଡ ଅବଲମ୍ବନରେ ଗୋପୀମାନଙ୍କର ପୂର୍ବଜନ୍ମ ସେମାନ-ଙ୍କର ଋଷିରୂପରେ ତପସ୍ୟା, ବରପ୍ରାପ୍ତି ଓ ଗୋପପୁରରେ ନିର୍ଦ୍ଦିଷ୍ଟ ନାମନେଇ ଜନ୍ମହେବା ବିଷୟ ବର୍ଣ୍ଣିତ ହୋଇଅଛି । ନାରଦ ତାଙ୍କର ଗୋପପୁର ଭ୍ରମଣ ସମୟରେ ପ୍ରତ୍ୟେକଙ୍କୁ ଭେଟିଛନ୍ତି ଏବଂ କୃଷ୍ଣ ସେବା ନିମିତ୍ତ ସେମାନଙ୍କୁ ଏକ ଏକ ଉପାୟନ ପ୍ରଦାନ କରିଛନ୍ତି । ଏକାଦଶ ଅଧ୍ୟାୟ ଶେଷରେ କେତେକ ଗୋପୀଙ୍କର ନାମ ପ୍ରଦତ୍ତ ହୋଇଅଛି । ଅଧ୍ୟାୟଗୁଡ଼ିକର ବର୍ଣ୍ଣନା ଏକାନ୍ତ ମନୋଜ୍ଞ, ଭକ୍ତିର-ସାନ୍ଦ୍ରିତ ଏବଂ ନାଟକୀୟ । ବୈଷ୍ଣବ ଧର୍ମର ସାଧନତତ୍ତ୍ୱ ଏଥିରେ ମୁଖ୍ୟ ।

**ଦ୍ୱାଦଶ ଅଧ୍ୟାୟ**—ଦ୍ୱାଦଶ ଅଧ୍ୟାୟରେ ନାରଦ ବୃଷଭାନୁ ନଗରକୁ ଯାତ୍ରା କରିଛନ୍ତି । ବୃଷଭାନୁ ନାରଦଙ୍କର ଉପଯୁକ୍ତ ଉପଚାରକରି ନିଜକୁ ପୁତ୍ରକନ୍ୟାଙ୍କୁ ପରିଚିତ କରାଇ ଅଛନ୍ତି । ଅନ୍ଧ, ବଧିର ଏବଂ ଜଡ଼ା ହୋଇ ରହିଥିବା ଲାବଣ୍ୟମୟୀ ପ୍ରତିମାର ଦୁର୍ଦ୍ଦଶା ବିଷୟରେ ସେ ନାରଦଙ୍କୁ ଅବଗତ କରାଇବାରୁ ନାରଦ କନ୍ୟା-

ଦର୍ଶନ ନିମିତ୍ତ ଆଗ୍ରହାନ୍ୱିତ ହୋଇଛନ୍ତି । କନ୍ୟାକୁ ସ୍ୱୟଂ ଶ୍ରୀକୃଷ୍ଣ ପ୍ରିୟତମା ରାଧିକା ବୋଲି ଚିହ୍ନି ନାରଦ ସ୍ତୁତି କରିଅଛନ୍ତି ।

**ତ୍ରୟୋଦଶ ଅଧ୍ୟାୟ** ତ୍ରୟୋଦଶ ଅଧ୍ୟାୟରେ ରାଧାଙ୍କର ଅଦ୍ଭୁତ ବର୍ଣ୍ଣିତ ହୋଇଅଛି । ନାରଦଙ୍କ ମୁଖରୁ କୃଷ୍ଣନାମ ଶ୍ରବଣକରି ରାଧା ନିଜର ଦିବ୍ୟରୂପ ପ୍ରକଟିତ କରିଛନ୍ତି । ନାରଦ ପ୍ରଥମେ ମୂର୍ଚ୍ଛିତ ହୋଇ ପରେ ଅଶୋକମାଳିନୀ ନାମ୍ନୀ ସଖୀଦ୍ୱାରା ମୂର୍ଚ୍ଛାଭଗ୍ନ ହୋଇଛନ୍ତି ଏବଂ ରାଧାଙ୍କର ନିତ୍ୟଧାମର ଲୀଳା ଦର୍ଶନ କରିଛନ୍ତି ।

**ଚତୁର୍ଦ୍ଦଶ ଅଧ୍ୟାୟ**—ଚତୁର୍ଦ୍ଦଶ ଅଧ୍ୟାୟରେ ଗୋପୀ ପ୍ରେମର ଶ୍ରେଷ୍ଠତ୍ୱ କୃଷ୍ଣଙ୍କ ମୁଖରେ ବର୍ଣ୍ଣିତ ହୋଇଅଛି ।

**ପଞ୍ଚଦଶ ଅଧ୍ୟାୟ**—ପଞ୍ଚଦଶ ଅଧ୍ୟାୟରେ ଗୋପବାଳକ ଓ ଗୋପୀମାନଙ୍କର ବନଭ୍ରମଣ, ଗୋପୀମାନଙ୍କର ଧୂଳିଘର ଖେଳ, କୃଷ୍ଣକର୍ତ୍ତୃକ ଗୋପାଳ ବାଳକମାନଙ୍କର ଧୂଳିଘର ଭଗ୍ନ, ରାଧାଙ୍କ ରୋଷ, କୃଷ୍ଣଙ୍କ କ୍ରନ୍ଦନ ଏବଂ ସବ ଶେଷରେ ରାଧାକୃଷ୍ଣଙ୍କର ବିବାଦ ବର୍ଣ୍ଣିତ ହୋଇଛି ।

**ଷୋଡ଼ଷ ଅଧ୍ୟାୟ**—ଷୋଡଶ ଅଧ୍ୟାୟରେ ଚନ୍ଦ୍ରସେନ ସହିତ ଶ୍ରୀରାଧାଙ୍କର ବିବାହ ସଂଘଟିତ ହୋଇଛି । ଏଥିରେ ଗୋପୀ ଓ ଶ୍ରୀରାଧାଙ୍କର ପୂର୍ବଜନ୍ମ ପ୍ରସଙ୍ଗରେ ରାମାବତାରର ସଂକେତ ସୂଚିତ ହୋଇଛି ।

**ସପ୍ତଦଶ ଅଧ୍ୟାୟ**—ସପ୍ତଦଶ ଅଧ୍ୟାୟରେ ବଂଶୀର ଜନ୍ମ, ବଂଶୀ ମହିମା ଓ ବୃନ୍ଦାବନ ଧାମ ମହତ୍ତ୍ୱ ବର୍ଣ୍ଣିତ ହୋଇଛି ।

**ଅଷ୍ଟାଦଶ ଅଧ୍ୟାୟ**—ଅଷ୍ଟାଦଶ ଅଧ୍ୟାୟରେ ଶ୍ରୀରାଧାଙ୍କର ଐକାନ୍ତିକ କୃଷ୍ଣଭକ୍ତି ପ୍ରତିପାଦିତ ହୋଇଅଛି ।

**ଊନବିଂଶ ଅଧ୍ୟାୟ** - ଊନବିଂଶ ଅଧ୍ୟାୟରେ ଗୋପୀମାନଙ୍କ ଯମୁନା ସ୍ନାନ ଓ କାତ୍ୟାୟନୀ ବ୍ରତ ବର୍ଣ୍ଣିତ ହୋଇଛି । ସ୍ନାନାନ୍ତେ ଗୋପୀମାନେ ଶିବଙ୍କୁ ସ୍ତୁତି କରିଛନ୍ତି । ଶିବ ଉପସ୍ଥିତ ହୋଇ ସେମାନଙ୍କୁ କୃଷ୍ଣଙ୍କୁ ସ୍ୱାମୀ ରୂପରେ ପାଇବାକୁ ବର ଦେଇଛନ୍ତି ।

**ବିଂଶ ଅଧ୍ୟାୟ**—ବିଂଶ ଅଧ୍ୟାୟରେ ଗୋପୀମାନଙ୍କ ଜଳ ବିହାର ଓ ବସ୍ତ୍ରହରଣ ବିଷୟ ବର୍ଣ୍ଣିତ ହୋଇଛି ।

**ଏକ ବିଂଶ ଅଧ୍ୟାୟ**—ଏକବିଂଶ ଅଧ୍ୟାୟରେ ବ୍ରହ୍ମଶାପ-ଗ୍ରସ୍ତ ପରୀକ୍ଷିତଙ୍କୁ ମୁକ୍ତି ପାଇବା ନିମନ୍ତେ ଋଷିମାନେ ବିଭିନ୍ନ ଦେବଦେବୀଙ୍କୁ ପୂଜା କରିବାକୁ ଉପଦେଶ ଦେଇଛନ୍ତି । କିନ୍ତୁ ପରିଶେଷରେ ଶୁକ ମୁନି ଉପସ୍ଥିତ ହୋଇ ମହାରାଜ ପରୀକ୍ଷିତଙ୍କୁ ଶ୍ରୀକୃଷ୍ଣଙ୍କ ଅପୂର୍ବ ଚରିତ ଶୁଣାଇଛନ୍ତି । ଏହି ଅଧ୍ୟାୟରେ ସମସ୍ତ ଧର୍ମଠାରୁ ବୈଷ୍ଣବ ଧର୍ମର ଅଧିକ ଗୁରୁତ୍ୱ ଉପସ୍ଥାପନ କରାଯାଇଛି ।

**ଦ୍ୱାବିଂଶରୁ ତ୍ରିଂଶ ଅଧ୍ୟାୟ**—ଦ୍ୱାବିଂଶରୁ ତ୍ରିଂଶ ଅଧ୍ୟାୟ ପର୍ଯ୍ୟନ୍ତ ଦୀର୍ଘ ନଅଗୋଟି ଅଧ୍ୟାୟ ଶ୍ରୀକୃଷ୍ଣଙ୍କର ଦିବ୍ୟ ରାସଲୀଳା ବର୍ଣ୍ଣିତ ହୋଇଅଛି । ଶ୍ରୀମଦ୍ ଭାଗବତର ରାସ ପଞ୍ଚାଧ୍ୟାୟୀକୁ ପରିବର୍ଦ୍ଧିତ କରି ଏଠାରେ ନଅଗୋଟି ଅଧ୍ୟାୟରେ ରାସକ୍ରୀଡ଼ାର ବିଷୟବସ୍ତୁକୁ ବର୍ଣ୍ଣନା କରାଯାଇଛି । ପରେ ଏହାର ସ୍ୱତନ୍ତ୍ର ଆଲୋଚନା କରାଯାଇଛି ।

**ଏକତ୍ରିଂଶ ଓ ଦ୍ୱାତ୍ରିଂଶ ଅଧ୍ୟାୟ** -ଏହି ଦୁଇଟି ଅଧ୍ୟାୟରେ ପରୀକ୍ଷିତଙ୍କର ଦିବ୍ୟ ଗତି ବର୍ଣ୍ଣିତ ହୋଇଛି । ରାସତତ୍ତ୍ୱ ଶ୍ରବଣ କରି ମହାରାଜ ପରୀକ୍ଷିତ ଧ୍ୟାନସ୍ଥ ଅବସ୍ଥାରେ ବ୍ରହ୍ମ ସାକ୍ଷାତ୍କାର କରି ଦେହତ୍ୟାଗ କରି ଅଛନ୍ତି । ଅବ୍ୟବହିତ ପରେ ବ୍ରହ୍ମଶାପ ରକ୍ଷା

କରିବାକୁ ସର୍ପରାଜ ତକ୍ଷକ ରାଜାଙ୍କର ଜଡ଼ ଶରୀରକୁ ଦଂଶନ କରି ଧ୍ୱଂସାବଶେଷରେ ପରିଣତ କରିଛି । ଏଥିଠାରୁ 'ଶୈବାଗମ'ର ବିଷୟବସ୍ତୁ ପରିସମାପ୍ତି ଘଟିଛି । ଗ୍ରନ୍ଥ ଶେଷରେ କବି ଜୀବନର ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହୋଇଅଛି ।

ସଂକ୍ଷେପରେ ଏହା ହିଁ ହେଉଛି ଶୈବାଗମର ବିଷୟବସ୍ତୁ ।

## ଶୈବାଗମ ଗ୍ରନ୍ଥରେ ପ୍ରତିପାଦ୍ୟ ଜ୍ଞାନମିଶ୍ରା ଭକ୍ତିତତ୍ତ୍ୱ

ଷୋଡ଼ଶ ଶତାବ୍ଦୀର ଆଦ୍ୟପାଦରେ ଶ୍ରୀଚୈତନ୍ୟ ଓଡ଼ିଶା ଭୂମିରେ ପଦାର୍ପଣ କରି ବୈଷ୍ଣବ ଧର୍ମ ପ୍ରଚାର କଲେ । କିନ୍ତୁ ଚୈତନ୍ୟଙ୍କ ପୂର୍ବରୁ ଓଡ଼ିଶାର ପଞ୍ଚଗୋସ୍ୱାମୀମାନେ ଓଡ଼ିଆ ପ୍ରାଣରେ ବୈଷ୍ଣବୀୟ ତତ୍ତ୍ୱକୁ ଭରିଦେଇ ଥିଲେ । ଏମାନଙ୍କର ପ୍ରଚାରିତ ବୈଷ୍ଣବ ଧର୍ମ ଚୈତନ୍ୟଙ୍କ ପ୍ରଚାରିତ ଶୁଦ୍ଧ ରାଗାନୁଗା ପ୍ରେମଭକ୍ତି ଧର୍ମଠାରୁ ପୃଥକ୍ ଥିଲା । ଚୈତନ୍ୟ ପ୍ରଚାରିତ ଧର୍ମରେ ଇଷ୍ଟଦେବତା ଥିଲେ କୃଷ୍ଣ କିନ୍ତୁ ପଞ୍ଚସଖା ପ୍ରଚାରିତ ବୈଷ୍ଣବ ଧର୍ମର ଇଷ୍ଟଦେବ ଜଗନ୍ନାଥ । ଜଗନ୍ନାଥଙ୍କୁ କେନ୍ଦ୍ର କରି ସମଗ୍ର ଭାରତ ଭୂମିରୁ ଶଙ୍କରାଚାର୍ଯ୍ୟ, ରାମାନୁଜ, ମାଧ୍ୱ, ବିଷ୍ଣୁସ୍ୱାମୀ, ନିମ୍ବାର୍କ ପ୍ରଭୃତି ବିଭିନ୍ନ ସମ୍ପ୍ରଦାୟର ଆଚାର୍ଯ୍ୟମାନେ ପୁରୀଧାମକୁ ଆସିଥିଲେ । ଏକାଦଶ ଶତାବ୍ଦୀରେ ଓଡ଼ିଶାରେ ଗଙ୍ଗବଂଶ ପ୍ରତିଷ୍ଠା ହେଲା ଓ ଠିକ୍ ପରେ ପରେ ଦାକ୍ଷିଣାତ୍ୟର ପ୍ରଧାନ ବୈଷ୍ଣବାଚାର୍ଯ୍ୟ ରାମାନୁଜ ଓଡ଼ିଶା ଆଗମନ କଲେ । ଏହିସମୟକୁ ଉତ୍ତର ଭାରତର ପାଞ୍ଚରାତ୍ର ଧର୍ମ ଦାକ୍ଷିଣାତ୍ୟ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ ଯାଇଥିଲା ଓ ରାମାନୁଜ ମଧ୍ୟ ଏହି ଧର୍ମକୁ ନିଜର ମତରୂପେ ଗ୍ରହଣ କରିନେଇ ସାରିଥିଲେ । ରାମାନୁଜଙ୍କର ପ୍ରବଳ ପ୍ରଭାବରେ ଚୋଡ଼ଗଙ୍ଗ ଦେବଙ୍କ

ସମସ୍ତରୁ ଜଗନ୍ନାଥ ମନ୍ଦିର ବେଢ଼ା ମଧ୍ୟରେ ଲକ୍ଷ୍ମୀ(ଶ୍ରୀ) ମନ୍ଦିର ପ୍ରତିଷ୍ଠା ହେଲା । ଜଗନ୍ନାଥ ଓ ବଳଭଦ୍ର ହେଲେ ସାତ୍ତ୍ୱତ ତନ୍ତ୍ରର ବାସୁଦେବ ଏବଂ ସଙ୍କର୍ଷଣ । ଲକ୍ଷ୍ମୀ ବାଣୀ ତାଙ୍କର ଇଚ୍ଛା ଶକ୍ତିରୂପ ଓ ସୁଦର୍ଶନ କ୍ରିୟାଶକ୍ତି ରୂପେ ବିବେଚିତ ହେଲେ । ପାଞ୍ଚରାତ୍ର ସଂହିତା ମାନଙ୍କ ଅନୁଯାୟୀ ଜଗନ୍ନାଥ ମନ୍ଦିରରେ ବୈଷ୍ଣବାଗମର ମଧ୍ୟରେ ଜ୍ଞାନ, ଯୋଗ ଓ କ୍ରିୟା, ଚର୍ଯ୍ୟା ପ୍ରଭୃତି ତତ୍ତ୍ୱମାନଙ୍କର ପ୍ରାଧାନ୍ୟ ସ୍ୱୀକୃତ ହେଲା । ଏହିଭଳି ଏକ ସମ୍ମିଶ୍ରଣର ପୁଷ୍ଟିକୃତ ରୂପ ହେଲେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତିତତ୍ତ୍ୱର ପ୍ରବର୍ତ୍ତକ ପଞ୍ଚସଖା ସାଧକ ବୃନ୍ଦ । ଏମାନଙ୍କର ସାଧନ ପ୍ରଣାଳୀ ମଧ୍ୟରେ ପାଞ୍ଚରାତ୍ର ସଂହିତାର ଆଗମର ପଦ୍ଧତି, ବେଦାନ୍ତର ଶୂନ୍ୟବାଦ, ପାତଞ୍ଜଳଙ୍କର ଯୋଗ ଦର୍ଶନ, କପିଳଙ୍କର ସାଂଖ୍ୟ ଦର୍ଶନ ଓ ନାଥ ଧର୍ମର ପିଣ୍ଡ ବ୍ରହ୍ମାଣ୍ଡ ବାଦ ସହିତ ଉତ୍କଳାଗତ ବିଭିନ୍ନ ବୈଷ୍ଣବଧର୍ମୀଙ୍କର ସାଧନ-ମାର୍ଗର ସମ୍ମିଶ୍ରଣ ଘଟିଥିଲା । ଚୈତନ୍ୟଙ୍କର ଉତ୍କଳ ଗମନ ପରେ ମଧ୍ୟ ପଞ୍ଚସଖା ସାଧନା ମଧ୍ୟରେ ଏହି ତତ୍ତ୍ୱ ଅପରିବର୍ତ୍ତିତ ଥିଲା । ଶୈବାଗମରେ ଜଗନ୍ନାଥ ଦାସ, ପ୍ରେମ ଭକ୍ତି ବ୍ରହ୍ମଗୀତାରେ ଯଶୋବନ୍ତ ଦାସ, ବେଦାନ୍ତ ସାର ଗୁପ୍ତ ଗୀତାରେ ବଳରାମ ଦାସ ଓ ଶୂନ୍ୟ ସଂହିତାରେ ଅଚ୍ୟୁତାନନ୍ଦ ଦାସ ଯେଉଁ ପ୍ରେମଭକ୍ତିର ପ୍ରାଧାନ୍ୟ ଆରୋପ କରିଯାଇଛନ୍ତି ତାହା ଚୈତନ୍ୟଙ୍କ ପ୍ରବର୍ତ୍ତିତ ଶୁଦ୍ଧା ରାଗାନୁଗା ମାର୍ଗର ପ୍ରେମଭକ୍ତି ନୁହେଁ, ଅଧିକନ୍ତୁ ଉଲ୍ଲିଖିତ ପାଞ୍ଚରାତ୍ର ଧର୍ମରେ ସୃଷ୍ଟ ଓ ପୁରି ବୈଷ୍ଣବ ସଂପ୍ରଦାୟଙ୍କ ଦ୍ୱାରା ପରିପୁଷ୍ଟ ପ୍ରେମଭକ୍ତି ଥିଲା ସାତ୍ତ୍ୱତନ୍ତ୍ରର ବାସୁଦେବ ଜଗନ୍ନାଥରୂପେ ଶୈବାଗମ ଗ୍ରନ୍ଥର ଆଦ୍ୟରେ ବର୍ଣ୍ଣିତ ହୋଇଛନ୍ତି । ଏତଦ୍ ବ୍ୟତୀତ ଶୈବାଗମରେ ପ୍ରତିପାଦ୍ୟ ଜ୍ଞାନମିଶ୍ରା ଭକ୍ତି ଧର୍ମର ଅନ୍ୟାନ୍ୟ ତତ୍ତ୍ୱମାନଙ୍କର ସୂଚନା ଗ୍ରନ୍ଥରେ ପ୍ରଦତ୍ତ ହେଲା ।

(କ) **ଅବତାର ତତ୍ତ୍ୱ**—ଶ୍ରୀମଦ୍‌ଭଗବଦ୍ ଗୀତାରେ ଅଛି ଦୁଷ୍ଟମାନଙ୍କୁ ବିନାଶ କରି ଧରିତ୍ରୀକୁ ଭାରମୁକ୍ତ କରିବାପାଇଁ ଭଗବାନ ବିଭିନ୍ନ ଅବତାର ଗ୍ରହଣ କରିଥାନ୍ତି । ସେହି ବର୍ଣ୍ଣାତ ମର୍ତ୍ତ୍ୟ ବାସୀ ମାନବମାନଙ୍କୁ ମୋକ୍ଷପ୍ରଦାନ କରି ସେ ନିଜର ଗୁଣରାଜିର ପ୍ରକାଶ କରିଥାନ୍ତି । ଅବତାରବାଦ ସଂପର୍କରେ ଭାଗବତରେ ଗୋଟିଏ ଶ୍ଳୋକରେ କୁହାଯାଇଛି--

ତୈର୍ଦର୍ଶନୀୟାବୟବୈରୁଦାର—ବିଳାସହାସେକ୍ଷିତ ବାମସୂକ୍ତୈଃ
ହୃତାତ୍ମନୋ ହୃତପ୍ରାଣାଂଶ୍ଚ ଭକ୍ତିରନିଚ୍ଛତୋମେଗତିମଣ୍ୱୀଂ ପ୍ରୟୁଂକ୍ତେ
(ଭାଗବତ ୩ । ୨୫ । ୩୬)

ଅଲୌକିକ ଭକ୍ତି ଓ ପ୍ରେମ ବିତରଣ କରିବାର ଉଚ୍ଚତର ଅଭିଳାଷ ନେଇ ତ୍ରିଗୁଣାତୀତଭଗବାନ ବିଷ୍ଣୁ ମର୍ତ୍ତ୍ୟାବତାର ରୂପେ ଅବତୀର୍ଣ୍ଣ ହୁଅନ୍ତି। ଏହି ଅବତାରମାନଙ୍କୁ ପୁନଶ୍ଚ ପୁରାଣମାନଙ୍କରେ ପୁରୁଷାବତାର, ଗୁଣାବତାର, ଲୀଳାବତାର ଓ ମନ୍ୱନ୍ତରାବତାର, ଭେଦରେ ଚାରିଭାଗରେ ବିଭକ୍ତ କରାଯାଇଥାଏ । ଆଲୋଚ୍ୟ ଶୈବାଗମରେ ଅବତାରୀ ପୁରୁଷ ହେଉଛନ୍ତି ସ୍ୱୟଂ ନୀଳାଚଳପତି ଜଗନ୍ନାଥ । ଅବତାରର ମୂଳ କ୍ଷେତ୍ର ବୈକୁଣ୍ଠ ବା ଗୋଲକଧାମ ପରିବର୍ତ୍ତେ ନିତ୍ୟଗୋଲୋକସ୍ଥଳ ନୀଳାଚଳ । ଜଗନ୍ନାଥ ହେଉଛନ୍ତି ତ୍ରିଗୁଣାତୀତ ଓ ତାଙ୍କଠାରୁ ସମସ୍ତ ଅବତାରମାନଙ୍କର ସୃଷ୍ଟି ହୋଇଛି । ସ୍କନ୍ଦପୁରାଣ ଉତ୍କଳ ଖଣ୍ଡ ୫୫ଅଧ୍ୟାୟ ୪୫ଶ୍ଳୋକରେ ଅଛି "ଏହି କ୍ଷେତ୍ର ହିଁ ସୃଷ୍ଟି, ସ୍ଥିତି ପାଳନର ମୂଳାୟତନ; ଭଗବାନ ଏହି ସ୍ଥାନରେ ନାନା ମୂର୍ତ୍ତିରେ ଅବତୀର୍ଣ୍ଣ ହୋଇ କାର୍ଯ୍ୟବଶତଃ ଅନ୍ୟତ୍ର ଗମନ କରନ୍ତି ଏବଂ ପୃଥିବୀ ସମ୍ବନ୍ଧରେ କର୍ତ୍ତବ୍ୟ କାର୍ଯ୍ୟ ସମ୍ପାଦନପୂର୍ବକ ପୁନରାୟ ଏହି ସ୍ଥାନରେ ହିଁ ଅବସ୍ଥାନ କରନ୍ତି ।

ସ୍କନ୍ଦ ପୁରାଣର ଏହି ତତ୍ତ୍ୱକୁ ଗ୍ରହଣ କରି ଉକ୍ତଳୀୟ ଜ୍ଞାନମିଶ୍ରା ସାଧକ ମାନେ ଜଗନ୍ନାଥଙ୍କୁ ନିଜର ପରଦେବତା ଓ ଅବତାରୀ ପୁରୁଷ ରୂପେ ଗ୍ରହଣ କରି ନେଇଥିଲେ । ଶୈବାଗମରେ ଜଗନ୍ନାଥ ଦାସ ମଧ୍ୟ ଠିକ୍ ଏହି ତତ୍ତ୍ୱର ଅବତାରଣା କରିଅଛନ୍ତି—

ହେ ପ୍ରଭୁ ନୀଳାଦ୍ରୀ ଶିଖରେ । ବିଜୟେ ଦାରୁ କଳେବରେ ।
ଅଶେଷ ଲୋକ ନିସ୍ତାରଣେ । ଶରଣ ଜନଙ୍କ ରକ୍ଷଣେ ।
ଜନଧି ତଟେ ବିଜେକରି । ଦାସବତ୍ସଳ ଦଇତାରି ।
ହୋଇଅଛ ନାନା ଅବତାର । ସୃଷ୍ଟି ପାଳଣେ ତତପର ।"

ଏହି ନାନା ଅବତାର ସମ୍ପର୍କରେ କହିବାକୁ ଯାଇ କବି ଭାଗବତ ପୁରାଣର ଅବଲମ୍ବନରେ ବିଷ୍ଣୁଙ୍କର ଚବିଶ ଅବତାରଙ୍କ ନାମ ଏଠାରେ ଉଲ୍ଲେଖ କରିଅଛନ୍ତି । ସେମାନେ ହେଲେ ଶ୍ରୀରାମ, ହଳଧର, କୋଳ (ବରାହ) ନୃସିଂହ, କଚ୍ଛପ, କପିଳ, ମୀନ, ବାମନ, ହୟଗ୍ରୀବ, ନାରଦ, ହୈହୟ, ଯଜ୍ଞକୁମାର (ସନକ' ସନତ୍କୁମାରାଦି) ବେଦବ୍ୟାସ, କଳ୍କୀ, ହଂସ ହରମ, ଧନ୍ୱନ୍ତରୀ, ବୁଦ୍ଧ, ପର୍ଶୁରାମ ଉରୁକ୍ରମ ନରନାରାୟଣ ସୃଷ୍ଟି ଗର୍ଭକ ଓ ମୋହିନୀ । ଏହି ଅବତାର ମାନ ଗ୍ରହଣ କରି ସାରିବାପରେ ଗୋପୀ ଗୋପାଳମାନଙ୍କ ପାଇଁ ସ୍ୱୟଂ ଜଗନ୍ନାଥ କୃଷ୍ଣ ରୂପରେ ଜନ୍ମଲାଭ କଲେ । କବି ବର୍ଣ୍ଣନା କରନ୍ତି—

"ଗୋପୀ ଗୋପାଳଙ୍କର ଅର୍ଥେ । ସ୍ୱୟଂ ଜନ୍ମିଲେ ଜଗନ୍ନାଥେ
ଅଶେଷ ଅବତାର ମାନ । କୃଷ୍ଣ ଭାବରେ ଅବସାନ ।

ଭାଗବତରେ କୃଷ୍ଣଙ୍କୁ ସ୍ୱୟଂ ବିଷ୍ଣୁ (କୃଷ୍ଣସ୍ତୁ ଭଗବାନ ସ୍ୱୟମ୍) ବୋଲି କୁହାଯାଏ । ସେ ଭଗବାନଙ୍କର ପୂର୍ଣ୍ଣାବତାର । ଜ୍ଞାନମିଶ୍ରା

ପରମ୍ପରାର ସାଧକ କବି ଜଗନ୍ନାଥ ଏଠାରେ କୃଷ୍ଣଙ୍କୁ ନିର୍ଗୁଣାତୀତ ଭଗବାନ୍ ଜଗନ୍ନାଥଙ୍କର ପୂର୍ଣ୍ଣାବତାର ସ୍ୱରୂପରେ ଚିତ୍ରଣ କରି ନେଇଛନ୍ତି ।

(ଖ) **ନାମତତ୍ତ୍ୱ**—ଉଭୟ ଜ୍ଞାନମିଶ୍ରା ଓ ଶୁଦ୍ଧରାଗାନୁଗା ଭକ୍ତି ପରମ୍ପରାରେ ନାମତତ୍ତ୍ୱ ଉପରେ ଗୁରୁତ୍ୱ ଦିଆଯାଇଛି । ଶୁଦ୍ଧା ଭକ୍ତି ମାର୍ଗରେ ନାମକୀର୍ତ୍ତନ କଲାବେଳେ ଭକ୍ତ ଆତ୍ମବିସ୍ମୃତ ହୋଇ ପ୍ରେମମୟ ପୁରୁଷ କୃଷ୍ଣଚନ୍ଦ୍ରଙ୍କର ଅନିନ୍ଦ୍ୟ ସୁନ୍ଦର ରୂପଚିନ୍ତା କରୁଥାଏ । କିନ୍ତୁ ଉତ୍କଳୀୟ ଜ୍ଞାନମାର୍ଗ ସାଧକମାନଙ୍କ ନାମ ଭଜନ କରିବାର ଉପାୟ ଏହିପରି ଥିଲା—

"ଯେମନ୍ତ ନାମକୁ ଭଜନ କରିବ ତହିଁର ବିଚାର ଶୁଣ,
ପଦ୍ମ ଆସନରେ ସମାଧି ଯୋଗରେ ଅନାହତେ ଥୋଇ ମନ
ଓଷ୍ଠ କଣ୍ଠ ତାଳୁ ଜିହ୍ୱା ହିଁ ନଲଗି ଦନ୍ତ, ମୂର୍ଦ୍ଧନା ଘଟିକା,
ଏମନ୍ତ ଭଜନ ଯେ ଅବା କରିବ ଶୁଣିଯା ଲଗେ ଚାଟିକା

'ଶୈବାଗମ'ରେ କବି ଜଗନ୍ନାଥ ଦାସ ନାମ କୀର୍ତ୍ତନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଅଛନ୍ତି । ନାମ ସଂକୀର୍ତ୍ତନ ପାଇଁ କୌଣସି ସ୍ଥାନ କାଳର ପ୍ରୟୋଜନୀୟତା ନାହିଁ । ଆନନ୍ଦ ଚିତ୍ତରେ ଦିବାନିଶି କୃଷ୍ଣନାମ କୀର୍ତ୍ତନ କରିବାକୁ କବି ଏଥିରେ ନିର୍ଦ୍ଦେଶ ଦେଇଛନ୍ତି । ନାମ ଭଜନ ଦ୍ୱାରା ସମସ୍ତ ମନ୍ତ୍ର ଯନ୍ତ୍ରର ସିଦ୍ଧି ମିଳିଥାଏ ମନ୍ତ୍ର ଶକ୍ତିରେ ଭଜନ କଲେ ଅନେକ କ୍ଳେଶ ସହ୍ୟ କରିବାକୁ ପଡ଼ି-ଥାଏ । ତେଣୁ ଯେଉଁ ବ୍ୟକ୍ତି ମନ୍ତ୍ର ମାର୍ଗ ଛାଡ଼ି ନାମ ମାର୍ଗରେ କୃଷ୍ଣଙ୍କୁ ଭଜନ କରେ ତାର ଜୀବନ ଧନ୍ୟ । କବି ତେଣୁ କହିଛନ୍ତି—

"ନାମରେ ଅଛି ସର୍ବଶକ୍ତି । ନାମରେ ଲଭେ ହରିଭକ୍ତି ।
ନାମ ପରମାନନ୍ଦ ଧାମ । ନାମ ଯେ ଆଗମ ନିଗମ ।

ନାମ ସେ ସର୍ବ ଯୋଗଫଳ । ନାମ ସେ ଅଶେଷ ମଙ୍ଗଳ
ନାମ ସେ ଗୁରୁ ପରାପର । ନାମ ସେ ଚତୁର୍ବର୍ଗ ବର ।
ନାମ ସେ ମନ୍ତ୍ର ଯନ୍ତ୍ର ସାର । ବେଦ ଆଗମେ ଅଗୋଚର ।
ନାମ ସମାନ କୋହେ ଦ୍ୱର । ନାମରେ ସର୍ବ ଶକ୍ତି ଧର । "

ଅଜ୍ଞାନତାବଶତଃ ଅମୃତ ସେବନ କଲେ ଶରୀର ଯେପରି ଅମରତ୍ୱ ପ୍ରାପ୍ତ ହୁଏ । ଅଗ୍ନିକୁ ନଜାଣି ପାଣି ସ୍ପର୍ଶ କଲେ ତାର ତେଜରେ ଅଙ୍ଗ ଯେଉଁଭଳି ଦଗ୍ଧୀଭୂତ ହୋଇଥାଏ, ଠିକ୍ ସେହିଭଳି ନାମର ମହିମା ଜାଣୁ ବା ନଜାଣୁ ଯେଉଁ ଭକ୍ତ ଭଗବାନଙ୍କର ନାମ କୀର୍ତ୍ତନ କରେ, ସେ ନିର୍ବିବାଦରେ କୃଷ୍ଣ ପାଦ ଲାଭ କରିଥାଏ । ଏପରି ପଶୁ ଜନ୍ତୁ ମଧ୍ୟ ନାମ ଭଜନ କଲେ କୃଷ୍ଣତ୍ୱ ପ୍ରାପ୍ତି ହୋଇ ଥାନ୍ତି ।

(ଗ) **ମନ୍ତ୍ରତତ୍ତ୍ୱ**—ଜ୍ଞାନ ମିଶ୍ରାଭକ୍ତି ସାଧନାରେ ଯନ୍ତ୍ର ଓ ମନ୍ତ୍ର ସାଧନା ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି । ଯନ୍ତ୍ରମଧ୍ୟରେ ମନ୍ତ୍ରକୁ ସ୍ଥାପନ କରି ସାଧନା କଲେ ଭକ୍ତି, ମୁକ୍ତି ଓ ସିଦ୍ଧି ମିଳିଥାଏ । ଶୈବାଗମରେ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ଯନ୍ତ୍ରସ୍ୱରୂପ ବୋଲି କୁହାଯାଇଛି ଏବଂ ମନ୍ତ୍ର ସ୍ୱାଧ୍ୟାୟ ଫଳରେ ମନ୍ତ୍ରସ୍ୱରୂପ ବ୍ରହ୍ମାଙ୍କୁ ଲାଭ କରିପାରି ପାରିବ ବୋଲି ନିର୍ଦ୍ଦେଶିତ ହୋଇଛି । ବୈଷ୍ଣବ ମାନଙ୍କର ପ୍ରଧାନ ସାଧନ ମନ୍ତ୍ର, ହରେ ରାମ କୃଷ୍ଣ'କୁ ପ୍ରାଧାନ୍ୟ ଦିଆଯାଏ ତାର ସାଧନ ବିଷୟରେ ନିମ୍ନମତେ କୁହା ଯାଇଛି—

" ପ୍ରଥମେ ନାମ ବିଷୟ ମନ୍ତ୍ର । ଶିରେ ନିବେଶି କର ପତ୍ର ।
ଶ୍ରୀବ୍ୟାସ ଗୌତମ ନାରଦ । ଋଷୟ ଅନୁରୂପ ଛନ୍ଦ ।
ଶ୍ରୀରାମ ବୀଜ ହରେ ଶକ୍ତି । ପରମ ପୁରୁଷାର୍ଥ ଯୁକ୍ତି ।

ଶ୍ରୀକୃଷ୍ଣ ପ୍ରୀତି ବନେଯୋଗ । ମନ୍ତ୍ର ଉଚ୍ଚରିବ ଷଡ଼ାଙ୍ଗ ।
ନାସାଗ୍ରେ ବିନ୍ୟସ୍ତ ଲୋଚନ । କରିବ କୃଷ୍ଣରୂପ ଧ୍ୟାନ ।”

ଏହା ବ୍ୟତୀତ ପଞ୍ଚମ ଅଧ୍ୟାୟରୁ ଏକାଦଶ ଅଧ୍ୟାୟ ମଧ୍ୟରେ ବର୍ଣ୍ଣିତ ଋଷିମାନଙ୍କର ତପସ୍ୟା ଓ ଗୋପୀତ୍ୱ ପ୍ରାପ୍ତି ପର୍ଯ୍ୟାୟରେ ପଦ୍ମ ପୁରାଣ ଓ ନାରଦୀୟ ପଞ୍ଚରାତ୍ର ପ୍ରଭୃତି ଅନୁସରଣପୂର୍ବକ କବି ବିଭିନ୍ନ ମନ୍ତ୍ର ମାନଙ୍କର ସୂଚନା ପ୍ରଦାନ କରିଛନ୍ତି । ସେମାନଙ୍କ ମଧ୍ୟରୁ ଦଶାକ୍ଷର ( ଗୋପୀଜନ ବଲ୍ଲଭାୟ ସ୍ୱାହା ) ଦ୍ୱାଦଶାକ୍ଷର ( ଶ୍ରୀଂ ହ୍ରୀଂ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ସ୍ୱାହା ), ପଞ୍ଚଦଶାକ୍ଷର (ଓଁ କ୍ଲୀଂ କୃଷ୍ଣାୟ ଗୋପୀଜନ ବଲ୍ଲଭାୟ ସ୍ୱାହା ) ଷୋଡ଼ଶାକ୍ଷର ବା ପ୍ରେମ ଷୋଡ଼ଶୀ (ହ୍ରୀଂ ଶ୍ରୀଂ କ୍ଲୀଂ ଗୋପୀଜନ ବଲ୍ଲଭାୟ ସ୍ୱାହା କ୍ଲୀଂ ଶ୍ରୀଂ ହ୍ରୀଂ )ଓ, ଅଷ୍ଟାଦଶାକ୍ଷର (ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା ) ପ୍ରଭୃତି ପ୍ରଧାନ । କବି ଜଗନ୍ନାଥ ସ୍ୱଳନିତ ପଦ ମାନଙ୍କଦ୍ୱାରା ମନ୍ତ୍ର ମାନଙ୍କର ନିର୍ଦ୍ଦେଶ କରିଛନ୍ତି । ଆଦ୍ୟରେ ପ୍ରଣବ ସହିତ କାମବୀଜ ( ଓଁ କ୍ଲୀଂ ) ପ୍ରାନ୍ତରେ ଅଗ୍ନି ମହିଷୀ ( ସ୍ୱାହା ) ରଖି ମନ୍ତ୍ର ଉଚ୍ଚାରଣ କରିବାର ବିଧି ନିର୍ଦ୍ଦେଶିତ ହୋଇଛି । ଆଲୋଚ୍ୟ ସମସ୍ତ ମନ୍ତ୍ର ପାଞ୍ଚରାତ୍ର ସମ୍ପ୍ରଦାୟର ସଂହିତା ମାନଙ୍କରୁ ଉଦ୍ଧୃତ । ଜ୍ଞାନମିଶ୍ରା ଓ ଶୁଦ୍ଧାଭକ୍ତି ଧର୍ମର ସାଧକ ମାନେ ଗ୍ରହଣ କରିଛନ୍ତି ।

(ଘ) **ରାଧାକୃଷ୍ଣ ତତ୍ତ୍ୱ**—ଶୈବାଗମ ଗ୍ରନ୍ଥର ନାୟକ ଶ୍ରୀକୃଷ୍ଣ ଏବଂ ନାୟିକା ଶ୍ରୀରାଧା । ବର୍ଣ୍ଣନା ମାଧ୍ୟମରେ ପ୍ରଥମେ ଶିବଙ୍କ ଦ୍ୱାରା ଏବଂ ପରେ ଶୁକ ମୁନିଙ୍କ ଦ୍ୱାରା କୃଷ୍ଣୋପାସନାର ପ୍ରାଧାନ୍ୟ ସ୍ୱୀକାର କରାଯାଇଛି । ଯାବାଲ ମୁନି ବ୍ରହ୍ମବିଦ୍ୟା ସହ ସାକ୍ଷାତ୍ କାର କରିବା

ପରେ ବ୍ରହ୍ମବିଦ୍ୟା ତାଙ୍କୁ କହିଛନ୍ତି —ମୁଁ ସମସ୍ତ ଜାଗତିକ ଓ ଐଶ୍ୱରିକ ବିଦ୍ୟାରେ ଅଧିକାରିଣୀ ହୋଇଛୁ —

"ତଥାପି କୃଷ୍ଣଭକ୍ତି ବିନୁ । ବିଅର୍ଥ କଲି ନିଜ ତନୁ ।
ଯେହୁ ତନୁ ହୋଇବ କାରଣ । ଶ୍ରୀକୃଷ୍ଣସେବା ପରାୟଣ ।

× × ×

ଶ୍ରୀକୃଷ୍ଣ ପାଦ ପଦ୍ମ ଆଶେ । ତପ ସାଧିଲି ବନ ଦେଶେ ।
ଯେହୁ ଦେହ ତେଜି ଦେହାନ୍ତରେ । ଶ୍ରୀକୃଷ୍ଣ ବାସନା ଶରୀରେ ।
କୃଷ୍ଣ ଚରଣେ କରି ଧ୍ୟାନ । କରିବି ବୈକୁଣ୍ଠ ଗମନ"

ଏଥିରେ ଶ୍ରୀକୃଷ୍ଣଙ୍କ ମହିମାଠାରୁ ରାଧାଙ୍କର ମହିମାର ମଧ କୀର୍ତ୍ତନ କରାଯାଇଛି । ଗ୍ରନ୍ଥରେ ବିଷୟବସ୍ତୁ ସଂଯୋଜନା ଏବଂ ରାଧାକୃଷ୍ଣତତ୍ତ୍ୱ ପରିବେଷଣ ନିମିତ୍ତ କବି ବ୍ରହ୍ମସଂହିତା, ନାରଦୀୟ ପଞ୍ଚରାତ୍ର, ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ଓ ଶ୍ରୀମଦ୍ ଭାଗବତରୁ ଉପାଦାନ ସଂଗ୍ରହ କରିଅଛନ୍ତି । ଜ୍ଞାନମିଶ୍ରା ଭକ୍ତି ଧର୍ମର ପ୍ରାଧାନ୍ୟ ସ୍ୱୀକାର କରାଇବାପାଇଁ ପ୍ରଥମ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥଙ୍କର ଅବତାରଭାବେ ଗ୍ରହଣ କରିଛନ୍ତି । କିନ୍ତୁ ଜଗନ୍ନାଥ ସ୍ୱୟଂ କୃଷ୍ଣ ରୂପରେ ଜନ୍ମଲାଭ କରିଛନ୍ତି, କୃଷ୍ଣ 'ତାଙ୍କର ଅଂଶାବତାର ନୁହଁନ୍ତି, ପୂର୍ଣ୍ଣାବତାର ଏହିଠାରୁ ଜଗନ୍ନାଥ ଅନ୍ତରାଳରେ ରହିଯାଇଛନ୍ତି ଏବଂ ଜଗନ୍ନାଥରୂପୀ କୃଷ୍ଣଙ୍କର ପ୍ରଶସ୍ତି ଆରମ୍ଭ ହୋଇଛି ।

ପୂର୍ବରୁ ଆଲୋଚିତ ହୋଇଛି 'ବୈରାଗମ'ରେ କୃଷ୍ଣଙ୍କ ଉପରେ ପାଞ୍ଚରାତ୍ରଧର୍ମର ବାସୁଦେବଙ୍କର ଅପ୍ରତିହତ ପ୍ରଭାବ ରହିଛି । ଷୋଡ଼ଶ ଶତାବ୍ଦୀର କବି ଜଗନ୍ନାଥଦାସଙ୍କ ବହୁପୂର୍ବରୁ ଓଡ଼ିଶାରେ ରାଧାକୃଷ୍ଣ

ଉପାସନା ଓ ତତ୍ତ୍ୱର ପ୍ରାଧାନ୍ୟ ସୃଷ୍ଟି ହୋଇ ସାରଥିଲା । ପ୍ରାକ୍ ଏକାଦଶ ଶତକର ମାଧବ ଉପାସନା ଓ ଏକାଦଶ ଶତାବ୍ଦୀରେ ବାସୁଦେବ, ଦ୍ୱାଦଶ ଶତାବ୍ଦୀରେ ଜୟଦେବଙ୍କ ଲେଖାମାନରେ କୃଷ୍ଣ ରୂପେ ରୂପାପ୍ପିତ ହୋଇ ସାରିଥିଲେ । ଓଡ଼ିଶାର ବହୁ ସଂସ୍କୃତ ଓ ପ୍ରାକୃତ ଭାଷାରେ କବିମାନେ ସ୍ୱୀୟ ଗ୍ରନ୍ଥରେ ମାଧବ, ଗୋପୀନାଥ ଓ କୃଷ୍ଣଙ୍କର ସ୍ତୁତି କରି ଅଛନ୍ତି ।

ଶୈବାଗମରେ ରାଧାକୃଷ୍ଣ ପ୍ରଥମେ ପଦ୍ମପୁରାଣ, ମଧ୍ୟଭାଗରେ ପାଞ୍ଚରାତ୍ର ସଂହିତା ଓ ବ୍ରହ୍ମବୈବର୍ତ୍ତ ପୁରାଣ ଏବଂ ଅନ୍ତିମ ଭାଗରେ ଭାଗବତ ପୁରାଣର ଅନୁସରଣରେ ବର୍ଣ୍ଣିତ ହୋଇଛନ୍ତି । ଶିବ, ନାରଦ ଓ ଗୋପୀମାନଙ୍କ କଣ୍ଠରେ ସେ ପରମ ପୁରୁଷ, ନିରାକାର ଅଖିଳ ନିଦାନ, ପରମେଶ୍ୱର, ପରମବ୍ରହ୍ମ ପ୍ରଭୃତି ଭାବେ ସ୍ତୁତ ହୋଇଛନ୍ତି । ଋଷିମାନେ ତପସ୍ୟା କଲାବେଳେ ରାଧାକୃଷ୍ଣଙ୍କର ପ୍ରେମାଲିଙ୍ଗିତ ଯୁଗଳ ରୂପକୁ ଧ୍ୟାନ କରିଛନ୍ତି ।

କୃଷ୍ଣଙ୍କର ଶକ୍ତିଭାବେ ରାଧାକୁ ଶୈବାଗମରେ ପ୍ରାଧାନ୍ୟ ଦିଆଯାଇଛି । ନିତ୍ୟଧାମରେ ସେ କୃଷ୍ଣଙ୍କ ସହିତ ରାସକ୍ରୀଡ଼ା କରୁଥାନ୍ତି । ସାମାନ୍ୟ ମନୁଷ୍ୟ ଦେହରେ ସେଠାକୁ ଯାଇହୁଏ ନାହିଁ । ଏହି ସ୍ଥାନକୁ ଯିବା ନିମିତ୍ତ ରାଧା ଭକ୍ତିର ଏକାନ୍ତ ପ୍ରୟୋଜନୀୟତା ରହିଛି । ନିଜେ ଶ୍ରୀକୃଷ୍ଣ ଏ ସମ୍ପର୍କରେ କହିଛନ୍ତି --

" ମୋର ବଲ୍ଲଭୀ ରାଧାନାମ । ସେ ଜାତ ବୃଷଭାନୁ ଗ୍ରାମ ।
ସେ ଯେ ଅଭିନ୍ନ ତନୁ ମୋର । ଲୀଳାରେ ଭିନ୍ନ କଳେବର ।
ତାହାଙ୍କ ଭକ୍ତିଭାବ ବିନୁ । କେ ବା ଲଭିବ ମୋର ତନୁ ।

ଜ୍ଞାନମିଶ୍ରାଭକ୍ତି ସାହିତ୍ୟରେ ଏହାହିଁ ଥିଲା ପ୍ରେମଭକ୍ତି ସାଧନା । ରାଧା ଭାବରେ କୃଷ୍ଣଙ୍କର ପାଦ ପଦ୍ମରେ ଆତ୍ମସମର୍ପଣ କରିବାର

ଏକାନ୍ତ ଅନୁପ୍ରସା ଜଗନ୍ନାଥ, ବଳରାମ ଓ ମହେଶବନ୍ତ ପ୍ରଭୃତି କବି ମାନଙ୍କୁ ଉନ୍ମାଦ କରିଥିଲା । ଜଗନ୍ନାଥ ଦାସ ନିଜକୁ ଶ୍ରୀରାଧାଙ୍କର ଅବତାର ବୋଲି ମଧ୍ୟ ସ୍ୱୀକାର କରୁଥିଲେ ।

ପାଞ୍ଚ ରାତ୍ର ସଂହିତା ମାନଙ୍କ ପରେ ଶୈବାଗମରେ ରାଧାକୃଷ୍ଣଙ୍କର ତାତ୍ତ୍ୱିକ ରୂପ ବର୍ଣ୍ଣିତ ହୋଇଛି । ସହସ୍ରଦଳ କମଳ ମଧ୍ୟରେ ଷଟ୍ କୋଣାକୃତି ପଲଙ୍କ ରହିଛି । ଏହାର ନାମ ପ୍ରେମ ପଲଙ୍କ । ଏଥିରେ ରାଧାକୃଷ୍ଣଙ୍କର ନିତ୍ୟଲୀଳା ସମ୍ପାଦିତ ହେଉଛି । ତାଙ୍କର ଦୁଇପାର୍ଶ୍ୱରେ ଶ୍ରୀ ଓ ଭୂ ( ଭୂବ ) ଶକ୍ତି ବିଦ୍ୟମାନ ରହିଛନ୍ତି । ବହ୍ମଗେନ୍ଦ୍ର ସଂହିତାରେ ବର୍ଣ୍ଣିତ ଶ୍ରୀ, ଭୂ ବେ ଲୀଳା ମଧ୍ୟରୁ ଏଠାରେ ଲୀଳାକୁ ବାଦ୍ ଦିଆଯାଇଛି । ପଲଙ୍କର ଷଟ୍‌କୋଣରେ ଷଟଶକ୍ତି ଏବଂ ପଲଙ୍କର ନିମ୍ନଦେଶରେ ଅଷ୍ଟ ଦଳ, ଷୋଡ଼ଶ ଦଳ, ବତିଂଶ ଦଳ, ଚତୁଃଷ୍ଟି ଦଳ ଓ ଶତ ଦଳ ମାନଙ୍କରେ ସେହି ପରିମାଣରେ ସଖୀମାନେ ପରିବେଷ୍ଟିତ ହୋଇ ରହିଛନ୍ତି । ବ୍ରହ୍ମସଂହିତାରେ ଅଛି—

"ସହସ୍ରଦଳ କମଳଂ ଗୋକୁଳାଖ୍ୟଂ ମହତ୍ପଦଂ
ତତ୍କର୍ଣ୍ଣିକାରଂ ତଦ୍ଧାମ ଅନନ୍ତାଂଶ ସମ୍ଭବମ୍ ।
କର୍ଣ୍ଣିକାରଂ ମହାଯନ୍ତ୍ରଂ ଷଟ୍‌କୋଣଂ ବଜ୍ରକୀଳକମ୍,
ଷଡ଼ଙ୍ଗ ଷଟ୍‌ପଦୀସ୍ଥାନଂ ପ୍ରକୃତ୍ୟା ପୁରୁଷେନଚ ।
ପ୍ରେମାନନ୍ଦ ମହାନନ୍ଦର ସେନା ବସ୍ଥିତଂହିୟତ
ଜ୍ୟୋତି ରୂପେଣ ମନୁନା କାମ ବୀଜେନ ସଙ୍ଗତମ୍ ।"

ସହସ୍ରଦଳ କମଳ ତାର ଗୋକୁଳ ନାମେ ମହତ୍ପଦ । ସେହି ପଦ୍ମର କର୍ଣ୍ଣିକାରକୁ ବୈକୁଣ୍ଠାଖ୍ୟ ମହତ୍ ସ୍ଥାନ କୁହାଯାଏ । ଏହି ସ୍ଥାନରେ ଅନନ୍ତାଂଶ ସମ୍ଭବ ବଳଦେବ ସର୍ବଦା ଆବିର୍ଭୂତ ଥାନ୍ତି । କର୍ଣ୍ଣିକାର ମହାଯନ୍ତ୍ର ଷଟ୍ କୋଣାକୃତି ବଜ୍ରକୀଳକ ବିଶିଷ୍ଟ ଅଷ୍ଟ-

ଷଟ୍‌କ ସମନ୍ୱିତ ଷଟ୍‌ପତ୍ର ସ୍ଥାନ । ଏହା ହେଉଛି ପ୍ରକୃତି ଓ ପୁରୁଷର ବିବାହ ବେଦୀ । ଏହିସ୍ଥାନରେ ଜ୍ୟୋତିରୂପ କାମବୀଜ ଦ୍ୱାରା ମିଳିତ ହୋଇ ପ୍ରେମାନନ୍ଦରେ ପ୍ରକୃତି ପୁରୁଷ ଅବସ୍ଥାନ କରୁଛନ୍ତି । ଶ୍ରୀକୃଷ୍ଣଙ୍କର ଅଂଶ ସମ୍ଭୂତ ଗୋପୀଗଣଙ୍କୁ ସେହି ପଦ୍ମର କେଶର ଓ ପତ୍ର ସ୍ୱରୂପ ଜାଣିବାକୁ ହେବ । ଜଗନ୍ନାଥ ଦାସ ବ୍ରହ୍ମସଂହିତାରେ ଏହି ଭାବଧାରକୁ ସାମାନ୍ୟ ପରିବର୍ତ୍ତିତ କରି ଷଟ୍‌କୋଣାକୃତି ଯନ୍ତ୍ର ମଧ୍ୟରେ ରାଧକୃଷ୍ଣ ( ପ୍ରକୃତି ପୁରୁଷ ) ଙ୍କୁ ଅବସ୍ଥାନ କରାଇଛନ୍ତି । ଅନ୍ୟ ଏକ ସ୍ଥାନରେ କୃଷ୍ଣଙ୍କୁ ସ୍ୱୟଂଯନ୍ତ୍ର ସ୍ୱରୂପ ଏକ ମନ୍ତ୍ର ସ୍ୱାଧ୍ୟ ବଳରେ ତାଙ୍କୁହିଁ ଆୟତ୍ତ କରାଯାଇ ପାରିବ ବୋଲି ବର୍ଣ୍ଣନା କରିଛନ୍ତି । ଏହି ବର୍ଣ୍ଣନା ପଦ୍ମପୁରାଣର ଅନୁରୂପ ।

ଶୈବାଗମର ପଞ୍ଚଦଶ ଅଧ୍ୟାୟରେ ରାଧାକୃଷ୍ଣଙ୍କ ବିବାହ ବର୍ଣ୍ଣିତ ହୋଇଛି । ବ୍ରହ୍ମବୈବର୍ତ୍ତ ପୁରାଣ, ଜୟଦେବଙ୍କ ଗୀତଗୋବିନ୍ଦ ଓ ଜୀବଗୋସ୍ୱାମୀଙ୍କ ଗୋପାଳ ଚମ୍ପୂରେ ରାଧାକୃଷ୍ଣଙ୍କ ବିବାହବର୍ଣ୍ଣିତ ହୋଇଛି । ଜୀବ ଗୋସ୍ୱାମୀ ଜଗନ୍ନାଥଙ୍କ ପରବର୍ତ୍ତୀ ହୋଇଥିବାରୁ ସେ ମୁଖ୍ୟତଃ ବ୍ରହ୍ମବୈବର୍ତ୍ତ ପୁରାଣର ବିଷୟବସ୍ତୁକୁ ପରିବର୍ତ୍ତିତ ରୂପ ପ୍ରଦାନ କରି ସ୍ୱୀୟ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ପରବର୍ତ୍ତୀ ସାହିତ୍ୟରେ ରାଧାଙ୍କୁ ଅନେକତ୍ର ପରକୀୟା ନାୟିକା ହିସାବରେ ଚିତ୍ରଣ କରାଯାଇଛି । ଏଥିପାଇଁ ସହଜିଆ ବୈଷ୍ଣବ ସାଧକମାନଙ୍କୁ ଅନେକାଂଶରେ ଦାୟୀ କରାଯାଇଥାଏ । ରାଧାକୃଷ୍ଣଙ୍କ ମଧ୍ୟରେ ଏଭଳି ଏକ ନିନ୍ଦିତ ସମ୍ପର୍କର ଉଚ୍ଛେଦ ସାଧନ କରି ତାଙ୍କଠାରେ ଆଧ୍ୟାତ୍ମିକତାର ଆରୋପ କରିବା ପାଇଁ ପଞ୍ଚସଖା ଓ ସମସାମୟିକ କେତେକ ସାଧକ ଚେଷ୍ଟା କରିଥିଲେ । ଗୋପୀଜନ ବଲ୍ଲଭ ଦାସଙ୍କ ରସିକ ମଙ୍ଗଳ କାବ୍ୟରେ ବର୍ଣ୍ଣିତ ଅଛି ରସିକାନନ୍ଦ ଗୋସ୍ୱାମୀ ରାଧା ମୂର୍ତ୍ତି ନିର୍ମାଣ କରାଇ ତାଙ୍କୁ ନିଜର ଇଷ୍ଟଦେବ

ଗୋପୀଜନ ବଲ୍ଲଭଙ୍କ ସହ ବିବାହ କରାଇଥିଲେ । ପଦ୍ମ ଶ୍ରୀ ପରମା ନନ୍ଦ ଆଚାର୍ଯ୍ୟ ରସିକାନନ୍ଦଙ୍କ ଜନ୍ମ ସମ୍ପର୍କରେ ବିଚାରକୁ ନେଇ ରାଧା ମୂର୍ତ୍ତି ନିର୍ମାଣ ଓ ବିବାହ କାର୍ଯ୍ୟକୁ ଖ୍ରୀ ୧୬୧୦ ଅବ୍ଦ ବୋଲି ସ୍ଥିର କରିଛନ୍ତି । ଏହି ସମୟକୁ ଜଗନ୍ନାଥ ଦାସଙ୍କ କାର୍ଯ୍ୟ ସାଧନାର କାଳ ବୋଲି ଓଡ଼ିଆ ସାହିତ୍ୟର ଐତିହାସିକମାନେ ମତ ଦେଇଥାନ୍ତି । ଜଗନ୍ନାଥ ଦାସଙ୍କର ସାଧନ ପଦ୍ଧତିକୁ ବିଚାର କରି ସ୍ୱର୍ଗତ ଆର୍ତ୍ତ-ବଲ୍ଲଭ ମହାନ୍ତି ତାଙ୍କୁ ନିମ୍ବାର୍କ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ କରିଛନ୍ତି । ନିମ୍ବାର୍କଙ୍କର ଦଶଶ୍ଳୋକୀର ୫ମ ଶ୍ଳୋକରେ 'ଅଙ୍ଗେ ତୁବାମେ ବୃଷ ଭାନୁଜା ମୁଦା'—ବୋଲି କହି ରାଧାଙ୍କୁ କୃଷ୍ଣଙ୍କର ଶକ୍ତି ଭାବରେ ବର୍ଣ୍ଣନା କରିଛନ୍ତି । ଏହି ସବୁ ପରମ୍ପରାରେ ପରିପୁଷ୍ଟ ଜଗନ୍ନାଥ ଦାସ ଧ୍ରୁବ ଖେଳଆଳରେ ରାଧା ଓ କୃଷ୍ଣଙ୍କର ବୈଦିକ ରୀତିରେ ବିବାହ ସଂଘଟିତ କରାଇଛନ୍ତି । ପୁରୋଧାଭାବେ ନାରଦ ସମସ୍ତ ବୈବାହିକ କର୍ମ ସମ୍ପାଦନ କରି ଅଛନ୍ତି । କିନ୍ତୁ ଅରଣ୍ୟରେ ଏହି ବିବାହ ବିଷୟରେ ପିତା ବୃଷଭାନୁ ଅଜ୍ଞାତ ଥିବାରୁ ଚନ୍ଦ୍ରସେନ ସହିତ ବିବାହ ସ୍ଥିର କରିବାରୁ ରାଧା ମନସ୍ତାପରେ କହୁଛନ୍ତି—

"ଦେବାଧିଦେବ ବେଣୁଧାରୀ । ସେ ମୋର ପ୍ରାଣ ଅଧିକାରୀ ।
ହୋଇଲେ ବୃନ୍ଦାବନେ ବିଭା । ଆଉ ନୋହିବ ମୁହିଁ ବିଭା ।
ତାହା ନଜାଣି ମୋ ପିଅର । ଚନ୍ଦ୍ରସେନକୁ କଲା ବର ।
ଯେତେ ବିଚାର ସୁପ୍ରକାଶେ । କନ୍ୟାସ୍ନେ ସର୍ଜି ନିଜ ଅଂଶେ ।
ଗୋପ୍ୟ ହୋଇଲେ ଠାକୁରାଣୀ । ହୃଦେ ଭାବନ୍ତି ବେନୁପାଣି ॥

ବ୍ରହ୍ମ ବୈବର୍ତ୍ତ ପୁରାଣର ୨ୟ ଅଧ୍ୟାୟ ୪୪ ଶ୍ଳୋକରେ ଠିକ୍ ଅନୁରୂପ ବର୍ଣ୍ଣନା ପରିଲକ୍ଷିତ ହୁଏ ।—"ସ୍ୱୟଂ ରାଧାହରେଃ ହୋଡ଼େ ଛାୟା ରାୟାଣ ମନ୍ଦିରେଃ" କହି ଜଗନ୍ନାଥ ରାଧାଙ୍କୁ ଏକନିଷ୍ଠ

ସ୍ୱକୀୟା ନାୟିକାଭାବେ ଚିତ୍ରଣ କରିବାକୁ ଯାଇ ଅନ୍ୟ ଗୋପୀମାନଙ୍କଠାରୁ ତାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଅଛନ୍ତି ଅଷ୍ଟାଦଶ ଅଧ୍ୟାୟରେ ଜନୈକା ଗୋପୀ କହିଛି—"ବ୍ରଜରେ ଅନେକ ଗୋପୀ ଅଛନ୍ତି । କିନ୍ତୁ କେହି କୃଷ୍ଣଙ୍କୁ ନିଜର ପତିବୋଲି ସର୍ବସମ୍ମୁଖରେ କହିନାହାନ୍ତି, କେବଳ ରାଧା ସଖୀଙ୍କ ନିକଟରେ ଏହା କହିଥାଏ । ଏହି ଅଧ୍ୟାୟରେ ରାଧା ଗୋପୀମାନଙ୍କ ନିକଟରେ ନିଜର ଗାଢ଼କୃଷ୍ଣ ପ୍ରେମ ବିଷୟରେ ସୂଚନା ଦେଇଛନ୍ତି ।

"ସଂକୋଚ କଲି ମୁହିଁ ଦୂର । କୃଷ୍ଣ ମୋ ଜୀବନ ଠାକୁର ।
ନିନ୍ଦା କରନ୍ତୁ ପ୍ରିୟଜନ । ବୋଲନ୍ତୁ ଭର୍ତ୍ସନା ବଚନ ।
ଯେବେ ଗଞ୍ଜିବେ ଗୁରୁଜନେ । କଅଣ ନେଜବେ ଅଜ୍ଞାନେ ।
ତହିଁକି ନାହିଁ ମୋହ ଡର । ପ୍ରାଣ ପୁରୁଷ ବେଣୁଧର ।
ହିବାଦ ଶୁଭିବ ଜଗତେ । ରାଧାଜୀବନ ନନ୍ଦ ସୁତେ ।
ବଂଶରେ ଲାଗିବ କଳଙ୍କ । ତଥାପି ହୃଦୟ ନିଶଙ୍କ ।
ମୋମନ ରହୁ କୃଷ୍ଣ ପାଦେ । କି କାର୍ଯ୍ୟ ଅଛି ଲୋକବାଦେ"

ଏଠାରେ ରାଧା ଜଣେ ଆଦର୍ଶ ଉଜ୍ଜ୍ୱଳୀୟା ସ୍ୱକୀୟା ପ୍ରେମିକା ରାଧାଙ୍କୁ କୃଷ୍ଣଙ୍କର ପତ୍ନୀ ରୂପେ ଚିତ୍ରଣ କରିବାରେ କବି ଜଗନ୍ନାଥ ଦାସ ବ୍ରହ୍ମବୈବର୍ତ୍ତ ପୁରାଣ, ଗଜପତି ପୁରୁଷୋତ୍ତମ ଦେବ ଓ ରସିକା ନନ୍ଦ ଗୋସ୍ୱାମୀଙ୍କ ଦ୍ୱାରା ଯେତେ ପରିମାଣରେ ପ୍ରଭାବିତ ହୋଇ ନାହାନ୍ତି । ତାଠାରୁ ଅଧିକ ପରିମାଣରେ ସହଜିଆ ବୈଷ୍ଣବ ମାନଙ୍କ ପ୍ରତି ପରିପନ୍ଥି ଶୀଳ ହୋଇ ରାଧାଙ୍କୁ ପରକୀୟା ନାରୀଙ୍କ ସ୍ତରରୁ ଯୋଗପିଣ୍ଡିତା ସ୍ୱକୀୟା ନାରୀ ସ୍ତରକୁ ଘେନି ଆସିଛନ୍ତି । ବିଦ୍ୟାପତି ଓ ଚଣ୍ଡିଦାସ ପ୍ରଭୃତିଙ୍କ ରଚନା ଏବଂ ବଙ୍ଗ ଓଡ଼ିଶାରେ ସହଜିଆ ବୌଦ୍ଧମାନଙ୍କର ପ୍ରଭାବ ଓଡ଼ିଶାର ଗଣଜୀବନକୁ ବିପର୍ଯ୍ୟସ୍ତ

କରିପକାଇ ଥିଲା । ସାରଳାଦାସଙ୍କ ରଚନାରେ ସହଜ ସୁନ୍ଦର ଉପାଖ୍ୟାନରେ ଏହାର ସ୍ପଷ୍ଟ ପରିଚୟ ମିଳିଥାଏ । ପଞ୍ଚସଖା ସାଧକମାନେ ଥିଲେ ଓଡ଼ିଶାର ଗଣକବି । ଓଡ଼ିଶାର ଗଣଜୀବନରୁ ଧାରାକୁ ଆଦର୍ଶମଣ୍ଡିତ କରିବାପାଇଁ ସେମାନେ ସତତ ଚେଷ୍ଟିତ ଥିଲେ । ତେଣୁ ଶୈବାଗମରେ ରାଧାକୃଷ୍ଣ ଓଡ଼ିଶାର ଆଦର୍ଶ ଲୋକ ଚରିତ୍ରରୂପେ ବର୍ଣ୍ଣିତ ହୋଇଛନ୍ତି ।

(ଙ)**ଗୋପୀ ତତ୍ତ୍ୱ** ଗୋପୀତତ୍ତ୍ୱ ଶୈବାଗମର ଏକ ଉଲ୍ଲେଖ ଯୋଗ୍ୟ ବିଷୟ । ପଦ୍ମପୁରାଣ, ଶ୍ରୀମଦ୍‌ଭାଗବତ ଓ ପୁରୁଷୋତ୍ତମତାପିନୀ ପ୍ରଭୃତି ଗ୍ରନ୍ଥରେ ଗୋପୀମାନଙ୍କର ଭୂୟସୀ ପ୍ରଶଂସା କରାଯାଇଛି । ଆଲୋଚ୍ୟ ଶୈବାଗମ ଗ୍ରନ୍ଥରେ ଗୋପୀମାନଙ୍କର ଜନ୍ମ ପ୍ରସଙ୍ଗରେ ଉଲ୍ଲିଖିତ ସଂସ୍କୃତ ଗ୍ରନ୍ଥମାନଙ୍କରୁ ଉପାଦାନ ଗୃହୀତ ହୋଇଛି । କବିଜଗନ୍ନାଥଦାସ ଗୋପୀମାନଙ୍କର ଜନ୍ମ ପ୍ରସଙ୍ଗରେ ଶୈବାଗମ-ରେ ଦୁଇଟି ମତ ଉପସ୍ଥାପନ କରିଛନ୍ତି । ପ୍ରଥମଟି ହେଲା ଉଗ୍ରତପା ସୁତପା ପ୍ରଭୃତି ଯୋଗୀ ଋଷି ମାନେ କଠୋର ତପସ୍ୟା କରି ଗୋପୀ ରୂପେ ଜନ୍ମଲାଭ କରିଛନ୍ତି । ପଞ୍ଚମରୁ ଏକାଦଶ ଅଧ୍ୟାୟ ପର୍ଯ୍ୟନ୍ତ ଦୀର୍ଘ ସାତ ଗୋଟି ଅଧ୍ୟାୟରେ ଏହିତତ୍ତ୍ୱ ବର୍ଣ୍ଣିତ ହୋଇଛି । କେଉଁ ଋଷି କେଉଁ ଗୋପୀରେ ପରିଣତ ହୋଇଥିଲେ ତାର ଏକ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

| ଅଧ୍ୟାୟ | ପୂର୍ବଜନ୍ମରଋଷି | ଗୋପୀ | କୃଷ୍ଣ ସେବା |
|---|---|---|---|
| | | | ନିମିତ୍ତ କାରଣ |
| | | | ଦାସ୍ୟଭାବ ଉପାସ୍ୟନା |
| ପଞ୍ଚମ | ସୁପର୍ଣ୍ଣ ତପା | ସୁନନ୍ଦର କନ୍ୟା ସୁନନ୍ଦା | ସାଣା |

| | | | |
|---|---|---|---|
| ଅଧ୍ୟାୟ | ପୂର୍ବ ଜନ୍ମର ଋଷି | ଗୋପୀ | କୃଷ୍ଣ ସେବା-ନମିତ୍ତ ନାରଦ ପ୍ରଦତ୍ତ ଉପାୟନ |
| ପଞ୍ଚମ | ସତ୍ୟ ତପା | ସୁଭଦ୍ରର କନ୍ୟା ସୁଭଦ୍ରା | ବାଲବ୍ୟଜନ |
| ପଞ୍ଚମ | ଦୁର୍ବାର୍ଦ୍ଧନ | ସାରଙ୍ଗ କନ୍ୟା ରଙ୍ଗାବଳୀ | ଚନ୍ଦ୍ରପଟ୍ଟ |
| ଷଷ୍ଠ | ଜାବାଳ | ପ୍ରଚଣ୍ଡ କନ୍ୟା ଚନ୍ଦ୍ରଗନ୍ଧା | ସ୍ୱର୍ଣ୍ଣପଙ୍କଜ ମାଳା |
| ସପ୍ତମ | ଦକ୍ଷ ମୁନିଙ୍କ ଶତେକ ପୁତ୍ର | ଏକଶତ ଗୋପୀ (ପ୍ରତ୍ୟେକଙ୍କ ନାମ ନାହିଁ) | × |
| ଅଷ୍ଟମ | ସୁବର୍ଣ୍ଣ ଓ ଶୁଚିଶ୍ରବା | ନର୍ମଳ ପ୍ରଭା ଓ କାନ୍ତମାଳା | × |
| ଅଷ୍ଟମ | ସୁଧର୍ମ ଚନ୍ଦ୍ର, ସତ୍ୟସନ୍ଧ ମଙ୍ଗଳଓପାର୍ଦ୍ଧକନ୍ଧ | ଧର୍ମ ଚନ୍ଦ୍ରକା ସତ୍ୟବନ୍ତୀ ମଙ୍ଗଳପ୍ରଭା ଓ ଢିବ୍ୟକାନ୍ତି | × |
| ନବମ | ଶୁକମୁନି | ଉପନନ୍ଦ କନ୍ୟା ସୁମନ୍ତି | × |
| ନବମ | ଶ୍ୱେତ କେତୁ ଋଷିଙ୍କ ପୁତ୍ର | ବଳସେନ କନ୍ୟା ବିଳାସ ମୋହିନୀ | ଭ୍ରମର |
| ଦଶମ | ଚନ୍ଦ୍ରଧ୍ୱଜ ରାଜାପୁତ୍ର ଚିତ୍ରଧ୍ୱଜ | ବୀର ଘୋଷ କନ୍ୟା ଚିତ୍ରକଳା | ସମ୍ମୋହନୀ ବୀଣା |
| ଏକାଦଶ | ପୁଣ୍ୟଶ୍ରବାଋଷିଙ୍କ ପୁତ୍ର | ସୁକଣ୍ଠ କନ୍ୟା ମଧୁରକଣ୍ଠି | × |

ଉଲ୍ଲିଖିତ ଗୋପୀମାନଙ୍କର ପୂର୍ଣ୍ଣାଙ୍ଗ ପରିଚୟ ସହିତ ଏକାଦଶ ଅଧ୍ୟାୟର ଶେଷରେ କେତେକ ଗୋପୀମାନଙ୍କର ନାମ ମାତ୍ର ଦିଆଯାଇଛି । ସେମାନେ ହେଲେ —

—ମାଧବୀ, ମାଳତୀ, ଲବଙ୍ଗ, ଅଶୋକ ମାଳିକା, ପୃଥ୍ଵିଳା, ରଙ୍ଗିଣୀ, ସେବନ୍ତୀ, ମୃଦୁଳା, ବୃନ୍ଦା, ସ୍ୱର୍ଣ୍ଣାବତୀ, କୁନ୍ଦା, ପାଟଳୀ, ଚନ୍ଦ୍ରବିମ୍ବା, କୁମୁଦା, ଶତପତ୍ରିକା ଇତ୍ୟାଦି ।

ଗୋପୀମାନଙ୍କର ଜନ୍ମ ସମ୍ପର୍କୀୟ ଦ୍ୱିତୀୟ ମତଟି ହେଲା- ଷୋଡ଼ଶ ଅଧ୍ୟାୟରେ ରାଧା-କୃଷ୍ଣଙ୍କର ଉକ୍ତି-ପ୍ରତ୍ୟୁକ୍ତି ମାଧ୍ୟମରେ ଶ୍ରୀକୃଷ୍ଣ ରାଧାଙ୍କୁ କହିଛନ୍ତି —ପୂର୍ବେ ମୁଁ ରାମାବତାର ଗ୍ରହଣ କରି- ଥିଲି । ତୁମେ ସେତେବେଳେ ସୀତା ରୂପରେ ମୋର ଲୀଳା ସଙ୍ଗିନୀ ଥିଲ । ମୋ ରୂପରେ ମୁଗ୍‌ଧହୋଇ ଦଣ୍ଡକାରଣ୍ୟର ତପସ୍ୱୀମାନେ ଚିନ୍ତାକଲେ —"ଯୁବତୀ ହୋଇ ଥାନ୍ତୁ ଯେବେ । ସମ୍ଭୋଗ କରନ୍ତୁନା ତେବେ । "—ଋଷିମାନଙ୍କର ଏହିଭଳି ମନୋଭାବ ଜାଣିପାରି ମୁଁ ତାଙ୍କୁ ବର ଦେଇଥିଲି । ପରଜନ୍ମରେ ମୁଁ କୃଷ୍ଣରୂପରେ ଜନ୍ମ- ହେବି । ଆଉ ତୁମେମାନେ ଗୋପୀ ହୋଇ ମୋ ସହିତ ବୃନ୍ଦାବନରେ ବିହାର କରିବ । ଏବେ ସେହି ଋଷିମାନେ ଗୋପକାମିନୀ ରୂପରେ ଜନ୍ମଲାଭ କରିଛନ୍ତି ।" ଏହିଭଳି ଗୋପୀମାନଙ୍କ ଜନ୍ମ ବିଷୟରେ ଦୁଇଟି ଉତ୍ସ ଶୈବାଗମରୁ ମିଳିଥାଏ । ପୁନଶ୍ଚ ପୁରାଣ- ମାନଙ୍କରେ ଗୋପୀମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ସେମାନେ ହେଲେ ସାଧନସିଦ୍ଧା ଓ ନିତ୍ୟସିଦ୍ଧା । ପୂର୍ବେ ଯେଉଁ ଗୋପୀ ମାନଙ୍କ ବିଷୟ ବର୍ଣ୍ଣିତ ହେଲା ସେମାନେ ହେଲେ ସାଧନସିଦ୍ଧା । ତପସ୍ୟାକରି ଏମାନେ ଗୋପୀତ୍ୱପ୍ରାପ୍ତ ହୋଇଛନ୍ତି । ଏହାବ୍ୟତୀତ କୃଷ୍ଣଙ୍କର ରାଧା, ଚନ୍ଦ୍ରାବଳୀ, ବିଶାଖା, ଶ୍ୟାମା ଓ ନିତ୍ୟା ପ୍ରଭୃତି

ଅନେକ ନିତ୍ୟସିଦ୍ଧା ଗୋପୀଙ୍କର ବର୍ଣ୍ଣନା ଶୈବାଗମରେ ରହିଛି । ନିତ୍ୟଧାମରେ ସହସ୍ର ଦଳ କମଳ ଉପରେ କ୍ରମାନ୍ୱୟରେ ସହସ୍ର ଦଳ, ଶତଦଳ, ଚତୁଃଷଷ୍ଟିଦଳ, ଦ୍ୱାତ୍ରିଂଶଦଳ, ଷୋଡ଼ଶଦଳ ଓ ଅଷ୍ଟଦଳ ମଧ୍ୟରେ ଷଟ୍‌କୋଣାକୃତି ପଲଙ୍କ ରହିଛି । ଏହି ଷଟ୍‌କୋଣାକୃତି ଯନ୍ତ୍ରରେ ପ୍ରେମଶଯ୍ୟା ଉପରେ ନିତ୍ୟାକୃଷ୍ଣଙ୍କ ସହ ନିତ୍ୟ ରାଧାଲୀଳା କରୁଛନ୍ତି । ନିତ୍ୟ ଗୋପୀମାନେ ଉପର ବର୍ଣ୍ଣିତ ପଦ୍ମଦଳମାନଙ୍କରେ ରହି ଏହି ନିତ୍ୟଲୀଳା ଦର୍ଶନ କରିଥାନ୍ତି । ପଦ୍ମ ପୁରାଣରେ ଏହାର ବିସ୍ତୃତ ବର୍ଣ୍ଣନା ଅଛି ।

"ରାଧୟା ସହ ଗୋବିନ୍ଦଂ ସ୍ୱର୍ଣ୍ଣ ସିଂହାସନେ ସ୍ଥିତମ୍ ।

× × ×

ତଦ୍‌ବାହ୍ୟେ ଯୋଗପୀଠେ ଚ ସ୍ୱର୍ଣ୍ଣ ସିଂହାସନାବୃତେ ।

× × ×

ସମ୍ମୁଖେ ଲଳିତା ଦେବୀ ଶ୍ୟାମଳା ବାୟୁ କୋଣକେ,
ଉତ୍ତରେ ଶ୍ରୀମତୀ ଧନ୍ୟା ଐଶାନ୍ୟାଂ ଶ୍ରୀହରିପ୍ରିୟା,
ବିଶାଖାଚ ତଥାପୂର୍ବେ ଶୈବ୍ୟାଗ୍ନେୟୀ ତତଃ ପରମ୍ ।
ପଦ୍ମାଚ ଦକ୍ଷିଣେ ପଶ୍ଚାନ୍ନୈଋତେ କ୍ରମଶଃ ସ୍ଥିତା
ଯୋଗପୀଠେ କେଶବସ୍ୟୈ ଚନ୍ଦ୍ରାବଳୀ ପ୍ରିୟା ।
ଅଷ୍ଟୌ ପ୍ରକୃତୟଃ ପୁଣ୍ୟାଃ ପ୍ରଧାନାଃ କୃଷ୍ଣବଲ୍ଲଭାଃ ॥"

ଶୈବାଗମରେ ମଧ୍ୟ ଅନୁରୂପ ଭାବରେ ଶ୍ରୀ ରାଧାଙ୍କ ନିତ୍ୟ ସଖୀମାନଙ୍କର ବର୍ଣ୍ଣନାରେ ଏହି ମାନଙ୍କର ନାମ ଉଲ୍ଲେଖ ଅଛି ।

ଗୋପୀମାନେ ଥିଲେ ରସିକ ରାଜ କୃଷ୍ଣଙ୍କର ଏକାନ୍ତ ପ୍ରିୟ । ସେମାନେ କୃଷ୍ଣଙ୍କୁ ପରମ ବ୍ରହ୍ମ ଭଗବାନ ବୋଲି ଜାଣିଥିଲେ । କୃଷ୍ଣଙ୍କୁ ତେଣୁ ସେ ନିଜର ଇଷ୍ଟ ଅଧିଷ୍ଠାତ୍ର ସ୍ୱଭାବରେ ଭକ୍ତି କରୁ-

ଥିଲେ । ନିଜେ ଶ୍ରୀକୃଷ୍ଣ ମଧ୍ୟ ଗୋପୀ ପ୍ରେମର ସର୍ବୋକୃଷ୍ଟତା ସ୍ୱୀକାର କରି ଅଛନ୍ତି । ଚତୁର୍ଦ୍ଦଶ ଅଧ୍ୟାୟରେ ନାରଦ ଗୋପୀ-ମାନଙ୍କୁ ଦର୍ଶନ କରି ଆସି କୃଷ୍ଣଙ୍କୁ ସେମାନଙ୍କର ଅନନ୍ୟ କୃଷ୍ଣ-ଭକ୍ତି ବିଷୟରେ ପ୍ରଶ୍ନ କରିଛନ୍ତି । "ହେ ପ୍ରଭୁ ! ଗୋପୀମାନଙ୍କ-ଠାରେ ତୋର ଏତେ କରୁଣା କାହିଁକି ?" କୃଷ୍ଣ ନାରଦଙ୍କ ପ୍ରଶ୍ନର ଉତ୍ତରରେ କହିଛନ୍ତି —"ଦେବତା ଋଷି, ଯୋଗୀ ପ୍ରଭୃତି ମୋର ଯେତେ ଭକ୍ତ ରହିଛନ୍ତି ସେମାନେ ମୋର ପ୍ରକୃତ ତତ୍ତ୍ୱକୁ ଜାଣିପାରି ନାହାନ୍ତି । ତପସ୍ୟା, ଯଜ୍ଞ, ଦାନ, ଧର୍ମ ଓ ବିଦ୍ୟାଧ୍ୟୟନ ଆଦି କୌଣସିଥିରେ ମୋର ଚିତ୍ତ ଆକୃଷ୍ଟ ହୁଏନା । କେବଳ ଗୋପୀ ପ୍ରେମରେ ମୁଁ ସଦା ଆପ୍ଲୁତ ଥାଏ । ବେଦ, ପୁରାଣ ଆଦିର ଶ୍ରବଣ ଅପେକ୍ଷା ଗୋପୀମାନଙ୍କର ଭର୍ତ୍ସନା ବଚନ ମୋର ପରମ ଆଦରଣୀୟ । ବ୍ରହ୍ମା, ଶିବ, ଇନ୍ଦ୍ର ଆଦି ଦେବତା ବୃନ୍ଦ ମୋର ସ୍ତବରେ ଆନନ୍ଦିତ ହୁଅନ୍ତି । କିନ୍ତୁ ମୁଁ ଗୋପୀମାନଙ୍କ ସ୍ତବରେ ସର୍ବଦା ଆନନ୍ଦିତ ଥାଏ । କାରଣ ମୋର ପାଇଁ ସେମାନେ କୁଳା-ଚାର, ଗୁରୁ ଗୌରବ, ମୋକ୍ଷ ଆଶା, ଓ ସ୍ୱର୍ଗ ସମ୍ପଦ ପ୍ରଭୃତିକୁ ପରିତ୍ୟାଗ କରିଛନ୍ତି ।" ତେଣୁ—

"ମୁଁ ଗୋପୀଜନ ପ୍ରେମପାଶେ । ବନ୍ଧନ ହୋଇ ସ୍ତବ ବଶେ ।
ତାହାଙ୍କ ଅନୁଗୃହ ଚିତ୍ତେ । ବାଞ୍ଛା କରଇ ଅବିରତେ ।
ସେ ଗୋପୀ ମୋହୋର ଜୀବନ । ଅଖିଳ ସମ୍ପଦ ନିଧାନ ।
ଗୋପୀଜନଙ୍କ ବିନୁ ଆନ । ଭଗତ ନାହିଁ ତ୍ରିଭୁବନ ।
ଯେଗୋପୀସ୍ତବେମୋତେଭଜେ । ସେ ମୋରଆତ୍ମାଅଭିରଞ୍ଜେ ।"

ଶୈବାଗମରେ ପ୍ରତିପାଦ୍ୟ ଗୋପୀତତ୍ତ୍ୱ ବାସ୍ତବିକ୍ ବଡ଼ ଗୁରୁତ୍ୱପୂର୍ଣ୍ଣ ।

(ଚ) ରାସତତ୍ତ୍ୱ—ଶୈବାଗମରେ ବର୍ଣ୍ଣିତ ରାସତତ୍ତ୍ୱର ଏକ ସ୍ୱତନ୍ତ୍ର ମୂଲ୍ୟବୋଧ ରହିଛି । ପଞ୍ଚସଖା ମାନେ ଏକାନ୍ତ ରାସ ପ୍ରିୟ ଥିଲେ । ରାସ ମଣ୍ଡଳୀ ଗଠନ କରି ସମଗ୍ର ଓଡ଼ିଶା ଦେଶରେ ସେମାନେ ରାସତତ୍ତ୍ୱକୁ ପ୍ରଚାର କରିଥିଲେ । ଜଗନ୍ନାଥ ଦାସଙ୍କୁ ରାସ ମଣ୍ଡଳୀର ଗୁରୁବୋଲି ସ୍ୱୀକାର କରାଯାଉଥିବା କଥା ଅଚ୍ୟୁତା ନନ୍ଦଙ୍କ ବରଣ ଗୀତରୁ ମିଳିଥାଏ । ପଞ୍ଚସଖା ସାଧକମାନେ ଅନେକ ରାସଗ୍ରନ୍ଥ ରଚନା କରିଯାଇଛନ୍ତି । ସ୍ୱତନ୍ତ୍ର ଭାବରେ ରାସ ଗ୍ରନ୍ଥକୁ ବାଦ୍ ଦେଲେ ଜଗନ୍ନାଥ ଦାସଙ୍କର ଷୋଳ ଚଉପଦୀ, ଭାଗବତ, ନିତ୍ୟଗୁପ୍ତଚୂଡ଼ାମଣି ରସ କଳ୍ପ ଚନ୍ଦ୍ରିକା ପ୍ରଭୃତି ଗ୍ରନ୍ଥରେ ରାସର ବର୍ଣ୍ଣନା ରହିଅଛି । ଅନୁରୂପ ଭାବରେ ଶୈବାଗମରେ ମଧ୍ୟ ରାସ ତତ୍ତ୍ୱ ଆଲୋଚିତ ହୋଇଅଛି ।

ରାସ ପରମ୍ପରା ଶ୍ରୀମଦ୍ଭାଗବତ, ହରିବଂଶ, ବ୍ରହ୍ମ ପୁରାଣ, ବ୍ରହ୍ମ-ବୈବର୍ତ୍ତ ପୁରାଣ, ପଦ୍ମପୁରାଣ ପ୍ରଭୃତି ପୁରାଣ ଗ୍ରନ୍ଥ ଓ ଆନନ୍ଦ ବର୍ଦ୍ଧନଙ୍କ ଧ୍ୱନ୍ୟାଲୋକ, ଜୟଦେବଙ୍କ ଗୀତ ଗୋବିନ୍ଦ ବିଲ୍ୱମଙ୍ଗଳ-ଙ୍କର 'ଶ୍ରୀକୃଷ୍ଣ କର୍ଣ୍ଣାମୃତ ତଥା ଚଣ୍ଡୀଦାସ ଓ ବିଦ୍ୟା ପତି ପ୍ରଭୃତି ସହଜିଆ ବୈଷ୍ଣବକବିମାନଙ୍କର ରଚନାରେ ପରିଦୃଷ୍ଟ ହୁଏ । ସଂସ୍କୃତ ଗ୍ରନ୍ଥଗୁଡ଼ିକୁ ଲକ୍ଷ କଲେ ଦେଖାଯାଏ ରାସଲୀଳାର ସମୟ ସାଧାରଣତଃ ଦ୍ୱିବିଧ । ବ୍ରହ୍ମବୈବର୍ତ୍ତ ପୁରାଣ ଓ ଗୀତ ଗୋବିନ୍ଦରେ ବସନ୍ତରାସ ଏବଂ ଶ୍ରୀମଦ୍ଭାଗବତର ପରମ୍ପରାନୁସାରେ ଅନ୍ୟ ଗ୍ରନ୍ଥ ମାନଙ୍କରେ ଶରତରାସ ବର୍ଣ୍ଣିତ ହୋଇଛି । ଏହାଛଡ଼ା କେତେକ ସ୍ଥାନରେ ନିତ୍ୟ ରାସର ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳିଥାଏ ।

ପଞ୍ଚ ସଖାଙ୍କ ରଚିତରାସ ସମ୍ପର୍କୀୟ ରଚନାର କଥାବସ୍ତୁ ଓ ତତ୍ତ୍ୱ ଦୃଷ୍ଟିରୁ ଏ ଗୁଡ଼ିକୁ ଚାରି ଭାଗରେ ବିଭକ୍ତ କରାଯାଇଥାଏ ।

ଯଥା-୧ ବୃନ୍ଦାବନରେ ରାସଲୀଳା, ୨-ନୀଳାଚଳରେ ରାସଲୀଳା, ୩-ଶରୀର ମଧ୍ୟରେ ରାସଲୀଳା ୪-ଶୂନ୍ୟରେ ରାସଲୀଳା । ଆଲୋଚ୍ୟ ଗ୍ରନ୍ଥର ରାସଲୀଳା ପ୍ରଥମ ଶ୍ରେଣୀର । ଶାପଗ୍ରସ୍ତ ପରୀକ୍ଷିତଙ୍କୁ ମୁକ୍ତି ପ୍ରଦାନ ଲାଗି ଶୁକ ଶ୍ରୀକୃଷ୍ଣଙ୍କ ରାସଲୀଳା ଶ୍ରବଣ କରାଇଛନ୍ତି ।

ଶ୍ରୀମଦ୍ ଭାଗବତରେ ବର୍ଣ୍ଣିତ ରାସଲୀଳା ମାତ୍ର ପାଞ୍ଚଗୋଟି ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବାରୁ ତାହାର ନାମ ରାସ ପଞ୍ଚାଧ୍ୟାୟୀ' । ବ୍ୟାସଙ୍କର ମୂଳଗ୍ରନ୍ଥ ଓ ଜଗନ୍ନାଥଦାସଙ୍କ ଅନୂଦିତ ଭାଗବତରେ ମଧ୍ୟ ଏହି ପରମ୍ପରା ସୁରକ୍ଷିତ ରହିଛି । 'ଶୈବାଗମ'ର କବି ରାସକୁ ପଞ୍ଚାଧ୍ୟାୟୀ ପରିବର୍ତ୍ତେ 'ନବାଧ୍ୟାୟୀ'ରେ ପରିଣତ କରିଛନ୍ତି । ଯଦି ଓ ବିଷୟବସ୍ତୁ ଦୃଷ୍ଟିରୁ ଏଥିରେ କିଛି ନୂତନତ୍ୱ ନାହିଁ; ତଥାପି ସମସ୍ତ ରାସତତ୍ତ୍ୱର ବିଶଦ୍ ବ୍ୟାଖ୍ୟା ଏଥିରେ କରାହୋଇଛି । ଏକ ବିଂଶ ଅଧ୍ୟାୟରେ କୃଷ୍ଣ ବୃନ୍ଦାବନରେ ବିଜୟ କରିଛନ୍ତି । ଦ୍ୱାବିଂଶ ଅଧ୍ୟାୟଠାରୁ ତ୍ରିଂଶ ଅଧ୍ୟାୟର ଶେଷ ପର୍ଯ୍ୟନ୍ତ ରାସଲୀଳା ବର୍ଣ୍ଣିତ ହୋଇଛି । ନିମ୍ନରେ ତାହାର ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହେଲା ।

(୧) **ଦ୍ୱାବିଂଶ ଅଧ୍ୟାୟ** –ଶ୍ରୀକୃଷ୍ଣଙ୍କର ବଂଶୀ ସ୍ୱନ, ଗୋପୀମାନଙ୍କର ଅଭିସାର ବୃନ୍ଦାବନକୁ ଆସି ନ ପାରି ରସିକା, ଅମୀୟ ଲହରୀ, ନିର୍ମାଣ ଲତା ଓ ସୁକୁମାରୀ ନାମ୍ନୀ ଚାରିଜଣ ଗୋପୀଙ୍କର ଗୃହ ମଧ୍ୟରେ କୃଷ୍ଣ ଦର୍ଶନ କରି ମୋକ୍ଷଗତି ।

(୨) **ତ୍ରୟୋବିଂଶ ଅଧ୍ୟାୟ**—କୃଷ୍ଣ ଓ ଗୋପୀମାନଙ୍କର ବାର୍ତ୍ତାଳାପ ।

(୩) **ଚତୁର୍ବିଂଶ ଅଧ୍ୟାୟ** – ଗୋପୀମାନଙ୍କର ନିଷ୍ଠାରେ ପ୍ରୀତ ହୋଇ କୃଷ୍ଣ ସେମାନଙ୍କୁ ରମଣ କରିଛନ୍ତି; କିନ୍ତୁ ଗର୍ବିତା ଗୋପୀ-

ମାନଙ୍କର ଗର୍ବ ଧ୍ୱଂସ କରିବା ପାଇଁ ଏହି ଅଧ୍ୟାୟ ଶେଷରେ କୃଷ୍ଣ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ।

(୪) **ପଞ୍ଚବିଂଶ ଅଧ୍ୟାୟ** —ଗୋପୀମାନଙ୍କର କୃଷ୍ଣାନ୍ୱେଷଣ ଓ ବନ ମଧ୍ୟରେ କୃଷ୍ଣଲୀଳା ।

(୫) **ଷଡ଼ବିଂଶ ଅଧ୍ୟାୟ**--ବୃନ୍ଦାବତୀ ସହିତ ଏକାନ୍ତରେ ପଦ୍ମ ଶଯ୍ୟାରେ କୃଷ୍ଣ ବିହାର କରିଛନ୍ତି ଓ ଅରଣ୍ୟରେ ଭ୍ରମଣ କରିବା-ବେଳେ ଗର୍ବିତା ବୃନ୍ଦାବତୀଙ୍କୁ କାନ୍ଧରେ ବସାଇ ନେବା ସମୟରେ ଭୂମିରେ ଫିଙ୍ଗ ଦେଇ ଅନ୍ତର୍ଦ୍ଧାନ ହୋଇଛନ୍ତି । ଗୋପୀମାନେ କୃଷ୍ଣଙ୍କୁ ଖୋଜି ଖୋଜି ବୃନ୍ଦାବତୀଙ୍କୁ ଆବିଷ୍କାର କରିଛନ୍ତି ।

(୬) **ସପ୍ତବିଂଶ ଅଧ୍ୟାୟ**—ଗୋପୀମାନଙ୍କର କୃଷ୍ଣ ସ୍ତୁତି ।

(୭) **ଅଷ୍ଟବିଂଶ ଅଧ୍ୟାୟ**--କୃଷ୍ଣଙ୍କର ଆବିର୍ଭାବ ଓ ଗୋପୀ-ମାନଙ୍କ ପ୍ରଦତ୍ତ ବସବାସନରେ ବସି ସେମାନଙ୍କ କୂଟ ପ୍ରଶ୍ନର ଉତ୍ତର ପ୍ରଦାନ ।

(୮) **ଊନତ୍ରିଂଶ ଅଧ୍ୟାୟ**—ମହାରାସ ଓ ରାସନୃତ୍ୟ ।

(୯) **ତ୍ରିଂଶ ଅଧ୍ୟାୟ**—ଜଳ କେଳି ଓ ଉପବନ ବିହାର ।

ଭାଗବତ ବର୍ଣ୍ଣିତ ରାସ ପଞ୍ଚାଧ୍ୟାୟୀରେ ଜଗନ୍ନାଥ ଦାସ ମୂଳ ଗ୍ରନ୍ଥକୁ ପ୍ରାୟ ଅପରିବର୍ତ୍ତିତ ରଖିଛନ୍ତି । ମୂଳଗ୍ରନ୍ଥକୁ ଆଖି ଆଗରେ ରଖି ତାର କଳେବର ମଧ୍ୟ ପୂର୍ବପରି ରହିଅଛି । କିନ୍ତୁ ଶୈବା-ଗମ ଯେହେତୁ ତାଙ୍କର ପରିଣତ ବୟସର ରଚନା; ତେଣୁ ଏଥିରେ ତାଙ୍କର ଅନେକ ମୌଳିକତ୍ୱ ପ୍ରସ୍ଫୁଟିତ ହୋଇଛି ।

ମୌଳିକତ୍ୱମାନ ହେଲା । (୧)—ମୂଳ ଗ୍ରନ୍ଥରେ ସ୍ୱର ଗୋପୀଙ୍କର ବାତୁଳତାଜନିତ ମୋକ୍ଷକୁ ଅନୂଦିତ ଭାଗବତରେ

ଜଗନ୍ନାଥ ଦାସ ପରିହାର କରିଛନ୍ତି । କିନ୍ତୁ ଏଥିରେ ସେମାନଙ୍କୁ ଗ୍ରହଗୋଟି ଭିନ୍ନ ନାମରେ ସଂଯୁକ୍ତ କରାଯାଇଛି । (୨) କୌଣସି ଗୋଟିଏ ଗୋପୀ ବଂଶୀ ସ୍ୱନରେ ଆକୃଷ୍ଟ ହୋଇ ବୃନ୍ଦାବନକୁ ଆସୁଥିବାବେଳେ ତାର ସ୍ୱାମୀ ତାକୁ ସ୍ୱଗୃହରେ ବନ୍ଧନ କରିଛି ଏବଂ ସେ ଗୋପୀ ବନ୍ଧନ ମଧ୍ୟରେ କୃଷ୍ଣଙ୍କ ଧ୍ୟାନ କରି ତାଙ୍କ ଦେହରେ ଲୀନ ହୋଇଥିବା ବିଷୟ ମୂଳଗ୍ରନ୍ଥ ଓ ଅନୂଦିତ ଭାଗବତରେ ଥିଲେ ମଧ୍ୟ ଆଲୋଚ୍ୟ ଶୈବାଗମରେ କବି ତାକୁ ପରିହାର କରିଛନ୍ତି । (୩) ରାସକ୍ରୀଡ଼ାରେ ଏଥିରେ ଶ୍ରୀରାଧାଙ୍କର ଅବତାରଣା କରାଯାଇଛି । (୪) ମୂଳଗ୍ରନ୍ଥ ଓ ଅନୂଦିତ ଭାଗବତରେ ବୃନ୍ଦାବତୀଙ୍କୁ କେବଳ କାନ୍ଧରେ ବସାଇବାର ଉପକ୍ରମ କରି କୃଷ୍ଣ ଭୂମିରେ ଫିଙ୍ଗି ଦେବାର ବର୍ଣ୍ଣନା ରହିଛି । କିନ୍ତୁ ଏଥିରେ କୃଷ୍ଣ ବୃନ୍ଦାବତୀଙ୍କୁ କାନ୍ଧରେ ବସାଇ ନେବାବେଳେ ବାଲୁକାସଂକୁଳ ଭୂମିରେ ପାଦବ ଯିବା ବିଷୟ ଗୋପୀମାନେ ଆବିଷ୍କାର କରିଛନ୍ତି । (୫) ମୂଳଗ୍ରନ୍ଥର ପାଞ୍ଚ ଅଧ୍ୟାୟକୁ ଏଥିରେ ନଅ ଅଧ୍ୟାୟରେ ବ୍ୟାଖ୍ୟା କରାଯାଇଛି ।

ରାସତତ୍ତ୍ୱର ଆଲୋଚନା ପର୍ଯ୍ୟାୟରେ କବି ସ୍ପଷ୍ଟ କରି ଦେଇଛନ୍ତି ଯେ – ଭଗବାନ ଶ୍ରୀକୃଷ୍ଣଙ୍କର ଚିଦାନନ୍ଦ ଘନ ଶରୀର ଦିବ୍ୟ ଅଟେ । ଏହା ନିତ୍ୟ ସନାତନ, ଶୁଦ୍ଧ ଓ ଭଗବତ୍ ସ୍ୱରୂପ ଅଟେ । ଏହିପରି ଗୋପୀମାନେ ଦିବ୍ୟ ଜଗତରେ ଭଗବାନଙ୍କର ସ୍ୱରୂପ ସମ୍ଭୂତା ଅନ୍ତରଙ୍ଗ ଶକ୍ତି ଅଟନ୍ତି । ଏମାନଙ୍କ ମଧ୍ୟରେ ସମ୍ପର୍କ ମଧ୍ୟ ଦିବ୍ୟ ଅଟେ । ରାସକ୍ରୀଡ଼ା ଅନୁଷ୍ଠିତ ହେବା ପୂର୍ବରୁ ଭଗବାନ କୃଷ୍ଣଙ୍କ ଦ୍ୱାରା ଯେଉଁ ସୁନ୍ଦର ପ୍ରାକୃତିକ ପରିବେଶ ସୃଷ୍ଟି ହୋଇଥିଲା ତାହା ମଧ୍ୟ ଏକାନ୍ତ ଅଲୌକିକ ଥିଲା । ଗୋପୀମାନେ ନିଜର ମନକୁ ଶ୍ରୀକୃଷ୍ଣଙ୍କ ମନ ସହିତ ମିଳେଇ ଦେଇଥିଲେ । ସେମାନଙ୍କ ପାଖରେ ତାଙ୍କର ନିଜର ମନ ନ ଥିଲା । ସେତେବେଳେ ପ୍ରେମ-

ଦାନକାଳ ଶ୍ରୀକୃଷ୍ଣ ବିହାର ନିମିତ୍ତ ନୂତନ ଦିବ୍ୟ ମନର ସୃଷ୍ଟି କରିଥିଲେ । ଯୋଗେଶ୍ୱର ଭଗବାନ ଶ୍ରୀକୃଷ୍ଣଙ୍କର ଯୋଗମାୟା ରାସଲୀଳା ନିମିତ୍ତ ଦିବ୍ୟ ସ୍ଥଳ, ଦିବ୍ୟ ସାମଗ୍ରୀ ଏବଂ ଦିବ୍ୟ ମନର ନିର୍ମାଣ କରିଥିଲେ । ଏହିପରି ଏକ ମନୋଜ୍ଞ ପରିବେଶରେ ଭଗବାନଙ୍କର ବଂଶୀ ବାଜି ଉଠିଲା । ଏ ସମୟକୁ ଗୋପୀମାନେ ସ୍ୱଗୃହରେ ଗୁରୁଜନାଦିଙ୍କ ସେବା ପ୍ରଭୃତି ଧର୍ମ କାର୍ଯ୍ୟରେ, ଗୋଦୋହନାଦି ଅର୍ଥ କାର୍ଯ୍ୟରେ, ସାଜ ଶୃଙ୍ଗାରାଦି କାମ ସାଧନାରେ ଅଥବା କେହି ପୂଜା ପାଠାଦି ମୋକ୍ଷ କର୍ମରେ ଲାଗି ପଡ଼ିଥିଲେ । ●ଶୀ ସ୍ୱନ ଶୁଣି ସେମାନେ ଉଲ୍ଲିଖିତ ଧର୍ମ, ଅର୍ଥ, କାମ, ମୋକ୍ଷ ସମସ୍ତ କାର୍ଯ୍ୟକୁ ପରିତ୍ୟାଗ କରି ସନ୍ନ୍ୟାସୀ ପରି ନିଶା ରାତିରେ ଅରଣ୍ୟ ମଧ୍ୟକୁ ଚାଲିଗଲେ । ବୈରାଗ୍ୟର ପୂର୍ଣ୍ଣତା ଏବଂ ପ୍ରେମର ପୂର୍ଣ୍ଣତା ଏକ କଥା ଅଟେ । ଗୋପୀଗଣ ବ୍ରଜ ଏବଂ ଶ୍ରୀକୃଷ୍ଣଙ୍କ ମଧ୍ୟରେ ମୂର୍ତ୍ତିମାନ୍ ବୈରାଗ୍ୟ ବା ମୂର୍ତ୍ତିମାନ୍ ପ୍ରେମ ଅଟନ୍ତି ।

ଗୋପୀମାନେ ବୃନ୍ଦାବନରେ କୃଷ୍ଣଙ୍କ ନିକଟରେ ଉପସ୍ଥିତ ହେଲେ । କୃଷ୍ଣ ଗୋପୀମାନଙ୍କର ମନୋଭାବ ପରୀକ୍ଷା କରିବାକୁ କହୁଛନ୍ତି—'ହେ ଗୋପୀଗଣ ! ବ୍ରଜରେ ତ କିଛି ବିପତ୍ତି ପଡ଼ିନାହିଁ, ଘୋର ରାତ୍ରିରେ ଏଠାକୁ ଆସିବାର କାରଣ କଣ ? ଗୃହସ୍ୱାମୀ ଖୋଜି ହେଉଥିବେ, ଏବେ ଏଠାରେ ରୁହନାହିଁ । ଯେବେ ମୋତେ ଦେଖିବାକୁ ଶ୍ରମ କରି ଆସିଲ, ତେବେ ମୋତେ ତ ଦେଖିଲ, ଏବେ ବାଳକ ଓ ବାଛୁରୀମାନଙ୍କ କଥା ମନେ ପକା । ଧର୍ମର ଅନୁକୂଳ ମୋକ୍ଷ ନିମିତ୍ତ ଉନ୍ମୁକ୍ତ ଦ୍ୱାର ନିଜର ସମ୍ବନ୍ଧିମାନଙ୍କର ସେବା ଛାଡ଼ି ବଣରେ ଏଭଳି ବୁଲିବା ସ୍ତ୍ରୀମାନଙ୍କର କର୍ତ୍ତବ୍ୟ ନୁହେଁ । ସ୍ତ୍ରୀକୁ ନିଜର ସ୍ୱାମୀଙ୍କର ସେବା କରିବାକୁ ପଡ଼ିଥାଏ । ଏହା ସନାତନ ଧର୍ମର ନିୟମ । ମୁଁ ପୁଣି ଜାଣେ, ତୁମେମାନେ ମୋତେ ପ୍ରେମକର । ପରନ୍ତୁ

ପ୍ରେମରେ ଶାସ୍ତ୍ରର ସନ୍ନିଧିର ଆବଶ୍ୟକତା ନାହିଁ । ଶ୍ରବଣ, ସ୍ମରଣ, ଦର୍ଶନ ଏବଂ ଧ୍ୟାନରେ ସାନ୍ନିଧ ଅପେକ୍ଷା ପ୍ରେମ ଅଧିକ ପ୍ରକଟିତ ହୁଏ । ଯାଅ, ସନାତନ ସଦାଗ୍ରର ପାଳନ କର ।

କୃଷ୍ଣଙ୍କର ଏହିଭଳି ନିଷ୍ଠୁର ବାଣୀ ଶ୍ରବଣକରି ଗୋପୀମାନେ ଦୁଃଖାପ୍ଲୁତ ହୋଇ ପଡ଼ିଲେ । ଅଞ୍ଜନ ରଞ୍ଜିତ ଚକ୍ଷୁରୁ ଲୋତକ ଝରି ମୁଖ ବିବର୍ଣ୍ଣ ହୋଇଲା । ଯାହାପାଇଁ ଘର-ବର ଆଶାଛାଡ଼ି ସେମାନେ ନିବଡ଼ ଅରଣ୍ୟ ମଧ୍ୟକୁ ଧାଇଁଆସିଲେ, ଆଜ ତାର ନିଷ୍ଠୁର ବାଣୀ ଶୁଣି ସେମାନେ କାତର ହୋଇ କହୁଛନ୍ତି —

"ଅପ୍ରିୟ ଶୁଣି ତୋ ବଚନ । କେମନ୍ତେ ରଖିବୁଂ ଜୀବନ ।
ଆଦ୍ୟ ପୁରୁଷ ଭବଗ୍ରାହୀ । ଭୃତ୍ୟ ଜନଙ୍କୁ ଦୟାବହି ।
ଭୃତ୍ୟ ଭାବରେ ରଖ ସ୍ୱାମୀ । ତୁ ଦେବ ସର୍ବ ଅନ୍ତର୍ଯ୍ୟାମୀ ।
ଅଶେଷ ଧର୍ମ ମାର୍ଗ ପଥ । ବେଦ ଆଗମ ପରମାର୍ଥ ।

× × ×

ଯେ ଧର୍ମେ ନାହିଁ ଆତ୍ମମନ । ତୁ କି ନଜାଣୁ ଭଗବାନ ॥"

ଭଗବାନ ଶ୍ରୀକୃଷ୍ଣ ଗୋପୀମାନଙ୍କର ପ୍ରାର୍ଥନାରେ ମୁଗ୍ଧ ହୋଇଛନ୍ତି ଓ ସେମାନଙ୍କ ସହିତ ରମଣ କରିଛନ୍ତି । କିନ୍ତୁ ସଂଯୋଗ ମଧ୍ୟରେ ବିଯୋଗ ଘଟିଛି । ବିଯୋଗହିଁ ସଂଯୋଗର ପୋଷକ । ମାନ ଏବଂ ମଦ ଭଗବାନଙ୍କ ଲୀଳାରେ ବାଧକ ଅଟନ୍ତି । ଭଗବାନ ଗୋପୀମାନଙ୍କଠାରୁ ଦୂରେଇଗଲେ, ସେମାନଙ୍କର ଦୁଃଖ ଦ୍ୱିଗୁଣିତ ହେଲା । ମାନ ଦୂରୀଭୂତ ହେଲା । ଶରୀର, ମନ-ପ୍ରାଣ, ଯାହାକିଛି ଥିଲା ସବୁ ଶ୍ରୀକୃଷ୍ଣଙ୍କଠାରେ ମିଶିଗଲା । ପ୍ରେମୋନ୍ମାଦରେ ସେମାନେ ଗୀତ ଗାଇବାକୁ ଲାଗିଲେ । ଗୋପୀମାନଙ୍କର ଅଲୌକିକ ଭକ୍ତି କୃଷ୍ଣଙ୍କୁ ଆଉ ବେଶୀକାଳ ଅନ୍ତର୍ହିତ କରି ରଖିପାରିଲା ନାହିଁ ।

ଗୋପୀମାନଙ୍କ ନିକଟରେ ଉପସ୍ଥିତ ହୋଇ ସେ ରାସନୃତ୍ୟରେ ଯୋଗଦେଲେ ।

ପାର୍ବତୀ ଶିବଙ୍କୁ ପ୍ରଶ୍ନ କରିଛନ୍ତି ଜାର ଭାବରେ ଗୋପୀମାନେ ଶ୍ରୀକୃଷ୍ଣଙ୍କୁ କିପରି ପାଇବାକୁ ସମର୍ଥହେଲେ । ଶିବ ଉତ୍ତର ଦେଉଛନ୍ତି—ବାସ୍ତବିକ ଲୌକିକ ଦୃଷ୍ଟିରେ ଯାହା ପରକୀୟା ତାହା ଶ୍ରୀକୃଷ୍ଣଙ୍କ ଦୃଷ୍ଟିରେ ସ୍ୱକୀୟା ଥିଲା । ଯେଉଁଠାରେ କାମନା ନଥାଏ, ଅଙ୍ଗସଙ୍ଗର ବାସନା ନଥାଏ, ସେଠାରେ ଉପପତି ବା ଜାର ଭାବର କଳ୍ପନା କରାଯିବ କିପରି ? ଗୋପୀମାନେ ପରକୀୟା ନ ଥିଲେ । କିନ୍ତୁ ସେମାନଙ୍କଠାରେ ପରକୀୟା ଭାବ ଥିଲା । ପରକୀୟା ଭାବରେ ତିନୋଟି କଥା ଉପରେ ଗୁରୁତ୍ୱ ଦିଆଯାଏ । ସେଗୁଡ଼ିକ ହେଲା—

(୧) ନିଜର ପ୍ରିୟତମର ନିରନ୍ତର ଚିନ୍ତନ ।
(୨) ମିଳନର ଉତ୍କଟ ଉତ୍କଣ୍ଠା ।
(୩) ଦୋଷ ଦୃଷ୍ଟିର ସର୍ବଦା ଅଭାବ ।

ଉଲ୍ଲିଖିତ ସମସ୍ତ ଗୁଣ ଗୋପୀମାନଙ୍କଠାରେ ନିହିତ ଥିଲା । ତେଣୁ ସେମାନେ ପରକୀୟା ଭାବ ନେଇ ସ୍ୱକୀୟା ରୂପରେ ନିଜର ପରମ ପ୍ରିୟତମଙ୍କୁ ଲାଭ କରିଥିଲେ । ଏହାହିଁ ସଂକ୍ଷେପରେ ଶୈବାଗମରେ ବର୍ଣ୍ଣିତ ରାସତତ୍ତ୍ୱ ।

## ଜଗନ୍ନାଥ ଦାସଙ୍କ କବିତ୍ୱ ଓ କର୍ଣ୍ଣନା ବିଳାସ ।

'ଶୈବାଗମ' ଯେ କେବଳ ଏକ ତତ୍ତ୍ୱପୂର୍ଣ୍ଣ କ୍ଲିଷ୍ଟଗ୍ରନ୍ଥ ତାହା-ନୁହେଁ । ତାତ୍ତ୍ୱିକତା ସହିତ ବିମଳ କବିତ୍ୱର ସମ୍ମିଶ୍ରଣ ଏହି ଗ୍ରନ୍ଥରେ ହୋଇପାରିଛି । ମାତ୍ର ସ୍ୱଳ୍ପବୟସରେ ଭାଗବତର କ୍ଲିଷ୍ଟ ଶ୍ଳୋକ

ଗ୍ରନ୍ଥକୁ ଯେ ସୁନ୍ଦର ସରଳ ପଦାବଳୀରେ ଅନୁବାଦ କରିପାରିଲେ ପରିପକ୍ୱ ବୟସରେ ତାଙ୍କର ଏହି କବିତ୍ୱ ଅଧିକ ସୌନ୍ଦର୍ଯ୍ୟଶାଳୀ ହୋଇଥିବ ନିଶ୍ଚୟ । ତାଙ୍କର ଶୈବାଗମ ଗ୍ରନ୍ଥ ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ବିଷୟବସ୍ତୁର ଆହରଣ ଏବଂ ସେଗୁଡ଼ିକର ସୁସଜ୍ଜୀକରଣ, ନୂତନ ବିଷୟବସ୍ତୁର ଯୋଗ ଓ ଅନାବଶ୍ୟକ ବର୍ଣ୍ଣନାମାନଙ୍କର ପରିହାର ଫଳରେ ଗ୍ରନ୍ଥଟି ସୁଖପାଠ୍ୟ ହୋଇପାରିଛି । ଭାଷା ଦୃଷ୍ଟିରୁ ମଧ୍ୟ ଏହା ଏକାନ୍ତ ସରଳ ଓ ମନୋଜ୍ଞ ।

ପୂର୍ବରୁ ଆଲୋଚନା ପ୍ରସଙ୍ଗରେ ଉଲ୍ଲେଖ କରାଯାଇଛି ଯେ କବି ମୁଖ୍ୟତଃ ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ଏବଂ ଭାଗବତରୁ ବିଷୟବସ୍ତୁ ଆହରଣ କରି ଏହି ଗ୍ରନ୍ଥରଚନା କରିଥିଲେ । ଏହି ପୁରାଣ ଗୁଡ଼ିକର କେତେକ ସ୍ଥାନରେ ଆକ୍ଷରିକ ଅନୁବାଦ ମଧ୍ୟ କରାଯାଇଛି । କଳେବରର ବିଶାଳତା ଭୟରେ ସେଗୁଡ଼ିକର ଦୃଷ୍ଟାନ୍ତ ଏଠାରେ ଦିଆଯିବା ସମ୍ଭବପର ନୁହେଁ ।

ବର୍ଣ୍ଣନା ବିଳାସର ଏକ ସୁଉଚ୍ଚ ସୀମାକୁ କବି ଜଗନ୍ନାଥଦାସ ଏ ଗ୍ରନ୍ଥରେ ସ୍ପର୍ଶ କରି ପାରିଛନ୍ତି । ନାରୀ ଓ ପୁରୁଷ ରୂପ ବର୍ଣ୍ଣନା, ଶ୍ରୀରାଧା, କୃଷ୍ଣ, ଯଶୋଦା, ନନ୍ଦ, ଗୋପୀ ଗୋପାଳ, ବୃନ୍ଦାବନ, କାଳନ୍ଦୀହ୍ରଦ, କଦମ୍ବ ବୃକ୍ଷ, ଜଳକ୍ରୀଡ଼ା, ରାସନୃତ୍ୟ ପ୍ରଭୃତିଙ୍କର ବର୍ଣ୍ଣନାରେ ଜଗନ୍ନାଥ ଦାସଙ୍କ ଚମତ୍କାର ବର୍ଣ୍ଣନାଶୈଳୀର ପରିଚୟ ମିଳିଥାଏ । ମାତ୍ର କେତେଗୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

**ଶ୍ରୀକୃଷ୍ଣରୂପ**—କୃଷ୍ଣରୂପ ବର୍ଣ୍ଣନାରେ ଜଗନ୍ନାଥଦାସ ନିମ୍ନ ପ୍ରଦତ୍ତ ଶ୍ଳୋକଟିର ମୋହ ପରିତ୍ୟାଗ କରି ନପାରି ଉକ୍ତ ଗ୍ରନ୍ଥ

ମଧ୍ୟରେ ତାଙ୍କୁ ପ୍ରାୟ ୫ରୁ ୭ଥର ପର୍ଯ୍ୟନ୍ତ ବ୍ୟବହାର କରିଛନ୍ତି । ଶ୍ଳୋକଟି ହେଲା —

"ବର୍ହାପୀଡ଼ଂ ନଟବରବପୁଃ କର୍ଣ୍ଣୟୋଃ କର୍ଣ୍ଣିକାରଂ
ବିଭ୍ରଦ୍ବାସଃ କନକକପିଶଂ ବୈଜୟନ୍ତୀଞ୍ଚ ମାଳାଂ ।
ରନ୍ଧ୍ରାନ୍ ବେଣୋରଧର ସୁଧୟା ପୂରୟନ୍ ଗୋପବୃନ୍ଦୈଃ
ବୃନ୍ଦାରଣ୍ୟ ସ୍ୱପଦ ରମଣଂ ପ୍ରାବିଶଦ୍ ଗୀତ କୀର୍ତ୍ତିଃ ॥"

ଜଗନ୍ନାଥ ଦାସ ଏହାର ଅନୁବାଦ କରି ଲେଖିଛନ୍ତି—

"ନବ ଜଳଧି ତନୁଶ୍ୟାମ । ବରହା ପୁଚ୍ଛ ଅଭିରାମ ॥
କର୍ଣ୍ଣେ ଭୂଷଣ କର୍ଣ୍ଣିକାର । ଟଯସନେ ଶୋଭେ ନଟବର ॥
କନକ ପିଙ୍ଗ ବସନ । କଟି ମେଖଳା ପରିଧାନ ॥
ବଇଜୟନ୍ତୀ କଣ୍ଠତଟେ । ମୁରଲୀ ବିମ୍ବାଧର ପୁଟେ ॥
ପଞ୍ଚମ ସ୍ୱନେ ବଂଶୀଧ୍ୱନି । କରନ୍ତି ବୃନ୍ଦାରକ ମଣି ॥
ଶ୍ରବଣେ ଶୁଣି ବେଣୁ ଗୀତ । ଗୋପକାମେମା ମୋହଗତ ॥"

ଏହା ବ୍ୟତୀତ ଅନ୍ୟ ଅନେକ ସ୍ଥାନରେ ଶ୍ରୀକୃଷ୍ଣଙ୍କର ମନୋହର ରୂପର ବର୍ଣ୍ଣନା କରାଯାଇଛି ।

ଶ୍ରୀରାଧା—

"ମଧ୍ୟେ ବ୍ରଜପୁ ଭାନୁ ସୁତା । ଶ୍ରୀ ବୃନ୍ଦାବନ ଚନ୍ଦ୍ର କାନ୍ତା ॥
କେଶେ କୁସୁମ ଦାମ ଶୋଭା । ନବ ଜଳଦେ ବିଦ୍ୟୁପ୍ରଭା ॥
ସିନ୍ଦୂର ବିନ୍ଦୁ ଭାଲ ପଟେ । ହୀରା କୁଣ୍ଡଳ କର୍ଣ୍ଣ ପୁଟେ ॥
ନୟନ କମଳେ ଅଞ୍ଜନ । ଭ୍ରୂ ଲତା କାମ ଶରାସନ ॥
ନାସେ ମୁକୁତା ଶୋଭାବନ । ବେଣୀ ଚନ୍ଦ୍ର ଆଲିଙ୍ଗନ ॥
କଣ୍ଠେ ପଦକ ରତ୍ନହାର । କଙ୍କଣୀ ସ୍ତନ ମନୋହର ॥

ବାହୁ ମୂଳରେ ତାଡ଼ଯୋଡ଼ | କମଳ କରେ ରତ୍ନ ଚୂଡ଼ ||
ପଦ୍ମରେ ନୂପୁର ବାଜେ | ବ୍ରାହ୍ମାଣ୍ଡ ସୁନ୍ଦରତା ତେଜେ ||

ବୃନ୍ଦାବନ ପ୍ରକୃତି—

"ଦେଖନ୍ତି ବନ ପରିମଳ | ମଲ୍ଲିକା କୁସୁମ ଉଜ୍ଜ୍ୱଳ ||
ଗଳିତ ମକରନ୍ଦ ଧାର | ଶୀତଳ ବହଇ ସମୀର ||
ମଧୁପବୃନ୍ଦ ମଧୁପାନେ | ବିଭ୍ରମନ୍ତି କୁସୁମ କାନନେ ||
କୁମୁଦ ରମଣ ଆକାଶେ | ଉଦୟ କିରଣ ପ୍ରକାଶେ ||
ନିର୍ମଳ ପ୍ରାଚୀ ଦିଗସୀମା | ବଦନ ଦିଶଇ ରଙ୍ଗିମା ||
ସ୍ୱାମୀଙ୍କ ଦେଖି ଚିରକାଳେ | ସେହ୍ନେ ମାନିନୀ ମାନ ବଳେ ||
ଦିଗ ସୁନ୍ଦରୀ ଭାଲ ପଟେ | ଚନ୍ଦନ ବିନ୍ଦୁ ପରକଟେ ||
କିରଣେ ତରଳ ଚନ୍ଦ୍ରକ | ସ୍ମିତ ବଦନୀ କୁମୁଦିକା ||
ସଙ୍କୋଚେ ମୁଦ୍ରିତ ପଦ୍ମିନୀ | ଶୃଂଗାର ରସେ ସେ ମାନିନୀ ||"

ଇତ୍ୟାଦି |

ବର୍ଣ୍ଣନା ବିନ୍ୟାସପର କବି ସ୍ଥଳବିଶେଷରେ ଅଳଙ୍କାରୋକ୍ତି ମାନ ପ୍ରୟୋଗ କରିଛନ୍ତି | ଏଗୁଡ଼ିକ ଅନେକାଂଶରେ ତାତ୍ତ୍ୱିକତା ପୂର୍ଣ୍ଣ ହୋଇପଡ଼ିଛି | ନିମ୍ନରେ ଏହାର କେତେକ ଦୃଷ୍ଟାନ୍ତ ଦିଆଗଲା |

(୧) 'ଦେଖ ସଂସାର ଅଂଶୁମାଳୀ | କାମାଦି କିରଣ ପ୍ରଜ୍ୱଳି ||
ବିଷୟ ବାଲୁକା ସଙ୍କୁଳେ | ଆମ୍ଭଙ୍କୁ ଦହେ ଅବହେଳେ ||
(୨) କୃଷ୍ଣ ବିଚ୍ଛେଦ ଚିନ୍ତାଜଳେ | ଗୋପୀ ବସିଲେ ଆମ୍ଭେମାନେ ||
ଅନଙ୍ଗ ବାଧା ନଦୀ କୂଳ | ଅଜ୍ଞାନ ତରଙ୍ଗ ପ୍ରବଳ ||

ଇତ୍ୟାଦି |

ଏହିଭଳି ବହୁ ଦୃଷ୍ଟାନ୍ତ ଦିଆଯାଇପାରେ | କବି ଜଗନ୍ନାଥ ଦାସ ଥିଲେ ନୈସର୍ଗିକ କବିତ୍ୱର ଅଧିକାରୀ | ଓଡ଼ିଆ ଓ ଅଣଓଡ଼ିଆ

ଅନେକ ସମାଲୋଚକଙ୍କ ଜଗନ୍ନାଥ ଦାସଙ୍କ କବିତ୍ୱର ଭୂୟସୀ ପ୍ରଶଂସା କରି ଯାଇଛନ୍ତି । ଶୈବାଗମ ତାଙ୍କର ଏହି କଳାଷ୍ଟୁ କବିତ୍ୱର ଏକ ନିଦର୍ଶନ ଏଥିରେ ଦ୍ୱିରୁକ୍ତି ନାହିଁ ।

**ଉପସଂହାର**—ଜଗନ୍ନାଥ ଦାସଙ୍କର ଭାଗବତ ସମେତ ବହୁ ଗ୍ରନ୍ଥ ଅଦ୍ୟାବଧି ମୁଦ୍ରିତ ହୋଇ ପାରିନଥିଲେହେଁ ଶୈବାଗମ ପରି ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ମୁଦ୍ରିତ ହୋଇ ପାରିନଥିଲା । ବହୁ ଆୟାସରେ ଏଭଳି ଏକ ଦୁରୂହ କାର୍ଯ୍ୟକୁ ସମ୍ପନ୍ନ କରାଯାଇଛି । ଉପ-ସଂହାରରେ ମୋର ଏତିକି ମାତ୍ର ବକ୍ତବ୍ୟ ଯେ ସୁଧୀ ପାଠକବର୍ଗ ଏହି ଗ୍ରନ୍ଥକୁ ପାଠ କରି ଓଡ଼ିଆ ଜ୍ଞାନମିଶ୍ରା ଭକ୍ତିତତ୍ତ୍ୱର ମୂଳ ରୂପକୁ ହୃଦୟଙ୍ଗମ କରିପାରିଲେ ମୋର ଶ୍ରମ ସାର୍ଥକ ହେବ । ପରିଶେଷରେ ଜଗନ୍ନାଥ ଦାସଙ୍କର ଅର୍ଷ ପ୍ରତିଭା ନିକଟରେ ମସ୍ତକ ଅବନତ କରି ଅଣଓଡ଼ିଆ ସମାଲୋଚକ ବିଜୟ ଚନ୍ଦ୍ର ମଜୁମଦାରଙ୍କ ସହ ସ୍ୱର-ମିଳାଇ ମୁଁ କହୁଛି "ଜଗନ୍ନାଥ ଦାସ ଓଡ଼ିଆ ଜାତିର ନୈତିକ ଉନ୍ନତିପାଇଁ ଯାହା କରିଯାଇଛନ୍ତି ତାହା ପ୍ରକାଶକରିବା-ପାଇଁ ମୁଁ ଉପଯୁକ୍ତ ବିଶେଷଣ ପାଉନି ।" । ଇତି ।

ଜନ୍ମାଷ୍ଟମୀ, ୧୯୮୧

ବିନମ୍ର ସମ୍ପାଦକ
**ଶ୍ରୀ ପ୍ରଦୀପ୍ତ କୁମାର ପଣ୍ଡା**

# ସଂପାଦନା ସଂପର୍କରେ

ଜଗନ୍ନାଥଙ୍କ ଅପାର କରୁଣାରୁ ବହୁ ପ୍ରତୀକ୍ଷିତ ଶୈବାଗମ ଗ୍ରନ୍ଥ ପ୍ରକାଶପାଇବାକୁ ଯାଉଛି । ଅନେକଙ୍କ ଦୃଷ୍ଟିରେ ଆଗମ ( ଅଭିଧାନକ ଅର୍ଥରେ ତନ୍ତ୍ର ) ଏକ ଗୁପ୍ତ ଗ୍ରନ୍ଥ । ତେଣୁ ଏହା ସର୍ବ ସାଧାରଣରେ ପ୍ରକାଶିତ ହେବା ଅନୁଚିତ । ଏଥିପାଇଁ କେବଳ ଆଗମ କାହିଁକି ପଞ୍ଚସଖା ସଂପ୍ରଦାୟର ଅନେକ ରଚନା ଆଜି ଗୁପ୍ତହୋଇ ରହିଛି । ଦୁର୍ଦ୍ଦମନୀୟ ଅନ୍ଧବିଶ୍ୱାସ ଏବଂ ଅସମ୍ଭବ ଧର୍ମଭୀରୁତାର ଶୀକର ହୋଇ ଅନେକ ମୂଲ୍ୟବାନ ଗ୍ରନ୍ଥ କାଳ ଗର୍ଭରେ ଲୀନହୋଇ ଗଲଣି । ଏହିଭଳି ପ୍ରତିକୂଳ ପରିବେଶରେ ମୁଁ ଶୈବାଗମ ଗ୍ରନ୍ଥର ପ୍ରକାଶନ ଲାଗି ମନ ବଳେଇବା ନିଶ୍ଚୟ ଏକ ଦୁଃସାହସିକ କାର୍ଯ୍ୟ । ଯାହାର ଫଳ ସ୍ୱରୂପ ମୁଁ ଓଡ଼ିଆ ଅଧମ ଲେଖକଙ୍କ ଅବସ୍ଥା ମୋତେ ଭୋଗିବାକୁ ପଡ଼ିବ ।

ସର୍ବଶେଷରେ ଏହି ମୂଲ୍ୟବାନ ଗ୍ରନ୍ଥ ପ୍ରକାଶଲାଭ କରିଛି, ହେଲେ ତାର ପ୍ରାଥମିକ ସ୍ୱରୂପଠାରୁ ଭିନ୍ନ ଭାବରେ । ଗ୍ରନ୍ଥର ନାମ କରଣ ପ୍ରକୃତରେ ଶୈବାଗମ । ମୋ ପୂର୍ବରୁ ଯେଉଁମାନେ ଏ ଗ୍ରନ୍ଥ ବିଷୟରେ ଆଲୋଚନା କରିଛନ୍ତି, ସେମାନେ ଏହାକୁ 'ଶୈବାଗମ ଭାଗବତ' ନାମ ଦେଇଛନ୍ତି । ମୁଁ ମୁଖବନ୍ଧର ନାମକରଣ ପର୍ଯ୍ୟାୟରେ ସେମାନଙ୍କ ଯୁକ୍ତିକୁ ଖଣ୍ଡନ କରି ଶୈବାଗମ ନାମକରଣର ଯଥାର୍ଥତା ପ୍ରତିପାଦନ କରିଛି । ହେଲେ ପରିସ୍ଥିତିର ଚାପରେ ଓ ପ୍ରକାଶକ ମହାଶୟଙ୍କ ଇଚ୍ଛାରେ ଆଜି ମତେ ବାଧ୍ୟହୋଇ ସେହି ମହାଜନମାନଙ୍କ ପନ୍ଥାକୁ ଅନୁସରଣ କରିବାକୁ ପଡୁଛି । ସର୍ବୋପରି ମୁଖବନ୍ଧର ନାମକରଣ ପର୍ଯ୍ୟାୟରେ ଉପସ୍ଥାପିତ କରିଥିବା ଯୁକ୍ତିରେ ମୁଁ ଦୃଢ଼ାପରିଶେଷରେ ଗୃହୀତ ପୋଥିରୁ ସଂଗୃହୀତ ମୂଳଗ୍ରନ୍ଥର ପାଠ ଭେଦକୁ ମଧ୍ୟ ବାଦଦେବାକୁ ପଡ଼ିବ । କାରଣ ଏହି ପର୍ଯ୍ୟାପ୍ତ ପାଦଟୀକାଗୁଡ଼ିକ ଲାଗି ଗ୍ରନ୍ଥର ମୁଦ୍ରଣଲାଗି ଅନେକ ମୁଦ୍ରଣ ଯନ୍ତ୍ର ସେମାନଙ୍କର ଅକ୍ଷମତା ପ୍ରକାଶ କରନ୍ତି । ଏଥିପାଇଁ ଅନୁସନ୍ଧିତ୍ସୁ ଗବେଷକ ଓ ବିଜ୍ଞ ପାଠକମାନଙ୍କ ନିକଟରେ କ୍ଷମା ମାଗୁଛି ।

ବହୁ ସତର୍କତାସତ୍ତ୍ୱେ କେବଳ ମୂଳପାଠର ଛପାରେ ମଧ୍ୟ ଅନେକ ମୁଦ୍ରଣ ପ୍ରମାଦ ରହିଯାଇଛି । ସେମାନଙ୍କର ଶୁଦ୍ଧ ପଠନଲାଗି ଗ୍ରନ୍ଥର ଶେଷରେ ଏକପୃଷ୍ଠ ଶୁଦ୍ଧିପତ୍ର ଯୋଡ଼ିବାକୁ ପଡ଼ିଛି । ଆଶା ପାଠକ ବନ୍ଧୁମାନେ ଏଇ ଶୁଦ୍ଧିପତ୍ରର ସାହାଯ୍ୟ ନେବେ ।

ଏ ଗ୍ରନ୍ଥର ଶୁଦ୍ଧ ସଂପାଦନାଲାଗି ମୋତେ ମୋର ପୂଜ୍ୟ ଗୁରୁ ଡଃ ଆଶୁତୋଷ ପଟ୍ଟନାୟକ, ଡଃ ରତ୍ନାକର ଚଇନି, ରାଜ୍ୟ ସଂଗ୍ରହାଳୟର ପୋଥିବିଭାଗ ଅଧ୍ୟକ୍ଷ ପଣ୍ଡିତ ନୀଳମଣି ମିଶ୍ର, ଉତ୍କଳ ବିଶ୍ୱବିଦ୍ୟାଳୟ ପତ୍ରିକା ପାଠାଗାରର ପଣ୍ଡିତ ଶ୍ରୀନିବାସ ରଥ ଏବଂ ବନ୍ଧୁ ଅଧ୍ୟାପକ ଘନଶ୍ୟାମ ନାୟକ ବିଭିନ୍ନ ପର୍ଯ୍ୟାୟରେ ଆବଶ୍ୟକୀୟ ସହଯୋଗ କରିଥିବାରୁ, ମୁଁ ଏ ଅବସରରେ ସେମାନଙ୍କ ନିକଟରେ କୃତଜ୍ଞ ରହୁଛି । ଗ୍ରନ୍ଥର ମୂଳ ପାଣ୍ଡୁଲିପିଟି ପ୍ରଦାନ କରିଥିବାରୁ କଟକଜିଲ୍ଲା ଜନାର୍ଦ୍ଦନପୁର ନିବାସୀ ମୋର ପିଉସା ବିଶ୍ୱନାଥ ଷଡ଼ଙ୍ଗୀଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ।

ଗ୍ରନ୍ଥର ପ୍ରକାଶନଲାଗି ଧର୍ମଗ୍ରନ୍ଥଷ୍ଟୋରର ଅଧ୍ୟକ୍ଷ ଭକ୍ତ ବିଦ୍ୟାଧର ସାହୁଙ୍କର ଆଗ୍ରହ ମୋର ଚିର ଅବିସ୍ମରଣୀୟ ହୋଇ ରହିବ । ତାଙ୍କସହ ପ୍ରଥମ ସାକ୍ଷାତରୁ ତାଙ୍କର ଧର୍ମଗ୍ରନ୍ଥପ୍ରତି ଗଭୀର ଆଦର ମୋତେ ଆବିଭୂତ କରିଛି । ଏ ଅବସରରେ ବିଦ୍ୟାଧର ବାବୁଙ୍କୁ ଧନ୍ୟବାଦ ଦେବାସହ, ଈଶ୍ୱର ତାଙ୍କର ଏହି ବହୁ ପ୍ରଶଂସିତ ଉଦ୍ୟମକୁ ନିରବଚ୍ଛିନ୍ନ ରଖନ୍ତୁ, ଏହା ପ୍ରାର୍ଥନା କରୁଛି । ଗ୍ରନ୍ଥର ଆଶୁ ପ୍ରକାଶନଲାଗି 'ବିମଳା ଲ' ପ୍ରିଣ୍ଟର୍ସର' କର୍ମକର୍ତ୍ତାମାନଙ୍କୁ ଅଶେଷ ଧନ୍ୟବାଦ ପ୍ରଦାନ କରୁଛି । ପରିଶେଷରେ ଏ ଦେଶର ଅଗଣିତ ବିଜ୍ଞ, ଧର୍ମପ୍ରାଣ, ଭକ୍ତ ପାଠକଙ୍କ ନିକଟରେ ଗ୍ରନ୍ଥର ସମସ୍ତ ତ୍ରୁଟି ବିଚ୍ୟୁତି ପାଇଁ 'ହଂସର କ୍ଷୀର ଗ୍ରହଣ ନ୍ୟାୟରେ' କ୍ଷମା ପ୍ରାର୍ଥନା କରି ରହୁଛି ।

ଜନ୍ମାଷ୍ଟମୀ
୩୧-୭-୧୯୮୩

ବିନୀତ ସଂପାଦକ
ପ୍ରଫୁଲ୍ଲ କୁମାର ପଣ୍ଡା

# ଶୈବାଗମ ଭାଗବତ

## ପ୍ରଥମ ଅଧ୍ୟାୟ

### ଶ୍ରୀ ଗଣେଶାୟନମଃ । ଅବିଘ୍ନମସ୍ତୁ ।

ଜୟତୁ ଜୟ ଜଗନ୍ନାଥ । କରୁଣା ସିନ୍ଧୁ ଲକ୍ଷ୍ମୀକାନ୍ତ । ୧ ।
ଶ୍ୱେତ କମଳ ଦଳ ନେତ୍ର । ରଙ୍ଗ ଅଧର ଦ୍ରୁମସିତ ॥
କପୋଳେ ଗୋରୋଚନା ଚିତା । ଗଗନେ ଉଦେ କି ସବିତା ॥
ତଥି ଉପରେ ଗନ୍ଧ ରେଖ । ନୀଳ ଜୀମୂତ ଶ୍ୟାମମୁଖ ॥
ଶିରେ କୁସୁମ ଚୂଳ ଶୋହେ । ଦେଖଲେ ଅଶେଷ ଜନ ମୋହେ ॥
କଣ୍ଠେ କୁଣ୍ଡଳ ଝଗଜେ । କୁସୁମ ମାଳ ବେନି ଭୁଜେ ॥
କଟିରେ ଦେବାଙ୍ଗ ବସନ । ବିଜୟେ ରତ୍ନ ସିଂହାସନ ॥
ମଧ୍ୟେ ବିଜୟେ ଭଦ୍ରାଦେବୀ । ଯୋଗମାୟା ନିର୍ଗୁଣେ ସମ୍ଭବ ॥
ଦକ୍ଷିଣ ପାଶେ ବଳରାମ । ରୂପେ ନିନ୍ଦିତ କୋଟି କାମ ।୯।
ଅନନ୍ତ ରୂପ ବିଶ୍ୱମ୍ଭର । ବ୍ରହ୍ମା ରୁଦ୍ରଙ୍କୁ ଅଗୋଚର ॥
ସେ ପ୍ରଭୁ ନୀଳାଦ୍ରି ଶିଖରେ । ବିଜୟେ ଦାରୁ କଳେବର ॥
ଅଶେଷ ଲୋକ ନିସ୍ତାରଣେ । ଶରଣ ଜନଙ୍କ ରକ୍ଷଣେ ॥
ଜଳଧିତଟେ ବିଜେ କରି । ଦାସ ବତ୍ସଳ ଦଇତାରି ॥
ହୋଅନ୍ତି ନାନା ଅବତାର । ସୃଷ୍ଟି ପାଳଣେ ତତପର ॥
ଶ୍ରୀରାମ ହଳଧର କୋଳ । ନୃସିଂହ କଚ୍ଛପ କପିଳ ॥
ମୀନ ବାମନ ହୟଗ୍ରୀବ । ନାରଦ ହଇହସ୍ତୁ ଦେବ ॥
ପଞ୍ଚ କୁମାର ବେଦବ୍ୟାସ । କଳଙ୍କି ବିଶ୍ୱରୂପା-ଭାସ ॥
ହଂସ ହଇମ ଧନ୍ୱନ୍ତରି । ସିତ ଅସିତ ବୁଦ୍ଧ ହରି ।୧୮।

ପରଶୁରାମ ଉରୁକ୍ରମ । ଶ୍ରୀ ନର ନାରାୟଣ ନାମ ।୧୯।
ମୃଷ୍ଟି ଗର୍ଭକ ବୁଦ୍ଧବେଶ । ଶଙ୍କର ମୋହିନୀ ଦଧ୍ୟାତା ।।
ଯେତେ ବିଧି ନାନା ରୂପଲୀଳା । ଶ୍ରୀ ଜଗନ୍ନାଥଙ୍କର କଳା ।।
ଗୋପୀ ଗୋପାଳଙ୍କର ଅର୍ଥେ । ସ୍ୱୟଂ ଜନ୍ମିଲେ ଜଗନ୍ନାଥେ ।।
ଅଶେଷ ଅବତାର ମାନ । କୃଷ୍ଣ ଭାବରେ ଅବସାନ ।।
ଶ୍ରୀକୃଷ୍ଣ ନିତ୍ୟ ଅବତାର । ନୀଳାଦ୍ରି ଶିଖରେ ବିହାର ।।
ଗୋପେ ରଚିଲେ ଯେତେ ଲୀଳା । ଗୋପୀଜନଙ୍କ ପ୍ରେମ କଳା ।।
ରାଜା ପରୀକ୍ଷିତ ଅଗ୍ରତେ । ଶୁକ କହିଲେ ଭାଗବତେ ।।
ସେ ତ ଅଶେଷ ଗୁଣରାଶି । କେ ତାହା କହିବ ବିଶେଷି ।।
କେବଳ ଗୋପୀଙ୍କ ଚରିତ୍ର । ରହସ୍ୟ ପରମ ପବିତ୍ର ।।
ଗୀତେ ରଚିବି ନଟଲୀଳା । କୃପା କରିବେ ପଦ୍ମ ଡୋଳା ।।
ଅନେକ ରାକ୍ଷସନ୍ତ ମାରି । ପୃଥିବୀ ସଙ୍କଟୁ ଉଦ୍ଧାରି ।୩୦।
ବିସ୍ତାର କଲେ ଯେତେ ଯଶ । ସଂସାରେ ହୋଇଛି ପ୍ରକାଶ ।।
ସେ ଯଶ ଗୁଣ କର୍ମମାନ । ଯେ କରେ ଶ୍ରବଣ କୀର୍ତ୍ତନ ।।
ସେ ଭବ ଜଳୁ ତରିଯାନ୍ତି । ପରମ ସୁଖେ ସେ ରହନ୍ତି ।।
ଗୋପୀ ଗୋବିନ୍ଦ ଲୀଳାରସ । ଗୀତ ପ୍ରବନ୍ଧେ ପରକାଶ ।।
କରିବି ଆତ୍ମାହିତ ପାଇଁ । ପ୍ରାଣୀ ତରିବେ ଯାହାଗାଇ ।।
ଶଙ୍କର ପାର୍ବତୀ ଅଗ୍ରତେ । ଯାହା କହିଲେ ଜନହିତେ ।।
ଶ୍ରୀଜଗନ୍ନାଥ କୃପାବଶେ । ସେ କଥା ହୃଦୟେ ପ୍ରକାଶେ ।।
ଦେଶ ଭାଷାରେ ତାହା କହି । ଅଖିଳ ଜନ ମନ ମୋହି ।।
ସଂସାରେ ହୋଇବ ନିର୍ମଳ । ଜନମ କରିବ ସୁଫଳ ।।
ଶୁଣ ସୁଜନେ କୃଷ୍ଣ କଥା । ଯେଣେ ଖଣ୍ଡିବ ଭବ ବ୍ୟଥା ।।
ଶୈବାଗମ ଶାସ୍ତ୍ରମତେ । ବୈଷ୍ଣବ ଜନଙ୍କ ସମ୍ମତେ ।।
ଅଶେଷ ଶାସ୍ତ୍ର ପରମାଣି । ଆଗମ ନିଗମେ ତା ଜାଣି ।୪୨।

କହିବ ଶୁଣ ସାବଧାନେ । ଶ୍ରୀ କଇଳାସ ଉପବନେ ।୪୩।
ନିର୍ମଳ ନିବିଡ଼ ଗହନ । ସହଜେ ନାହିଁ ଅନ୍ୟଜନ ॥
ଯୋଗ ଆସନେ ବସି ହର । ନିଶ୍ଚଳ ଧ୍ୟାନ ତତପର ॥
କଦମ୍ବ କୁସୁମ ଆକାର । ରୋମ ଉଦ୍‌ଗମେ କଳେବର ॥
ନୟନ ଜଳେ ଦେହତିନ୍ତ । ଧ୍ୟାନେ ଶ୍ରୀକୃଷ୍ଣ ରୂପଚିନ୍ତ ॥
ଜପନ୍ତ ନାମ ତତ୍ପର । ପରମ ଯୋଗୀ ମହେଶ୍ୱର ॥
କର ପଲ୍ଲବ ବେନି ହୃଦେ । ନିବେଶି ଧ୍ୟାନ ମୁଦ୍ରାଛନ୍ଦେ ॥
ଆନନ୍ଦେ ବେନି ନେତ୍ରବୁଜି । ପରମ ସୁଖରେ ସେ ମଜ୍ଜି ॥
ହେମନ୍ତେ ହେମନ୍ତ ନନ୍ଦନୀ । ବନେ ଭ୍ରମନ୍ତି ଏକାକିନୀ ॥
ନନ୍ଦନ କାନନର ସମ । କି ଅବା ଦେବାଙ୍କ ଉପାମ ॥
କୁସୁମ ଚୟ ପରିମଳ । ସୁଗନ୍ଧ ବହଇ ଅନିଳ ।୫୩।
ଭୃଙ୍ଗ କୋକିଳ ମଞ୍ଜୁ ବାଣୀ । ଯହିଁ ବିଜୟେ ଶୂଳପାଣି ॥
ବିଚିତ୍ର ଲତା ତରୁବର । କାନନ ଦିଶଇ ସୁନ୍ଦର ॥
ସହଜେ ନବ ମଧୁମାସ । ଶୁକ୍ଳ ଅଷ୍ଟମୀ ଦିବସ ॥
ଅଶୋକ ବନେ ହେମବନ୍ତୀ । ସଖିରେ କରେ ମନ୍ଦଗତି ॥
ଗମନ୍ତେ ନିଜ ପତି ପାଶେ । ପ୍ରବେଶ ମନର ସନ୍ତୋଷେ ॥
ଦୃଢ଼ ଆସନେ ବସି ଶିବ । ଅଷ୍ଟାଙ୍ଗ ଯୋଗ ଲୟେ ଭାବ ॥
ତା ଦେଖି ଦେବୀ ଶାକମ୍ଭରୀ । ବିସ୍ମୟେ ମନେ ଚିନ୍ତା କରି ॥
ଏ ତ ଅଟଇ ଅଦ୍ଭୁତ । ତ୍ରିଦଶ ନାଥ ଶୂଳହସ୍ତ ॥
ଯାହାର ପାଦ ଅରବିନ୍ଦ । ଧ୍ୟାନେ ଚିନ୍ତନ୍ତି ଯୋଗୀବୃନ୍ଦ ॥
ସେ ଧ୍ୟାନ ଯୋଗରେ ପ୍ରବେଶ । କି ଚିନ୍ତା କରେ ବ୍ୟୋମକେଶ ॥
ଯେତେ ବିଚାରି ଦେବୀରହି । ନିଜ ବଲ୍ଲଭ ମୁଖ ଚାହିଁ ॥
ହରଷେ ନ ପିଟୁଛେ ଆଖି । କେତେବେଳେଁ କାଳ ଉପଲକ୍ଷି ॥
ପ୍ରାଣ ଈଶ୍ୱର ରୂପଧ୍ୟାୟୀ । ଆନନ୍ଦେ ଶିରେ କର ଦେଇ।୬୫।

ମନ ପ୍ରକୃତି ସ୍ଥିର କରି । ଚଞ୍ଚଳ ଇନ୍ଦ୍ରିୟ ନିବାରି ।୭୭।
ନିଜ ପ୍ରତିମା ପ୍ରାୟେ ରହି । ସେମନ୍ତେ ଗଲା କାଳ ବହି ।
ମହେଶ ପାର୍ବତୀ ସ୍ତୁକାନ୍ତ । କାଳ ନ କରଇ ତାଙ୍କୁ ଗ୍ରସ୍ତ ॥
ଅନାଦି ସୃଷ୍ଟି ଯାର ଲୀଳା । ତ୍ରିଗୁଣ ଶକ୍ତି ଅଂଶ କଳା ॥
ସେହି ତାହା କହିବ କେତେ । ସେ ପ୍ରଭୁ ମହା ରୁଦ୍ରରୂପୀ ॥
କେତେଦିନଂ ବଦନେ ଯୋଗପୂର୍ଣ୍ଣ । ଉମା ବକ୍ଷିଲ ତ୍ରିଲୋଚନ ॥
ନୟନ କମଳ ବିକାଶି । ଗୃହ୍ନିଂଲେ କଇଲାସ ବାସୀ ॥
ନିକଟେ ଦେଖି ଶୁଭ୍ରକେଶୀ । ଆନନ୍ଦେ ଉଛୁଳନ୍ତି ହସି ॥
ଚନ୍ଦ୍ରବଦନ ପ୍ରାଣ ପ୍ରିୟେ । ଯୋଗ ଧାରଣେ କରି ଲୟେ ॥
ମୋର ସମୀପେ ଅଛ ରହି । ବହୁତ ମନେ ଦୁଃଖ ସହି ॥
ସେମନ୍ତ କହି ଶୂଳଧାରୀ । ପ୍ରାଣ ବଲ୍ଲଭୀ ଭୁଜ ଧରି ॥
କୋଳେ ବସାଇ ପ୍ରିୟବାଣୀ । କହନ୍ତି ଚନ୍ଦ୍ର ଚୂଡ଼ାମଣି ।୭୮।
କି ତୋତେ କଲି ଅପମାନ । ସ୍ୱରୂପ କହ ଗୋ ବଚନ ॥
ଈଶ୍ୱର ମୁଖୁଂ କଥା ଶୁଣି । ପାର୍ବତୀ କହେ ମଞ୍ଜୁ ବାଣୀ ॥
ତୁ ଦେବ ମହନ୍ତ ପୁରୁଷ । ଗ୍ୟାନ ଅଗ୍ୟାନ ପରବେଶ ॥
ତୋ ଭାବ ଯୋଗୀ ଜନେ ଚିନ୍ତ । ତରନ୍ତି ଭବ ଭୟ ଭ୍ରାନ୍ତି ॥
ତୋ ଆଗ୍ୟାଂ ଶିରେ ଧରି ଧାତା । ବିଶ୍ୱ ସର୍ଜନେ କରି ଚିନ୍ତା ॥
ଇନ୍ଦ୍ରାଦି ଦଶ-ଦିଗ ପାଳେ । ସେବନ୍ତି ତୋ ପାଦ କମଳେ ॥
ଦେବାଧିଦେବ ବିରୁପାକ୍ଷ । ସନ୍ଦେହ ଦେଖିଲି ପ୍ରତକ୍ଷ ॥
ଅଷ୍ଟାଙ୍ଗ ଯୋଗ ଧ୍ୟାନେ ବସି । କି ଚିନ୍ତା କର ଦିବାନିଶି ॥
କି ମନ୍ତ୍ର ଜପ ମୋତେ କହ । ଯେବେ ସୁଦୟା ଚିତ୍ତେବହ ॥
ବିନୟ ହୋଇଲେ ଈଶ୍ୱରୀ । ଈଶ୍ୱର ପାଦ ଶିରେ ଧରି ॥
ପ୍ରଣାମ କଲେ ପୁଣ ପୁଣି । ତା ଦେଖି ଦେବ ଶୂଳପାଣି ॥
କହନ୍ତି ଶ୍ରୀକୃଷ୍ଣ ଚରିତ । ପ୍ରେମ ପୁଲକ ନିଜ ଗାତ ।୭୯।

ବଦନୁ ବାହ୍ୟ ନୀର ଧାର । ଗଦ୍‌ଗଦ ବଚନ ଗମ୍ଭୀର ।୯୧।
ସର୍ବ ମଙ୍ଗଳା ମୁଖ ବୃନ୍ଦ । ଶ୍ରୀକୃଷ୍ଣ ପାଦେ ଚିତ୍ତଦେଇ ॥
ଯାହା କହିଲେ ସଂଲୋଚନ । ଶ୍ରବଣେ ଶୁଣ ସୁଗ୍ୟଂଜନ ॥
ଭଜ ଶ୍ରୀକୃଷ୍ଣ ପଦ୍ମପାଦେ । ନବୁଡ଼ ଭବଜଳ ମଧେ ॥
ଶିବ ଆଗମ ସାରଗ୍ରନ୍ଥ । ବର୍ଣ୍ଣିଲ ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମତ୍ପରମରହସ୍ୟେ ଶୈବାଗମେ ଉମାପ୍ରଶ୍ନୋ
ନାମ ପ୍ରଥମ ଅଧ୍ୟାୟଃ

—o—

## ଦ୍ୱିତୀୟ ଅଧ୍ୟାୟ

### ଈଶ୍ୱର ଉବାଚ

ଆନନ୍ଦ କହନ୍ତି ଈଶାନେ । ହେ ସଖୀ ଶୁଣ ସାବଧାନେ ।୧।
ଅଛଇ ଯେଉଁକ ମହାପ୍ରଭୁ । ଅଶେଷ ଲୋକ ତାର ଗର୍ଭୁ ॥
ସମ୍ଭବ ହୋଏ ବଦ୍ୟମାନ । ବ୍ରହ୍ମାଣ୍ଡ ପାତନା ବିଧାନ ॥
ପ୍ରକୃତି ପୁରୁଷଙ୍କ ପର । ତ୍ରିଗୁଣାତୀତ ନିରାକାର ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ସକଳ ପାଳନ୍ତା ଈଶ୍ୱର ॥
ସେ ମହାପ୍ରଭୁ ଅଂଶ ଅଂଶେ । ଉଦର ନାଭି ପଦ୍ମ କୋଷେ ॥
ଜନ୍ମିଲ ଦେବ ପଦ୍ମଯୋନି । ଉତ୍ପତ୍ତି ରଜୋଗୁଣ ଘେନି ॥
ସେ ବ୍ରହ୍ମ ଲୋକ ପିତାମହ । ସର୍ଜିଲା ଅଶେଷ ବିଗ୍ରହ ॥
ତା ଦେଖି ଦେବ ନରହରି । ସତ୍ତ୍ୱ ସ୍ୱରୂପ ଦଇତାରି ॥
ସକଳ ଲୋକ ରକ୍ଷାକରି । ନିଜ ଗୁଣରେ ଅବତରି ॥
କୁକ୍ଷି ଦେଶରୁ ମୋତେ ଜାତ । ତମ ଗୁଣରେ ପଦ୍ମନେତ୍ର ॥
ସଂହାର ବିଗ୍ରହ ମୋ ଦେହ । ପ୍ରକାଶ କଲେ ଭାବଗ୍ରାହୀ ॥
ଯେମନ୍ତେ ବ୍ରହ୍ମା ବିଷ୍ଣୁ ଶିବ । ତ୍ରିଗୁଣ କଳାରେ ସମ୍ଭବ ।୧୩।

ଜାତ ହୋଇଲୁ ତାର ଅଂଶେ । ବର୍ତ୍ତିଲୁ ସ୍ୱଗୁଣ ପ୍ରକାଶେ ।୧୭।
ସେ ମହାପ୍ରଭୁ ପାଦ ପଦ୍ମ । ଯୋଗୀ ଜନଙ୍କ ମନ ସଦ୍ମ ॥
ତାହାର ନାମ ତତ୍ତ୍ୱ ସାର । ହୃଦୟେ କରଇ ବିଚାର ॥
ତା ରୂପ ଧ୍ୟାନ ଯୋଗେ ଚିନ୍ତ । ସଂସାରେ ନରହେ ମୋ ମତ ॥

ଶ୍ରୀ ପାର୍ବତୀ ଉବାଚ

ଶୁଣି ବୋଲନ୍ତି ହେମ ବନ୍ତୀ । ହେ ସ୍ୱାମୀ ଶୁଣ ପଶୁପତି ॥
ସେ ପ୍ରଭୁ ନିତ୍ୟ ସୁଖ ଦାତା । ଅଖଣ୍ଡ ପୂର୍ଣ୍ଣ ସୁଖ କର୍ତ୍ତା ॥
ପ୍ରଧାନ ପୁରୁଷ ଈଶ୍ୱର । ମହିମା ନୋହଇ ଗୋଚର ॥
କି ରୂପେ ନାମ ତତ୍ତ୍ୱ ସାର । କି ଧ୍ୟାନ ରୂପ ମନ୍ତ୍ର ବର ॥
କି ରୂପ ଉଦ୍ଦେଶିତା ଜାଣି । ନରହେ ଭଜ ବେଣୁପାଣି ॥
ସନ୍ଦେହ ଲାଗଇ ମୋ ମନ । ସ୍ୱରୂପ କହ ବିଲୋଚନ ।୨୩।

ଶ୍ରୀ ଈଶ୍ୱର ଉବାଚ

ହସି କହନ୍ତି ସଦାଶିବ । ସଜନୀ ଶୁଣ କୃଷ୍ଣ ଭାବ ॥
ଯାହାର ଆଦି ଅନ୍ତ ନାହିଁ । ମନ ବଚନେ ଭେଟ କାହିଁ ॥
କେବଳ ଭକ୍ତଜନ ବନ୍ଧୁ । ନାମ କରୁଣା ମୟେ ସିନ୍ଧୁ ॥
ଗୋପ କାମିନୀ ଅର୍ଥେ ପ୍ରଭୁ । ଜନ୍ମିଲେ ଦେବକୀର ଗର୍ଭୁ ॥
ଅଦ୍ଭୁତ ବାଳକ ଶ୍ରୀହରି । ଅମ୍ବୁଜ ଲୋଚନ ମୁରାରି ॥
ସୁନ୍ଦର ଦିବେ ଭୁଜ ଚାରି । ଶଙ୍ଖ ସାରଙ୍ଗ ଗଦାଧାରୀ ॥
ଶ୍ରୀବତ୍ସ କଉସ୍ତୁଭ ହାର । କନକ ସୂତ୍ର ପିତାମ୍ବର ॥
ନୀଳ ଜୀମୂତ ଶ୍ୟାମରୂପ । ଲାବଣ୍ୟ ନିଧି ରସକୂପ ॥
ମଣି ମକର ମୁଦ୍ରା ଦୁଇ । ଶ୍ରବଣ ତଟେ ବିରାଜଇ ॥
ରତ୍ନ ମୁକୁଟ ଭାଲ ପରେ । ନୀଳ କୁନ୍ତଳ ମନୋହରେ ॥
କଙ୍କଣ କେୟୁର ଭୂଷଣ । ବିବିଧ ରତ୍ନ ଆଭରଣ ॥
ସୂତିକା ଗୃହ ଦିଶେ ଶୋଭା । ଦିବ୍ୟତେଜ ଦଶଦିଗ ପ୍ରଭା ।୩୪।

ଯେ ରୂପ ଚିତ୍ତେ ଯେ ସୁମରି । ସକଳ ଦୁଃଖ ଅପହରି ।୩୬।
ଭଗତ ଦୁଃଖ ହରିବାରେ । ତା ନାମ ସମ୍ବୋଧନ ହରେ ॥
ଯେ ହରି ନନ୍ଦ ଗୋପ ଘରେ । ବଢ଼ିଲେ କଂସ ରାଜା ଡରେ ॥
ଶ୍ୟାମ ସୁନ୍ଦର କଳେବର । ଶ୍ୟାମ ଜଳଦ ମନୋହର ॥
ଶ୍ୟାମ କବେଣୀ ଶ୍ୟାମ ବେଣୀ । ଶ୍ୟାମ ଚନ୍ଦ୍ରିକା ତହିଁ ଶୋଭା ॥
ଶ୍ୟାମ ଶ୍ରୀ କସ୍ତୁରୀ ତିଳକ । ଶ୍ୟାମ କପୋଳେ ଶ୍ୟାମ ରେଖ ॥
ଶ୍ୟାମ ତାଳ୍ପିକା ଗୁଞ୍ଜମାଳ । ଶ୍ୟାମ କୁଣ୍ଡଳ କର୍ଣ୍ଣେ ଝଳ ॥
ଶ୍ୟାମ ଅପାଙ୍ଗ ଶ୍ୟାମ ଆଖି । ଶ୍ୟାମ କପୋଳ ଉପଲେଖି ॥
ଶ୍ୟାମ ମୁରଲୀ ବିମ୍ବାଧରେ । ଶ୍ୟାମ ତ୍ରିଭଙ୍ଗି ଶ୍ରୀ ପଦ୍ମରେ ॥
ଶ୍ୟାମ ନପୁର ଶ୍ୟାମ ମାଟେ । ଶ୍ୟାମ କୁସୁମ ଦାମ ସାଜେ ॥
ଶ୍ୟାମ କଣ୍ଠେ ଶ୍ୟାମହାର । ଶ୍ୟାମଳ ବଦନ ସୁନ୍ଦର ।୪୬।
ନବଘନ ଶ୍ୟାମ ରୂପେ । ପାଶେ ଖେଳନ୍ତି ଗୋପ ପୋଏ ॥
ଗୋକୁଳ ନନ୍ଦନ ଶ୍ରୀହରି । ଶ୍ରୀକୃଷ୍ଣ ବୋଲି ନାମ ଧରି ॥
ପରମାନନ୍ଦ ସୁଖଧାମ । ହେ କୃଷ୍ଣ ସମ୍ବୋଧନେ ନାମ ॥
ଶ୍ରୀ ବୃନ୍ଦାବନ ମଧ୍ୟେ ଥାଇ । ପଞ୍ଚମ ରସେ ବେଣୁ ବାଇ ॥
ରାଧାରମଣୀ ଅନୁରାଗେ । ରମିଲେ ଗୋପୀ ଜନସଙ୍ଗେ ॥
ରାସ ରସିକ କୃଷ୍ଣ ଶ୍ୟାମ । ରାଧାରମଣେ ରାମ ନାମ ॥
ପ୍ରେମମନ୍ତ୍ରେ ନାମ ହୃଦସାର । ନିବାର କରନ୍ତେ ଉଦ୍ଧାର ॥
ପ୍ରଥମେ ନାମ ସପ୍ତମନ୍ତ୍ର । ଶିରେ ନବେସି କରପଦ ॥
ଶ୍ରୀବ୍ୟାସ ଗୌତମ ନାରଦ । ଋଷୟୁ ଅନୁଷ୍ଟୁପ ଛନ୍ଦ ॥
ରାଧିକାରମଣ ଶ୍ରୀକୃଷ୍ଣ । ହୃଦୟେ ଦେବ ନବାଧନ ॥
ଶ୍ରୀରାମ ବୀଜ ହରେଶକ୍ତି । ପରମ ପୁରୁଷାର୍ଥ ଯୁକ୍ତି ॥
ଶ୍ରୀକୃଷ୍ଣ ପ୍ରୀତି ବିନିଯୋଗ । ମନ୍ତ୍ରେ ଉଚ୍ଚରିବ ଷଡ଼ାଙ୍ଗ ॥
କରାଙ୍ଗ ନ୍ୟାସ ଯଥାବିଧି । ହୃଦୟେ କରପଦ ଛନ୍ଦି ।୫୯।

ନାସାଗ୍ରେ ବିନ୍ୟସ୍ତ ଲୋଚନ । କରିବ କୃଷ୍ଣ ରୂପଧ୍ୟାନ ।୭୦।
ନବ ଜଳଦ ଶ୍ୟାମ ମୁଖ । ସ୍ମିତ ଅଧରେ ମହାମୁଖ ॥
କନ୍ଦର୍ପ ଦର୍ପ ହେଳେ ଗଞ୍ଜି । ଅଶେଷ ଜନ ମନରଞ୍ଜି ॥
ଶ୍ରୀରାଧା ବାହୁ ମଧ୍ୟେ ଥାଇ । ପ୍ରେମାଳିଙ୍ଗନେ ମଗ୍ନ ହୋଇ ॥
ଅଧର ମୃତ ପାନରସେ । ପ୍ରମତ୍ତ ସୁଖ ଅଭିଳାଷେ ॥
ନିତ୍ୟନାୟିକା ନାନାରଙ୍ଗେ । ନବ କିଶୋରୀ ଅନୁସଙ୍ଗେ ॥
ପ୍ରେମ ଆନନ୍ଦ ଜଳେ ଭାସି । ବଲ୍ଲଭ ସଙ୍ଗେ ବ୍ରହ୍ମରାଶି ॥
ଧ୍ୟାନେ ଚିନ୍ତିବ ନିତ୍ୟ ରୂପ । କରୁଣା ନିଧି ରସ କୂପ ॥
କରିବ ନାମ ସଂକୀର୍ତ୍ତନ । ଶ୍ରୀ କୃଷ୍ଣ ଅଙ୍ଗେ ଦେଇ ମନ ॥
ଦେଶ ନିଅମ ପାତ୍ର ବିଧି । କୀର୍ତ୍ତନେ ନାହିଁ କାଳଶୁଦ୍ଧି ॥
ଆନନ୍ଦ ହୋଇ ଦିବାନିଶି । ଶ୍ରୀକୃଷ୍ଣ ନାମାମୃତ ଘୋଷି ।୭୦।
ଷୋଡ଼ଶ ନାମ ମନ୍ତ୍ରବର । ଅତି ଦୁର୍ଲ୍ଲଭ ପୁଣ୍ୟ ତର ॥
କୀର୍ତ୍ତନ ମାତ୍ରେ କୃଷ୍ଣ ପାଦେ । ଭକ୍ତି ଲଭଇ ଅପ୍ରମାଦେ ॥
ଆଗ ନିଗମ ସନ୍ତୁତେ । ବୈଷ୍ଣବ ଗ୍ରନ୍ଥ ତନ୍ତ୍ର ଯେତେ ॥
ଯେ କରେ ନାମ ସଂକୀର୍ତ୍ତନ । ତାହାକୁ ହୋଅନ୍ତି ପ୍ରସନ୍ନ ॥
ସକଳ ମନ୍ତ୍ର ଯନ୍ତ୍ର ବିଧି । ହେଳେ ସେ ଲଭେ ସର୍ବ ସିଦ୍ଧି ॥
ନାମର ଯେମନ୍ତ ମହିମା । କହିବା ଶୁଣ ଦେବୀ ଉମା ॥
ଈଶ୍ୱର ଅବତାର ଯେତେ । ଅଶେଷ ସାଧୁଜନ ହିତେ ॥
ବ୍ରହ୍ମାଣ୍ଡ ମଧ୍ୟେ ଦେହ ଧରି । ତ୍ରିଗୁଣ ଶକ୍ତିରେ ବିହରି ॥
ଯେଉଁ ରୂପରେ ଯେଉଁ ମନ୍ତ୍ର । ଅନ୍ୟ ରୂପକୁ ଅସନ୍ତୁତ ॥
ମନ୍ତ୍ର ଶକ୍ତିରେ ଯେ ବା ଭଜେ । ପ୍ରସନ୍ନ ହୋନ୍ତି ଦେବରାଜେ ॥
ଯେମନ୍ତେ ଯେ ରୂପ ପ୍ରମାଣ । ସେ ରୂପ ଭାବ ଅନୁକ୍ଷଣ ॥
ବିଧି ମାର୍ଗରେ ମନ ଦେଇ । ମନ୍ତ୍ର ସ୍ୱରୂପ ବିଚାରଇ ॥
ଗହନ ମନ୍ତ୍ର ନିର୍ଦ୍ଧାରଣେ । ଆଗମ ନିଗମ ପ୍ରମାଣେ ।୮୩।

କାଳ ନିୟମ ଦେଶ ପାତ୍ର । ମନ ନିର୍ମଳ ଶୁଦ୍ଧ ଗାତ୍ର ।୮୪।
ଯେତେ ପ୍ରକାରେ ମନ୍ତ୍ର ଭାବ । ବହୁତ କ୍ଳେଶେ ଭାବଲଭ୍ୟ ॥
ଯେଣୁ ଯେମନ୍ତ ମାର୍ଗେଟିକ । ଯେ ନାମ ଗୁଣେ କୃଷ୍ଣଭକ୍ତ ॥
ଧନ୍ୟ ଜୀବନ ତାହାଙ୍କର । ହୋଇଅନ୍ତି ଭବ ଜଳପାର ॥
ଈଶ୍ୱର ରୂପ ଅନୁଗତେ । ବୈଷ୍ଣବ ମନ୍ତ୍ର ଛନ୍ତି ଯେତେ ॥
ଅଶେଷ ମନ୍ତ୍ର ବୀଜ ଶକ୍ତି । ଅଶେଷ ରୂପ ଅନୁଗତି ॥
ସମସ୍ତେ ନାମର ଅଧୀନ । ଯେ କରେ ନାମ ସଙ୍କୀର୍ତ୍ତନ ॥
ଅଷ୍ଟାଙ୍ଗ ଯୋଗ ଲଯ୍ୟେ ଫଳ । ଅଶେଷ ମନ୍ତ୍ର ଯନ୍ତ୍ର ଫଳ ।୯୧।
ଗ୍ୟାନ ବିଗ୍ୟାନ ଭାବ ବିଧି । କୈବଲ୍ୟ ଭାବ ସର୍ବସିଦ୍ଧି ॥
ସକଳ ଭାବ ସେ ଲଭଇ । ଯେ ରୂପ ହୃଦରେ ଚିନ୍ତଇ ॥
ସେ ରୂପେ ପ୍ରସନ ଶ୍ରୀହରି । ଅଖିଳ ତାପ ଅପହରି ॥
ନାମରେ ଅଛି ସର୍ବ ଶକ୍ତି । ନାମରେ ଲଭେ ହରିଭକ୍ତି ॥
ନାମ ପରମାନନ୍ଦ ଧାମ । ନାମ ସେ ଆଗମ ନିଗମ ॥
ନାମ ସେ ସର୍ବ ଯୋଗଫଳ । ନାମ ସେ ଅଶେଷ ମଙ୍ଗଳ ॥
ନାମ ସେ ଗୁରୁ ପରାପର । ନାମ ସେ ଚତୁର୍ବର୍ଗ ବର ॥
ନାମ ସେ ମନ୍ତ୍ର ଯନ୍ତ୍ର ସାର । ବେଦ ଆଗମେ ଅଗୋଚର ।୯୯।
ନାମ ସମାନ ନୋହେ ହର । ନାମରେ ସର୍ବ ଶକ୍ତି ଧର ॥
ଶୁଣ ସଖୀ ନାମର ମହିମା । ଅନ୍ତକେ କରି ପାରେ ସୀମା ॥
ନାମକୁ ନୋହେ ସରସମ । ଗ୍ୟାନୀ ଅଗ୍ୟାନ ମତିଭ୍ରମ ॥
ବାଳୁତ ଭାବେ ବୋଲି ନାମ । ହେଲେ ବସନ୍ତି ବିଷ୍ଣୁ ଗ୍ରାମ ॥
ଅଗ୍ୟାନେ ଅମୃତ ଭୁଞ୍ଜଇ । ଯେସନେ ଅମର ତନୁ ହୋଇ ॥
ନ ଜାଣି ଅଗ୍ନି ଯେବେ ଛୁଇଁ । ସେ ତେଜ ଯେମନ୍ତ ଦହଇ ॥
ନ ଜାଣି ନାମ ସଙ୍କୀର୍ତନ । ଯେବେ କରନ୍ତି ପଣ୍ଡୁଜନ ॥
ବୈକୁଣ୍ଠ ମଧ୍ୟେ ସେ ବସନ୍ତି । ଶ୍ରୀକୃଷ୍ଣ ସଙ୍ଗେ ବିହରନ୍ତି ।୧୦୭।

ଯେତେକ ଦ୍ରବ୍ୟର ଯେତେକ ଗୁଣ । ସେ ଯେତ୍ନେ ନୋହେ ଅପ୍ରମାଣ ॥
ନାମ ଗୁଣରେ କୃଷ୍ଣ ବଶ୍ୟ । ଆନନ୍ଦେ କହେ ବ୍ୟୋମକେଶ ॥
ଯେତେକ ତ୍ରିବର୍ଗ ସୁଖ ଭୋଗେ । ଅଷ୍ଟାଙ୍ଗ ଅଇଶ୍ୱର୍ଯ୍ୟ ଯୋଗେ ॥
ବୁଦ୍ଧି ନଦେଖି କୃଷ୍ଣଭକ୍ତ । ସମସ୍ତ ସୁଖ ଭୋଗ ଭୁଞ୍ଜି ॥
ଅନ୍ତେ ଲଭଇ ହୃଷୀକେଶ । ସଂସାରେ ରହେ ପୁନ୍ୟ ଯଶ ॥
ନାମ ଭଜନ୍ତି ଯେତେ ଜନ । ତାଙ୍କ ଚରଣେ ଦେଇ ମନ ॥
ଶ୍ରୀକୃଷ୍ଣ ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

ଇତି ଶ୍ରୀମତ୍ପରମରହସ୍ୟେ ଶୈବାଗମେ ସପ୍ତନାମ
ନିର୍ଦ୍ଧାରଣେ ନାମ ଦ୍ୱିତୀୟୋଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ଦେବ୍ୟୁବାଚ

ବୋଲନ୍ତି ଦେବୀ ଭଗବତୀ । ଭୋ ଦେବ ଶୁଣ ପଶୁପତି । ୧ ।
ନାମ ମହିମା ଅସମ୍ଭବ । ମୋତେ କହିଲ ଯେତେ ଭାବ ॥
ଶ୍ରୀକୃଷ୍ଣ ନାମ ସଂକୀର୍ତ୍ତନ । ପବିତ୍ର କରେ ତ୍ରିଭୁବନ ॥
ଅଶେଷ ସାଧୁଜନ ମାନେ । ନାମ ଭଜିବେ କେ ବିଧାନେ ॥
ନାମ ସକଳ ରୂପ ମୟେ । ନାମେ ଅଶେଷ ଲୟେ ହୋୟେ ॥
ଯେ ନାମ ସପ୍ତ ମନ୍ତ୍ର ବରେ । ଧାରଣା ସମାଧି ବିଗ୍ରହେ ॥
କେବଳ ରୂପକୁ ଭଜନ୍ତି । ନାମ ଭଜିବେ ଦିବାନିଶି ॥
ନାମ ଯେ ସର୍ବରୂପ କର୍ତ୍ତା । ଅଖିଳ ସୁଖ ମୋକ୍ଷଦାତା ॥
ଈଶ୍ୱର ଯେତେ ରୂପ ଧରି । ବ୍ରହ୍ମାଣ୍ଡ ମଧ୍ୟେ ଅବତରି । ୯ ।
ସକଳ ଅବତାର ମାନ । ନାମ ଭିତରେ ହୋନ୍ତି ଲୀନ ॥
ରୂପ ଅଭାବେ ନାମ ରହି । ନାମେ ଅଶେଷ ଶକ୍ତି ବହି ॥
ନାମ ସମାନ ରୂପ ନୋହେ । ନାମ ଈଶ୍ୱର ଶକ୍ତି କହେ ॥

ଈଶ୍ୱର ଶକ୍ତି ଯେବା ବନ୍ଧ । ତହୁଂ ଅଧିକ ଶ୍ରେଷ୍ଠ ନାହିଂ ॥
ନାମ ଭଜନେ ସାଧୁଜନ । କି ରୂପେ କରିବେ ସେ ଧ୍ୟାନ ॥
କହିବ ମୋହର ଅଗ୍ରତେ । ସନ୍ଦେହ କରନ୍ତେ ଯେମନ୍ତେ ॥

ଈଶ୍ୱର ଉବାଚ

ଆନନ୍ଦେ କହନ୍ତେ ସଦାଶିବ । ସଜମା ଶୁଣ କୃଷ୍ଣଭାବ ।୧୬।

ଗୀତ

ଯାହା ତୁ ପଚ୍ଚରିଲୁ ମୋତେ । ଅଶେଷ ଜନଙ୍କର ହିତେ ।୧୭।
ଅତି ରହସ୍ୟ କୃଷ୍ଣ ରସ । ତୋ ଆଗେ କରିବି ପ୍ରକାଶ ॥
ସଂସାରେ ଛନ୍ତି ପ୍ରାଣୀ ଯେତେ । ଜନ୍ମ ମରଣ ଅନୁଗତେ ॥
ଘୋର ସଙ୍କଟେ ସେ ଭ୍ରମନ୍ତି । ବିଷ୍ଣୁ ମାୟାରୁ ନ ତରନ୍ତି ॥
ଯେଣୁ ସୁବୋଧ ଗ୍ୟାମା ଜନ । କରିବେ ନାମ ସଂକୀର୍ତ୍ତନ ॥
ରୂପ ଚିନ୍ତିବେ ଅବିଛିନ୍ନ । କୃଷ୍ଣରେ ନିବେଶିବେ ମନ ॥
ମନ ଟି ପ୍ରାଣୀଙ୍କ ଈଶ୍ୱର । ଅଖିଳ ଇନ୍ଦ୍ରିୟଙ୍କ ବର ॥
ମନ ଟି ବନ୍ଧ ମୋକ୍ଷ କର୍ତ୍ତା । ମନ ଅଗ୍ୟାନ ଗ୍ୟାନ ଦାତା ॥
ବିଷୟ ରସେ ଯେବେ ମନ । ଇନ୍ଦ୍ରିୟ ସୁଖେ ଅଚେତନ ॥
ଆତ୍ମାକୁ ମୋହ ପାଶେ ରୁନ୍ଧି । ଘୋର ସଙ୍କଟେ କରେ ବନ୍ଧ ॥
ବିଷୟ ପ୍ରପଞ୍ଚ ବସ୍ତୁରେ । ତ୍ରିଗୁଣ ଦୋଷ ଭୟଙ୍କରେ ॥
କାଳେ ପଡ଼ାଇ ଘୋର ତମେ । ଜନ୍ମ ମରଣ ପଥ ଭ୍ରମେ ।୨୮।
ବିଷୟ ଦୋଷ ତ୍ୟାଗୀ ଯେବେ । ନିର୍ମଳ ସତ୍ୟ ଅନୁଭବେ ॥
କୃଷ୍ଣରେ ନିବେଶଇ ମନ । ଲଭଇ ମୋକ୍ଷ ପଦେ ସ୍ଥାନ ॥
ଯେବା ଧାର୍ମିକ ସାଧୁ ପ୍ରାଣୀ । ଶ୍ରୀକୃଷ୍ଣ ଭାବ ପରିମାଣି ॥
ବଦନେ ଉଚ୍ଚାରିବ ନାମ । ଦକ୍ଷିଣ ହସ୍ତରେ ଗଣିମ ॥
ବାମହସ୍ତରେ ସୂତ୍ର କରି । ସୂତ୍ର ବାନ୍ଧିବ କରେ ଧରି ॥
ନାମ ଉଚ୍ଚରି ମୁଖ ଦ୍ୱାରେ । ଭଜିବ ବାହ୍ୟ ଅଭ୍ୟନ୍ତରେ ।୩୪।

ମନ ନିବେଶି କୃଷ୍ଣ ଅଙ୍ଗେ । ରୂପ ଚିନ୍ତିବ ଧ୍ୟାନ ଯୋଗେ ।୩୫।
ଧ୍ୟାନେ ଶ୍ରୀକୃଷ୍ଣ ରୂପ ଚିନ୍ତ । ନବ ଜଳଦ ଶ୍ୟାମ କାନ୍ତ ॥
ଚରଣେ ନେପୂର ଶବଜେ । ପୀତବସନ କଟି ମାଝେଁ ॥
ହୃଦେ ପଦକ ମଣିହାର । ଶ୍ରୀକରେ ବଂଶୀ ମନୋହର ॥
ବରହ୍ମ ପୁଚ୍ଛ ଶୋଭେ ଶିରେ । କୋଟି ମଦନ ରୂପ ହରେ ॥
ଯେ ରୂପ ଚିତ୍ତ ଚିନ୍ତାକରି । କର ଯୁଗଳ ଶିରେ ଧରି ॥
କରିବ କୃଷ୍ଣେ ନମସ୍କାର । ମନେ ଚିନ୍ତିବ ରୂପସାର ॥
ପ୍ରଥମ ଗ୍ରନ୍ଥ ଭଜିବାରେ । ମନ ନିବେଶିବ ଚଳରେ ॥
ନୀଳ କୁଞ୍ଚିତ ଗୁରୁ କେଶ । କେକୀ ଚନ୍ଦ୍ରିକା ଚୂଡ଼ା ଦେଶ ॥
ବନ କୁସୁମେ ପରିମଳ । ସୁନ୍ଦର ଦିଶେ ଚୂଳ ମୂଳ ।୪୦।
ଗଗନ ଇନ୍ଦ୍ର ଧନୁପାଶେ । ନୀଳ ଉତ୍ପଳ ଶୋଭା କି ସେ ॥
କେଶ କୁଞ୍ଚିତ ପ୍ରଭା ଦିଶେ । କାଳିନ୍ଦୀ ତରଙ୍ଗ ପ୍ରକାଶେ ॥
କି ଅବା ସୁଗନ୍ଧେ ଲୋଭିତ । ଭ୍ରମର ଶ୍ରେଣୀ ଯୂଥଯୂଥ ॥
କୃଷ୍ଣର ଚୂଳେ ଦେଇ ମନ । ପ୍ରଥମ ଗ୍ରନ୍ଥ ସଂକୀର୍ତ୍ତନ ॥
ମୁଖେ ଜପୁରି କୃଷ୍ଣ ନାମ । ସପୂର୍ଣ୍ଣେ କରିବ ପ୍ରଣାମ ॥
ଦ୍ୱିତୀୟ ଗ୍ରନ୍ଥ ଆରମ୍ଭରେ । ମନ ନିବେଶି ଶ୍ରୀ ମୁଖରେ ॥
ଶିରେ ଲଗାଇ କର ପଦ୍ମ । କରିବ ପ୍ରଣାମ ପବନ୍ତ ॥
ଚିନ୍ତିବ ଶ୍ରୀମୁଖ ମଣ୍ଡଳ । କପୋଳେ ଅଳକା ମଞ୍ଜୁଳ ॥
ଭ୍ରୂଲତା କାମଧନୁ ଗଞ୍ଜି । ଗୋପ ଯୁବତୀ ମନରଞ୍ଜି ॥
ତରୁଣ ପୁଣ୍ଡରୀକ ଦଳ । ନିନ୍ଦଇ ନୟନ ଯୁଗଳ ॥
ଅରୁଣ ଅପାଙ୍ଗ ଲହରି । ବନ୍ଧେ ଅମିୟ ଉଦ୍ଗାରି ॥
ସୁସଞ୍ଚ ନାସେ ମୋତି କର । ଦିଶଇ ଅତି ମନୋହର ॥
ଅମିୟ ଅଧର ବିକାଶି । ମଧୁର ଭାବେ ମନ୍ଦ ହସି ।୫୭।
ଅଖିଳ ଜନ ମନ ମୋହେ । କର୍ଣ୍ଣେ ମକର ମୁଦ୍ରା ଶୋହେ ॥

ମଣି କରଣ ଗଣ୍ଡ ତଟେ । ବିମ୍ବ ଲାବଣ୍ୟ ପର କଟେ ।୫୯।
କପୋଳେ ଗୋରଚନା ଚିତା । ଶ୍ୟାମ ଜଳଦେ ବିଦ୍ୟୁ ଲତା ॥
ଘୃତକ ପ୍ରାପ୍ତେ ଭକ୍ତ ଜନ । ଆନନ୍ଦେ ଭଲସଇ ମନ ॥
ଗଣ୍ଡ ଚିବୁକ ମନୋହର । ଗୋପୀଙ୍କ ମନ ବନ୍ଧଘର ॥
ମୁଖ ମଣ୍ଡଳ ଶୋଭାଧ୍ୟାନେ । ଦ୍ୱିତୀୟ ଗ୍ରନ୍ଥ ନାମ ପୂର୍ଣ୍ଣେ ॥
ତୃତୀୟ ଗ୍ରନ୍ଥ ସଂକୀର୍ତ୍ତନେ । ମନ ନିବେଶି କୃଷ୍ଣ ଧ୍ୟାନେ ॥
କୃଷ୍ଣ ଭକ୍ତର ନିଜ ମୁଖେ । ପ୍ରଣାମ କରି ମହାସୁଖେ ॥
ସ୍କନ୍ଧ ସନ୍ଧିରେ ବେନି ହସ୍ତେ । ଚିନ୍ତା କରିବ ଶୁଦ୍ଧ ଚିତ୍ତେ ॥
ଆଜାନୁ ଦୀର୍ଘ ସୁବିଶାଳ । ବଳିତ ମସୃଣ କୋମଳ ॥
ଗରୁଡ଼ ମଣି ସ୍ତମ୍ଭ ଜାଣି । ସୁରଙ୍ଗ ପଦ୍ମରାଗ ପାଣି ॥
କରଜ ତେଜ ଚନ୍ଦ୍ର କାନ୍ତି । ରତ୍ନ ମୁଦ୍ରିକା ବିରାଜନ୍ତି ॥
କଣ୍ଠପୂ କଙ୍କଣ ବଳୟ । ବିବିଧ ରତ୍ନ ମଣିମୟ ।୬୦।
ବାହୁ ଯୁଗଳେ ଦେଇ ମନ । ତୃତୀୟ ଗ୍ରନ୍ଥ ହରି ପୂର୍ଣ୍ଣ ॥
ଚତୁର୍ଥ ଗ୍ରନ୍ଥ ଭଜନରେ । କୃଷ୍ଣ ପ୍ରଣାମ କରି ଶିରେ ॥
କରିବ ନାମ, ସଂକୀର୍ତ୍ତନ । ହୃଦୟ ଶୋଭା କରି ଧ୍ୟାନ ॥
ନୀଳ ସୁନ୍ଦର ମନୋହର । ଯେସନେ ଶୋଭା ପ୍ରଭାକର ॥
ତା ପାଶେ ଉଦିତ କି ତାରା । କୌସ୍ତୁଭ ମଣି ମୋତିହାରା ॥
ଶ୍ରୀ ରାଧା ଭୁଜେ ଆଲିଙ୍ଗନ । ମର୍କତେ ଜଡ଼ିଲା କାଞ୍ଚନ ॥
ହୃଦୟ ଶୋଭା ଧ୍ୟାଇ ଚିତ୍ତେ । ଚତୁର୍ଥ ଗ୍ରନ୍ଥ ସମାପତେ ॥
କରିବ କୃଷ୍ଣେ ନମସ୍କାର । କର ପଲ୍ଲବେ ଦେଇ ଶିର ॥
ପଞ୍ଚମ ଗ୍ରନ୍ଥ ସଂକୀର୍ତ୍ତନ । ଉଦରେ ନିବେଶିବ ମନ ॥
ତ୍ରିବଳି ସଂକୀର୍ଣ୍ଣ ସୁନ୍ଦର । ଗମ୍ଭୀର ନାଭି ସରୋବର ॥
ରୋମ ଲତିକା ଥିବ ଦିଶି । ଯେସନ୍ତେ ଯମୁନା ଊର୍ମିରାଶି ।୮୧।
ଗୋପୀଙ୍କ ନୟନ ସଫରୀ । ସେ ଜଳେ ଆନନ୍ଦେ ସଞ୍ଚରି ॥

ଯେ ନାଭି ଅରବିନ୍ଦ କୋଷେ । ବ୍ରହ୍ମାଣ୍ଡ ଅମର ପ୍ରକାଶେ ।୮୨।
ଜଗତ ଜନ ମନ ଭୃଙ୍ଗ । ଦେଖଇ ନାଭି ପଦ୍ମ ସଙ୍ଗ ।।
ଉଦର ଧ୍ୟାନ ମନେ ଧରି । ପଞ୍ଚମ ଗ୍ରନ୍ଥ ପୂର୍ଣ୍ଣ କରି ।।
ଷଷ୍ଠ ଗ୍ରନ୍ଥର ସଂକୀର୍ତ୍ତନେ । ପ୍ରଣାମ କରି ଶୁଦ୍ଧ ମନେ ।।
କଟି ପ୍ରଦେଶ କରି ଧ୍ୟାନ । ବଦନେ କରିବ କୀର୍ତ୍ତନ ।।
ଶ୍ୟାମଳ ସଂକୀର୍ଣ୍ଣ ସୁନ୍ଦର । କୋଟି ବିକ୍ରମ ସିଂହବର ।।
ପୀତ ଦୁକୂଳ ବସେ ଶୋଭା । ନବଘନେ କି ବିଦ୍ୟୁତପ୍ରଭା ।।
କନକ ସୂତ୍ରେ ରତ୍ନ ମଣି । ସଘନ କ୍ୱଣିତ କଙ୍କିଣୀ ।।
କଟିତମ୍ୱ ଇନ୍ଦ୍ର ନୀଳମଣି । ସିଂହ ଆସନ ପ୍ରାପ୍ତେ ଜାଣି ।।
ନିତମ୍ୱ ଦେଶେ ନୀଳପ୍ରଭା । ଶରଣ ମହାଶୈଳ୍ୟ ଶୋଭା ।।
କଟି ପ୍ରଦେଶ ଧ୍ୟାନେ । ଷଷ୍ଠ ଗ୍ରନ୍ଥର ନାମ ପୂର୍ଣ୍ଣେ ।।
କୃଷ୍ଣ ନମିବ ଭାବ ବନ୍ଧି । ଆନନ୍ଦେ ଶିରେ କର ଦେଇ ।।
ସପ୍ତମ ଗ୍ରନ୍ଥ ସଂକୀର୍ତ୍ତନ । ଜାନୁ ଯୁଗଳେ ଦେଇ ମନ ।୯୫।
ମର୍କତ ବିପରୀତ ରମ୍ଭା । ଇନ୍ଦ୍ର ଉପଳ ସ୍ତମ୍ଭ ପ୍ରଭା ।।
ଶକ୍ର କୁଞ୍ଜର ହସ୍ତ ଜିଣି । ଆଚ୍ଛାଦି କାଞ୍ଚି ରତ୍ନମଣି ।।
ଭଗତ ହସ୍ତିନୀ କୁରମ୍ଭ । କିବା ଆଳାନା ବେନି ସ୍ତମ୍ଭ ।।
ଘନ ଜଘନ ଗଣ୍ଠି ଗୁଲ୍ଫ । କମଳାକାନ୍ତ ସୁଖତଲ୍ପ ।।
ପ୍ରଣାମ କରି ଗ୍ରନ୍ଥ ପୂର୍ଣ୍ଣେ । ଅଷ୍ଟମ ଗ୍ରନ୍ଥ ସଂକୀର୍ତ୍ତନେ ।।
ଶ୍ରୀକୃଷ୍ଣ କୀର୍ତ୍ତନ ଉଚ୍ଚାରି । ଶ୍ରୀ ପାଦ ପଦ୍ମ ଚିତ୍ତେ ଧରି ।।
ସୁନ୍ଦର ପବିତ୍ର ଚରଣ । ଅଖିଳ ମଙ୍ଗଳ କାରଣ ।।
ଅରୁଣ କୋକନଦ ଜାଣି । ଚରଣ ତଳ ରଙ୍ଗ ଠାଣି ।।
ନଖ ଚନ୍ଦ୍ରିକା ବିରାଜଇ । ଯେତେ କେ ବ୍ରହ୍ମ ପ୍ରକାଶଇ ।।
ଯେ ପଦେ ଅଷ୍ଟାଦଶ ଚିହ୍ନ । ସର୍ବଦା ଲକ୍ଷ୍ମୀ ସହ୍ୟଂ ଲୀନା ।।
ଯୋଗ ପୀଠରେ ସିଂହାସନ । ତହିଁ ଅମୂଲ୍ୟ ପଦ୍ମାସନ ।୧୦୭।

ସେ ପଦ୍ମ କେଶର ମଧ୍ୟରେ । ଷଟ କର୍ଣ୍ଣିକା ଅଭ୍ୟନ୍ତରେ ।୧୦୭।
ଯେ ପାଦ ପଦ୍ମେ ବେଦଶୋଭେ । ସମୀପେ ଷଟ ଶକ୍ତି ଉଭେ ॥
ତାପରେ ନାନା ଫଳାସିଆ । ଭାବେ ସେବନ୍ତି ଦେଶୁ ପାଣି ॥
ସେ ପାଦ ପଦ୍ମ କରି ଧ୍ୟାନ । କୀର୍ତ୍ତନ କରିବ ସଂପୂର୍ଣ୍ଣ ॥
ଶିଖି ଚନ୍ଦ୍ରିକା ଆଦି କରି । ପ୍ରତି ଅଙ୍ଗରେ ମନଧରି ॥
ଚରଣ ନଖ ଚନ୍ଦ୍ର ପ୍ରାୟେ । ମନ ନବେଶି କୃଷ୍ଣ ପାୟେ ॥
ଯେ ଭାବେ କରିବ କୀର୍ତ୍ତନ । ଶ୍ରୀ କୃଷ୍ଣ ଅଙ୍ଗେ ଥିବ ମନ ॥
ବୁଦ୍ଧି ନବେଶି ପଦ୍ମ ପାଦେ । ଶରଣ ପିବ ଅପ୍ରମାଦେ ॥
ପୁଲକ କରି ନିଜ ଦେହ । ଖଣ୍ଡିବ ଜଡ଼ ମାୟାମୋହ ॥
ଯେ ଅଷ୍ଟ ଗ୍ରନ୍ଥି ରୂପସାର । କୀର୍ତ୍ତନେ କରିବ ବିସ୍ତର ।୧୧୬।
ପୁଣି ଭଜିବ ଉତ୍କଣ୍ଠିତେ । ଶ୍ରୀ ପଦ୍ମପାଦ ଧରି ଚିତ୍ତେ ॥
ପୁଣିହିଂ ଜାନୁ କଟି ଭାଗ । ଉଦର ହୃଦୟ ସୁଭଗ ॥
ବାହୁ ଯୁଗଳ ମୁଖ ଶୋଭା । ଚମ୍ପକ କେଶ ପୁଚ୍ଛପ୍ରଭା ॥
ପୁଣି ଶ୍ରୀକୃଷ୍ଣ ନାମ ଭଜି । ଚୂଡ଼ା ଚନ୍ଦ୍ରିକା ଶୋଭା ହେଜି ॥
ଶ୍ରୀମୁଖ ଚନ୍ଦ୍ର କରିଧ୍ୟାନ । ବାହୁ ଯୁଗଳେ ଦେଇମନ ॥
ହୃଦୟ ସୂକ୍ଷ୍ମୋଦର ମଧ୍ୟ । କଟି ପ୍ରଦେଶ ଜାନୁ ଦୁଇ ॥
ପୁଣିହିଂ ଚରଣ ସରୋଜେ । ଚିତ୍ତ ନବେଶି ନାମ ଭଜେ ॥
ପାଦ ପଦ୍ମରୁ ଚୂଳଯାଏ । ଚୂଳରୁ ପାଦପଦ୍ମ ଲୟେ ॥
ଏ ବିଧି ଧାରଣା କୀର୍ତ୍ତନ । ଶ୍ରୀକୃଷ୍ଣ ରୂପ କରି ଧ୍ୟାନ ।୧୨୪।
ଯେ ଧ୍ୟାନ ଯୋଗୀଙ୍କ ଦୁର୍ଲଭ । ସେ ନାମ ଭଜନେ ସୁଲଭ ॥
ଯେ ନାମ ରୂପ ଏକ ମତେ । କୃଷ୍ଣ ଭଜନ୍ତି ଶୁଦ୍ଧ ଚିତ୍ତେ ॥
ସେ ଜନ କୃଷ୍ଣ ସମ ହୋନ୍ତି । ଅଖଣ୍ଡ ପ୍ରେମ ସେ ଲଭନ୍ତି ॥
ମସ୍ତକେ ଜଳ କୁମ୍ଭ ଘେନି । ଗମନ କରନ୍ତି କାମେନୀ ।୧୨୮।
ପଥେ ସକଳ କଥା କହି । ଉଦକ ଘଟେ ମନ ଥାଇ ॥

କାମେଷ୍ଟ ପ୍ରାପ୍ତେ ସାଧୁଜନେ । ବିଷୟୁ କରିବେ ବିଧାନ ।୧୩୧।
ନବେଶି କୃଷ୍ଣ ଧ୍ୟାନେ ମନ । ବଦନେ କରିବେ କୀର୍ତ୍ତନ ॥
ହରଷେ କହିଲେ ଈଶ୍ୱର । ଭଗତ ଭଜନ ପ୍ରକାର ॥
ଯେ କଥା ଶୁଣି ସୁଜ୍ଞଜନେ । ଶ୍ରୀକୃଷ୍ଣ ଭଜ ଶୁଦ୍ଧ ମନେ ॥
କୃଷ୍ଣ କୀର୍ତ୍ତନ ଧ୍ୟାନ ପଥ । କହିଲ ବିପ୍ର ଜଗନ୍ନାଥ ।୧୩୫।

ଇତିଶ୍ରୀମଦ୍ପୂରମ ରହସ୍ୟେ ଶୈବାଗମେ ଉମାମହେଶ୍ୱର
ସମ୍ବାଦେ ଅଷ୍ଟଗ୍ରନ୍ଥି କୀର୍ତ୍ତନ ଧ୍ୟାନ ନାମ ତୃଷ୍ଟଃସ୍ୟୋଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

ଏଥୁ ଅନ୍ତରେ ମୁନିଜନେ । ଗଉରୀ ଶଙ୍କର ବଚନେ ।୧।
ହରଷ ହୋଇ ପାଦଧରି । ମଧୁର ବଚନ ପଚାରି ॥

ପାର୍ବତୀ ଉବାଚ

ହେ ଦେବ ଦେବ ମହାଦେବ । ସର୍ବଗ୍ୟଂ କରୁଣା ସମ୍ଭବ ॥
ସଦୟ ଅନୁଗ୍ରହ ଚିତ୍ତେ । ପୂର୍ବେ କହିଲ ମୋ ଅଗ୍ରତେ ॥
ଶ୍ରୀକୃଷ୍ଣ ଗୋପୀଜନ ପାଇଂ । ଜାତ ହୋଇଲେ ଦେହବନ୍ଧ ॥
କି ପୁଣ୍ୟ କଲେ ଗୋପୀନାଥ । ଶ୍ରୀକୃଷ୍ଣ ହୋଇଲେ ପ୍ରସନ୍ନ ॥
ଯେବେ ରମିଲେ [illegible] ବ୍ରହ୍ମ ସଙ୍ଗେ । କାମ କଲ୍ଲୋଳ ରସରଙ୍ଗେ ।୨।
ଗୋପୀଙ୍କ ପର୍ବନ୍ନ ଚରିତ । ଶ୍ରବଣେ ବଳିଲା ମୋ ଚିତ୍ତ ॥
ବିସ୍ତାରି କହ ପ୍ରାଣନାଥ । ଜୀବନ କରିବ କୃତାର୍ଥ ॥
ପ୍ରିଆ ବଚନ ଶୁଣି କର୍ଣ୍ଣେ । ହର କହନ୍ତି ତୋଷମନେ ॥

ଶ୍ରୀ ଈଶ୍ୱର ଉବାଚ

ହେ ଦେବୀ ଶୁଣ କୃଷ୍ଣ କଥା । ଯେତେଣେ ଖଣ୍ଡିବ ଭବବ୍ୟଥା ॥
ଯେକ ଦିନକେ ଦେବଋଷି । ଶ୍ରୀକୃଷ୍ଣ ନାମ ମୁଖେ ଘୋଷି ॥
ବୀଣା ବଜାନ୍ତି କୁତୁହଳେ । ପ୍ରବେଶ ହୋଇଲେ ଗୋକୁଳେ ॥
ଦେଖିଲେ ବ୍ରଜ ମହୀପତି । ସମ୍ପୂର୍ଣ୍ଣ ତେଜ ନନ୍ଦ କାନ୍ତି ।୧୪।

ପଞ୍ଚମ ବରଷ ସଂପୂର୍ଣ୍ଣ । ରଙ୍ଗ ବସନ ପରିଧାନ ।୧୫।
ହ୍ରସ୍ୱ ବିଶାଳ ଲମ୍ବୋଦର । କଣ୍ଠେ ରୁଦ୍ରାକ୍ଷ ମାଳା ହାର ॥
କପୋଳେ ଗୋରଚନା ଚିତା । କନ୍ଧରେ ସୁବର୍ଣ୍ଣ ପଇତା ॥
ହସ୍ତରେ ଧରିଛନ୍ତି ଯଷ୍ଟି । ସୁନ୍ଦର ଦିଶେ ବ୍ରଜ ଗୋଷ୍ଠୀ ॥
ତେଜରା ମଧ୍ୟେ ଯେହ୍ନେ ଇନ୍ଦୁ । ଗୋପାଳ ବୃନ୍ଦ ମଧ୍ୟେ ନନ୍ଦ ॥
ଯେମନ୍ତ ସମୟେ ନାରଦ । ଆସନ୍ତି କରି ବୀଣା ବାଦ୍ୟ ॥
ଦୂରୁହୁଂ ଦେଖି ବ୍ରଜରାଜା । ମୁନିଚରଣେ କଲେ ପୂଜା ॥
ହରଷେ ନିଜ ଗୃହେ ନେଇ । ଅମୂଲ୍ୟ ଆସନେ ବସାଇ ।୨୨।
ପ୍ରଣାମ କରି ଋଷିପାଦେ । ବିନୟେ କହଇ ଆନନ୍ଦେ ॥
ହେ ଦେବ ଦେବ ମହାଋଷି । ମୋର ସୁଫଳ ଆଜନିଶି ॥
ମୋ ପୁରେ କଲ ଆଗମନ । ଧନ୍ୟ ହୋଇଲା ମୋ ଜୀବନ ॥
ନାରଦ ଆଗମନ ଜାଣି । ତକ୍ଷଣେ ପ୍ରଭୁ ଚକ୍ରପାଣି ॥
ରାମ ସହିତେ ବେନି ଭାଇ । ନମିଲେ ଋଷି ପାଦେ ଯାଇ ॥
ଦେଖି ନାରଦ ମହାମୁନି । ପରମାନନ୍ଦ ଭାବ ଘେନି ॥
ଅନ୍ତରେ କଲେ ନମସ୍କାର । ପ୍ରେମ ପୁଲକେ କଳେବର ॥
ଆନନ୍ଦ କେ ପାରିବ କହି । ବେନି ନୟନୁ ଜଳ ବହି ॥
କୋଟି ମଦନ ରୂପ ଶୋଭା । ଶିରେ ସେବତୀ ପୁଷ୍ପଗଭା ॥
ଭାଲ ଉପରେ ଗୁଞ୍ଜମାଳ । କର୍ଣ୍ଣେ କୁଣ୍ଡଳ ଢଳ ଢଳ ॥
କଣୟ କଙ୍କଣ ବାହୁଟି । ମୁଦ୍ରିକା ବିରାଜେ ଅଙ୍ଗୁଷ୍ଠି ॥
ନାସିକା ପୁଟେ ମୋତିବର । କଣ୍ଠେ ଲମ୍ବିଲ ରତ୍ନହାର ॥
କଟିରେ ଶୋହେ ପୀତ ପଟି । ଚରଣେ ନୂପୁର ପ୍ରକଟି ॥
ରାମହିଂ ହୋଇଛନ୍ତି ବେଶ । ପରିହରଣି ନୀଳ ବାସ ॥
କୋଟିଯେ ଚନ୍ଦ୍ର ଜିଣି ତନୁ । କର୍ଣ୍ଣେ କୁଣ୍ଡଳ ଦୁତିଭାନୁ ।୩୭।
ଶିରେ କୁସୁମ ସପ୍ତଶାଖା । ହୃଦେ କଦମ୍ବ ମାଳ ରେଖା ॥

ଚରଣେ ମଞ୍ଜିର ସୁନ୍ଦର । ଅନନ୍ତ ଅଂଶେ ଅବତାର ।୩୪।
ହରଷେ ଉଠି ମହାମୁନି । ରାମକୃଷ୍ଣଙ୍କୁ କୋଳେ ଘେନି ॥
ଲେଉଟି ବସିଲେ ଆସନେ । ନନ୍ଦଙ୍କୁ ବୋଲନ୍ତି ବଚନେ ॥
ଧନ୍ୟ ତୁ ବ୍ରଜ ମହୀପତି । ଧନ୍ୟ ଯଶୋଦା ମହାସତୀ ॥
ଧନ୍ୟ ଗୋକୁଳ ପୁରଜନ । ଧନ୍ୟ ଯମୁନା ବୃନ୍ଦାବନ ॥
ଧନ୍ୟ ହୋଇଲି ଆଜ ମୁହିଂ । ଶ୍ରୀ ରାମକୃଷ୍ଣ ମୁଖ ଚାହିଂ ॥
ଯେହାର ମହିମା ନ ଜାଣୁ । ତ୍ରୈନନ୍ଦ ପୁତ୍ର ପ୍ରାୟେ ମଣୁ ॥
ପୂର୍ବେ ଅର୍ଜିଲୁ କେତେ ତପ । କୃଷ୍ଣ ବୋଲନ୍ତି ତୋତେ ବାପ ।
ଅଖିଳ ମାୟା ମୋହ ତେଜ । କୃଷ୍ଣଙ୍କୁ ପୁତ୍ର ଭାବେ ଭଜ ।୪୦।
ଶିବ ବ୍ରହ୍ମାଦି ଉଜୁଛନ୍ତି । ମୁନୀନ୍ଦ୍ର ଗଣେ ଧ୍ୟାନେ ଚିନ୍ତି ॥
ତୋତେ ନୋହନ୍ତି କେହି ସମ । ଧନ୍ୟ ତୋହର ପୁଣ୍ୟକର୍ମ ॥
ମୁଂଯେ ଅଇଲି ତୋତେ ଦେଖି । ସଫଳ କଲି ଚର୍ମ ଆଖି ॥
ତୁ ମୋତେ ଅନୁଗ୍ରହ କର । ଆଜ ରହିବ ତୋ ମନ୍ଦିର ॥
ତୋହୋର ଯେତେ ବନ୍ଧୁବର୍ଗ । କୃଷ୍ଣେ କରନ୍ତି ଅନୁରାଗ ॥
ତାହାଙ୍କ ସତ୍ୟ ଜାଣିମାରେ । ମୋର ଭ୍ରମଣ ଗୋପ ପୁରେ ॥
ଗୋପବନ ନଗରେ ଯେତେ ଜନ । ପୂର୍ବେ ଯେ କଲେ କେତେ ପୁଣ୍ୟ
ବଚନେ କେ ପାରିବ କହି । ବ୍ରହ୍ମାଣ୍ଡ ମଧ୍ୟେ ଦେହ ବହି ॥
ଯେ ବ୍ରହ୍ମ ପଦଗତ ରଜ । ନ ଲଭେ ବ୍ରହ୍ମା ଶିବ ଅଜ ॥
ସେ ରଜେ ଅଭିଷେକ ହୋଇ । ଅଖିଳେ ଗୃହେ ଯେ ରହଇ ॥
ହସ୍ତରେ ଘେନି ସମାର୍ଜନୀ । ମନ୍ଦିର ମାର୍ଜନେ କାମିନୀ ॥
ସେ ବ୍ରହ୍ମରଜ ପକାବନ୍ତି । ଯୋଗୀନ୍ଦ୍ର ମାନେ ନ ଲଭନ୍ତି ॥
ଲୀଳା କରନ୍ତି ବ୍ରହ୍ମ ସଙ୍ଗେ । ଖେଳନ୍ତି ନାନା ରସ ରଙ୍ଗେ ॥
ଯେଯେ ତୋହୋର ବେନି ପୁତ୍ର । ନିର୍ମଳ ଶୁଦ୍ଧ ସତ୍ତ୍ୱ ଗାତ୍ର ॥
ଯେତି ଯୋଗୀଙ୍କ ଧ୍ୟାନ ଧନ । ବୈଷ୍ଣବ ଜନଙ୍କ ଜୀବନ ।୫୨।

ଯେତି ଅଖିଳ ଲୋକ ବନ୍ଧୁ । ଦାସବତ୍ସଳ କୃପାସିନ୍ଧୁ ।୭୩।
ନାରଦ ମୁଖୁଂ ବାକ୍ୟ ଶୁଣି । ଆନନ୍ଦ ମନେ ନନ୍ଦଗୁଣି ॥
ଯେ ଶୁଦ୍ଧ ସତ୍ତ୍ୱ ବ୍ରହ୍ମ ବେତା । ଯାପାଦେ ନମନ୍ତି ଦେବତା ॥
ବିନୟ କହୁଅଛି ତୋତେ । କେମନ୍ତେ କରିବ ସଂପ୍ରତେ ॥
ଯେ ମୋର ବାଳ ପୁତ୍ରକେନ । ଯେହାଙ୍କୁ ବ୍ରହ୍ମଭାବେ ଚିହ୍ନି ॥
ପ୍ରତକ୍ଷେ କହିଲେ ନାରଦ । ଯେତେ ବିଚାରି ଚିତ୍ତେନନ୍ଦ ॥
ମୁନି ଚରଣ ଶିରେ ଧରି । ବିନୟ ବଚନ ପଚାରି ।୭୪।

ନନ୍ଦ ଉବାଚ

ହେ ମୁନି କର ଅନୁଗ୍ରହ । କୁଶଳେ ଥାନ୍ତୁ ମୋର ପୁଅ ॥
କଲ୍ୟାଣ କରୁଥିବ ନିତ୍ୟେ । ରାମ ଗୋବିନ୍ଦ ବେନି ଅର୍ଥେ ॥
ଥୋକାଏ ଦିନ ରହି ଗୋପେ । ଯେବେ ଅଇଲ ଆମ୍ଭ ତପେ ॥
ତୁମ୍ଭେ ଜଗତ ହିତକାରୀ । ଆମ୍ଭଙ୍କୁ ଅନୁଗ୍ରହ କରି ॥
ରହିବ ଗୋପପୁର ମଧ୍ୟେ । ଆମ୍ଭେ ତରିବୁ ତୋ ପ୍ରସାଦେ ॥
ଯେମନ୍ତ କହି ନନ୍ଦ ରାଏ । ମୁନିଙ୍କି ପୂଜାବିଧି କଲେ ।୭୫।
ନନ୍ଦ ଉଗନ୍ତି ଭାବଯେନ । ନାରଦ ରହେ ଦିନତିନ ॥
ଶ୍ରୀ କୃଷ୍ଣବାଳ ଲୀଳାରସ । ନୟନେ ଦେଖି ମହା ତୋଷ ॥
ଯେମନ୍ତେ ନନ୍ଦ ରାଏ ରାଣୀ । ନାରଦ ଆଗମନ ଜାଣି ॥
ମନ୍ଦିରୁ ହୋଇଲେ ବାହାର । ମୁନିଙ୍କୁ କଲେ ନମସ୍କାର ॥
ଚରଣ ରଜ ପ୍ରକ୍ଷାଳିଲେ । ଆନନ୍ଦେ ଗର୍ଭିକୁ କ୍ଷେପିଲେ ॥
ଶିରେ ସିଞ୍ଚିଲେ ନେଇ ତାହା । କେ କହୁ ଯଶୋଦା ଉତ୍ସାହ ॥
ସହତେ ଦେବୀ ଯଶୋବନ୍ତୀ । ସୌଭାଗ୍ୟବନ୍ତୀ ପୁତ୍ରବନ୍ତୀ ॥
ପାଟେକ ପିନ୍ଧି ନଳନାରୀ । ପାଟେକ ଉପରଣି କରି ॥
ରତ୍ନ ବଳୟ ବେନିଭୁଜେ । ଚରଣେ ନୂପୁର ବିରାଜେ ॥
ଶ୍ରବଣେ ରତ୍ନକାପ ଦୁଇ । ଭାଲେ ସିନ୍ଦୂର ବିରାଜଇ ।୮୫।

କମଳ ନୟନେ କଜ୍ଜ୍ୱଳ । କବରୀ କୁସୁମେ ଉଜ୍ଜ୍ୱଳ ।୮୭।
ମୁଖ ଶରଦ ଚନ୍ଦ୍ର କାନ୍ତି । ନାସିକା ପୁଟେ ଗଜମୋତି ॥
ନିତମ୍ବ ପଟେ ରତ୍ନକାଞ୍ଚି । ଶୁଦ୍ଧ ସୁବର୍ଣ୍ଣ ତନୁ କାନ୍ତି ॥
ସଂକୀର୍ଣ୍ଣ ମଧ୍ୟ ସିଂହଠାଣି । ମନ୍ଥର ଗମନ ତରୁଣୀ ॥
ବୃଣାଳ ଘନ ହୃଦୟ ଭାଗେ । ଖୀର ସ୍ରବଇ କୁଚ ଯୁଗେ ॥
ପୁଲକ କୁଳ ଉଠେ ଘନ । ସଜଳ ସ୍ରବଇ ନୟନ ॥
ନାରଦ ଦେଖି କୃଷ୍ଣମାତ । ଆନନ୍ଦ ହୋଇଲେ ବହୁତ ॥
ବ୍ରହ୍ମା ସମାନେ ପୂଜା କରି । ନିର୍ମଳ ମନେ ନନ୍ଦ ନାରୀ ॥
ପୁତ୍ରଙ୍କ ମଙ୍ଗଳ କାରଣେ । ସେବନ୍ତି ମୁନିଙ୍କ ଚରଣେ ।୯୪।
ତୁମ୍ଭ କଲ୍ୟାଣେ ମହାମୁନି । କୁଶଳ ହୋନ୍ତୁ ପୁତ୍ରବେନି ॥
ଅସ୍ତୁ ବୋଇଲେ ଦେବଋଷି । ଆନନ୍ଦ ବେଦ ବାକ୍ୟଘୋଷି ॥
ଶ୍ରୀକୃଷ୍ଣ ମହିମା ନଜାଣି । ଯଶୋଦା ପୁତ୍ର ପ୍ରାୟେ ମଣି ॥
ବ୍ରହ୍ମରେ ପୁତ୍ର ଭାବେମୋହ । ହେଲେ ଖଣ୍ଡିବ ମାୟା ମୋହ ॥
ଗୋକୁଳ ବାସୀ ଯେତେ ଜନ । ସବୁର ଶ୍ରୀକୃଷ୍ଣ ଜୀବନ ॥
ସର୍ବେଦେହଂ ବସ୍ତୁ ତେଜ ବହ୍ନି । ଧ୍ୟାନ ଲୋଚନେ ମୁନି ଚିହ୍ନି ॥
ଅଦ୍ଭୁତ ଦେଖି ମହାଋଷି । ଏକାନ୍ତେ କୃଷ୍ଣ ସଙ୍ଗେ ବସି ॥
ନନ୍ଦ ନବରେ ବ୍ରଜନାରୀ । ଅନେକ ନଗାନ କଲେ ଶୋରୀ ॥
ଆସନ୍ତି ନନ୍ଦ ମନ୍ଦିରକୁ । ଦର୍ଶନ କରନ୍ତି କୃଷ୍ଣଙ୍କୁ ॥
କମଳା ଯେତେହେଁ ବସ୍ତ୍ର ଦେଖି । ଗୋପିକାମାନେ ତେତେହେଁ ସୁଖୀ ॥
ତା ଦେଖି ଦେବ ମୁନିବର । କୃଷ୍ଣଙ୍କୁ ବୋଲନ୍ତି ଉତ୍ତର ॥

ନାରଦଉବାଚ

ଶ୍ରୀଦେବ କମଳା ରମଣ । ତୁମ୍ଭେ ଅନାଦି ନାରାୟଣ ।୧୦୭।
ବୈକୁଣ୍ଠ ଭୁବନେ ତୋ ଘର । ଜନ୍ମିଲୁ ଦେବକୀ ଉଦର ॥
କି କାର୍ଯ୍ୟେ ବ୍ରଜ ପୁରେ ଆସି । ବଢ଼େୟୁ କଲ ବ୍ରହ୍ମରାଶି ॥

ସାଧୁଜନଙ୍କ ନିସ୍ତାରଣେ । ଦୁଷ୍ଟ ଦାନବ ନିବାରଣେ ।୧୦୯।
ମର୍ତ୍ତ୍ୟ ମଣ୍ଡଳେ ଅବତରି । ପୃଥିବୀ ସଙ୍କଟ ଉଦ୍ଧରି ॥
ତୁ ଯେ ଅନାଦି ନିର୍ବିକାର । ମୁଁ ତୋର ସର୍ବଦା କିଙ୍କର ॥
କପଟ ନ କରିବୁ ମୋତେ । ସ୍ୱରୂପ କହ ମୋ ଅଗ୍ରତେ ॥
ନାରଦ ବାକ୍ୟ ଶୁଣି କର୍ଣ୍ଣେ । କୃଷ୍ଣ କହନ୍ତି ତୋଷ ମନେ ॥

ଶ୍ରୀଭଗବାନୁବାଚ

ତୁ ଯେ ମୋହୋର ଆତ୍ମା ଅଂଶ । ପରମ ଭଗତ ବିଶ୍ୱାସ ॥
ତୋତେ ଅନ୍ତର ନାହିଁ ମୋର । ଶୁଣ କହିବା ମୁନିବର ॥
ଲକ୍ଷେ ଅଠାଣି ସହସ୍ର ମୁନି । ଭଜିଲେ ଯୋଗବଳଘେନି ।୧୧୭
କେରଜ ଗୁଣେ ଯଜ୍ଞ ବିଧି । ଲଭିଲେ ସ୍ୱର୍ଗ ଭୋଗ ସିଦ୍ଧି ॥
କେ ସତ୍ତ୍ୱ ଗୁଣେ ପରବେଶ । ଲଭିଲେ ସିଦ୍ଧି ଅଷ୍ଟାଦଶ ॥
ନିର୍ଗୁଣ ଭାବେ ବ୍ରହ୍ମରସ । କେ ମୋକ୍ଷ ପଦେ ଲଭେବାସ ॥
କେ ଲଭେ ସାଯୁଜ୍ୟ ସାମିପ୍ୟ । କେ ଲଭେ ସାଲୋକ୍ୟ ସାରୂପ୍ୟ ॥
ଯେ ରୂପେ ଚତୁର୍ବିଧି ମୁକ୍ତି । ଥୋକାଯେ ଲଭିଲେ ସଙ୍ଗତି ॥
ଥୋକାଯେ ଅଛନ୍ତି ତ୍ରିଗୁଣେ । ତ୍ରିଗୁଣ ସଂସାର ଭ୍ରମଣେ ॥
ଯେ ଅବା ଥିଲେ ଅବଶେଷ । ନିର୍ଗୁଣ ସତ୍ତ୍ୱରେ ପ୍ରବେଶ ॥
ବହୁତ କ୍ଳେଶେ ତପ ସାଧି । ମୋପାଦ ଯୁଗଳ ଆରାଧି ॥
ଲଭିଲେ ଶୁଦ୍ଧ ସତ୍ତ୍ୱ ପ୍ରେମ । ହେଲେ ଖଣ୍ଡିଲେ ଭବଭ୍ରମ ॥
ମୋର ନିର୍ଗୁଣ ରୂପ ଧ୍ୟାନେ । ମନ୍ତ୍ର ଜପିଲେ ଶୁଦ୍ଧ ମନେ ।୧୨୬।
ଅଖଣ୍ଡ ପ୍ରେମ ସତ୍ତ୍ୱ ରସ । ଆତ୍ମାରେ କଲେ ପରବେଶ ॥
ଷୋଳ ସହସ୍ର ମୁନିବର । କମଳା ଅଂଶେ ଅବତାର ॥
ଗୋପ କାମିନୀ ରୂପ ହୋଇ । ଜନ୍ମିଲେ ମୋର ଭାବ ବହି ॥
କାମ ଭାବରେ ମୋ ସଙ୍ଗମ । ଆଶାରେ ବଢ଼ାଇବେ ପ୍ରେମ ॥
ମୁଁ ତାଙ୍କ ଆଶ ପୂର୍ଣ୍ଣ ଅର୍ଥେ । ରମିବି ଶ୍ରୀ ବୃନ୍ଦାବନସ୍ତେ ॥

ମୋର ବଲ୍ଲଭୀ ରାଧାନାମ । ସେ ଜାତ ବୃଷଭାନୁ ଗ୍ରାମ ।୧୩୨।
ସେ ଯେ ଅଭିନ୍ନ ତନୁ ମୋର । ଲୀଳାରେ ଭିନ୍ନ କଳେବର ॥
ତାହାଙ୍କ ଭକ୍ତିଭାବ ବିନୁ । କେବା ଲଭିବ ମୋର ତନ ॥
ସେ ଯେ ଅଖଣ୍ଡ ପ୍ରେମଦାମ୍ନି । ଅଖିଳ ବ୍ରହ୍ମାଣ୍ଡ ମୋହିନୀ ॥
ଗୋପୀଙ୍କି କରି ଅନୁଗ୍ରହ । ଜନ୍ମିଲେ ବୃଷଭାନୁ ଗୃହ ॥
ସେ ନିତ୍ୟ ହ୍ଲାଦିନୀ ରାଧା । ଦର୍ଶନେ ଖଣ୍ଡେ ସର୍ବବାଧା ॥
ଆଉର ଯେତେ ଗୋପୀଜନ । ସେ ତୋତେ କରନ୍ତୁ ଦର୍ଶନ ॥
ତୋର ଦର୍ଶନେ ଶୁଦ୍ଧ ହୋନ୍ତୁ । ମୋ ପାଦକମଳ ଲଭନ୍ତୁ ॥
ତୁ ଯେ ମୋ ଅଂଶେ ଅବତାର । ଭଗତଜନ ମଧ୍ୟେ ବର ।୧୪୦।
ଯେ ତୋତେ କରନ୍ତି ଦର୍ଶନ । ଲଭନ୍ତି ମୋର ପାଦେ ସ୍ଥାନ ॥
ସେ ପୁଣ୍ୟବନ୍ତ ଗୋପୀବୃନ୍ଦ । ଦେଖିଲେ ହୋଇବେ ଆନନ୍ଦ ॥
ତୋ ପାଦେ କରିବେ ପ୍ରଣାମ । ଲଭିବେ ମୋ ତନୁ ସଙ୍ଗମ ॥
ସେ ମୋର ପ୍ରାଣ ମନୋହାରି । ତାହାଙ୍କୁ ଅନୁଗ୍ରହ କରି ॥
କହଇଂ ତୁମ୍ଭର ଅଗ୍ରତ । ଗମନ କର ବ୍ରହ୍ମାସୁତ ॥
କୃଷ୍ଣ ବଚନ ଶୁଣି କର୍ଣ୍ଣେ । ହରଷ ନାରଦର ମନ ॥
ନୟନୁ ନୀର ଧାର ବହେ । ପୁଲକ କୁଳ ନିଜ ଦେହେ ।୧୪୭
ଶ୍ରୀକୃଷ୍ଣ ଆଜ୍ଞା ଶିରେ ଧରି । ଗଲେ ନାରଦ ବ୍ରହ୍ମଋଷି ॥
ଆନନ୍ଦେ ବୁଲନ୍ତି ଗୋପରେ । ଭାବେ ରହନ୍ତି ଘରେ ଘରେ ॥
ଗୋପୀଏ ନାରଦଙ୍କୁ ଦେଖି । ଭାବେ ପୂଜନ୍ତି ଚନ୍ଦ୍ରମୁଖୀ ॥
ଈଶ୍ୱର ବୋଲନ୍ତି ଗୋଉମା । କେ କହୁ ଗୋପୀଙ୍କ ମହିମା ॥
ଭବାନୀ ଶୁଣି ଶିବବାଣୀ । ବୋଲନ୍ତି ଶିରେ ଦେଇ ପାଣି ॥

ଶ୍ରୀ ପାର୍ବତୀ ଉବାଚ

ହେ ଦେବ ତ୍ରିପୁର ଦହନ । ଯେତେ ଅଛନ୍ତି ଗୋପୀଜନ ॥
ତାହାଙ୍କ ପୂର୍ବ ପୁଣ୍ୟକଥା । ବିସ୍ତାରି କହ ମନ୍ମଥା ॥

କି ରୂପେ କି ପୁଣ୍ୟ ଆଚରି | ତୋଷିଲେ ଦେବ ନରହରି |୧୫୫
ନାରଦ ଦେଖି ଗୋପୀଜନ | କି ଭାବ କଲେ ସେ ବିଧାନ ||
ସମସ୍ତ କହିବ ବିସ୍ତାରି | ଜଣ ଜଣକେ ନାମ ଧରି ||
ଧନ୍ୟ ସେ ଗୋପାଙ୍ଗଣୀ ବୃନ୍ଦ | ରମିଲେ ପୂର୍ଣ୍ଣ ବ୍ରହ୍ମାନନ୍ଦ ||
ହେ ଦେବ କର ଅନୁଗ୍ରହ | ଗୋପାଙ୍କ ପୁଣ୍ୟ ମୋତେ କହ ||
ଈଶ୍ୱର ପାଦେ ଚିତ୍ତ ଦେଇ | ବିନୟ ହୋଇ ପଚାରଇ ||
ଶୁଣ ସୁଜନେ କୃଷ୍ଣ କଥା | ଯେତେଣ ଖଣ୍ଡିବ ଭବ ବ୍ୟଥା ||
ନିର୍ମଳ ଗୋପୀଙ୍କ ଚରିତ୍ର | ଶୁଣିଲେ ହୋଇବ ପବିତ୍ର ||
ଗୋପୀଙ୍କ ପାଦେ ଚିତ୍ତଦେଇ | ଦେଶ ଭଷାରେ ତାହା କହି ||
ଆନନ୍ଦେ ବିପ୍ର ଜଗନ୍ନାଥ | ଚିତ୍ତେ ଚିନ୍ତଇ ବେଣୁ ହସ୍ତ |୧୬୪

ଇତି ଶ୍ରୀମହାରମ ରହସ୍ୟେ ଶୈବାଗମେ ଉମା ମହେଶ୍ୱର
ସମ୍ବାଦେ ନାରଦ ଗମନେ ନାମ ଚତୁର୍ଥାଧ୍ୟାୟଃ |

## ପଞ୍ଚମ ଅଧ୍ୟାୟ

### ଈଶ୍ୱର ଉବାଚ

ଉମା ବଚନେ ସଦାଶିବ | କହନ୍ତି ଗୋପୀଙ୍କ ବିଭବ | ୧ |
ବୋଲନ୍ତି ଶୁଣ ମାହେଶ୍ୱରୀ | ପୂର୍ବେ ଅନେକ ବ୍ରହ୍ମଋଷି ||
ମାନସ ସରୋବରେ କୂଳେ | ତପ ସାଧିଲେ ଯୋଗବଳେ ||
ଶ୍ରୀକୃଷ୍ଣ ପାଦପଦ୍ମ ସେବି | ଧ୍ୟାନେ ଶ୍ରୀକୃଷ୍ଣ ରୂପ ଭାବି ||
ତାହାଙ୍କ ଭାବ ପ୍ରେକମନେ | କହଇ ଶୁଣ ସାବଧାନେ ||
ସୁଧର୍ମ ତପି ମହାମୁନି | ନିର୍ମଳ ଶୁଦ୍ଧ ସତ୍ତ୍ୱଗ୍ୟାନୀ ||
ବନଚର ବ୍ରହ୍ମମୟ ତନୁ | ତେଜେ ବରଜେ ଦିଶିଭାନୁ | ୨ |
କୃଷ୍ଣ ଚରଣ ମନେଧରି | ଅଦ୍ଭୁତ ତପସ୍ୟା ଆଚରି ||
ଊର୍ଦ୍ଧ୍ୱ ଚରଣ ଅଧୋମୁଖ | ବଚନେ କେ କହିବ ଦୁଃଖ ||

ବାମ ଭୁଜରେ ଭୂମିଧର । ଦକ୍ଷିଣ ହସ୍ତେ ହୋମ କର ।୧୦।
ଅନଳ କୁଣ୍ଡ ସଜ କର । ସମିଧ କାଷ୍ଠ ତହିଂଭର ।।
ଧୂମ୍ର ହଶଇ ଅଗ୍ନି ବର୍ଣ୍ଣ । ଆନନ୍ଦେ କରଇ ଆପ୍ୟାନ ।।
ତପସ୍ୟା ଶରୀର ତାହାର । ଦହି ନପାରେ ବୈଶ୍ୱାନର ।।
ଜପଇ ପଞ୍ଚଦଶାକ୍ଷର । କାମ ପୁଟିତ ମନ୍ତ୍ରବର ।।
ଚତୁର୍ଥ ଅନ୍ତେ କୃଷ୍ଣନାମ । ପ୍ରଣବ ଆଦ୍ୟ ତତ୍ତ୍ୱଧାମ ।୧୫।
ଅଗ୍ନି ମହିଷୀ ଅନ୍ତେରହି । ଯେ ପଞ୍ଚଦଶାକ୍ଷର କହି ।।
ଧ୍ୟାନେ ଜପଇ ମନ୍ତ୍ରବର । ଅନଳ କରଇ ଆହାର ।।
ହୃଦେ ଚିନ୍ତଇ କୃଷ୍ଣ ମୂର୍ତ୍ତି । ଶ୍ୟାମ ଜଳଦ ତନୁକାନ୍ତି ।।
ବଂଶୀ ବଦନ ବେଣୁପାଣି । ଚରଣ ତ୍ରିଭଙ୍ଗିମା ଠାଣି ।।
କନକ ସୂତ୍ର ପୀତପଟ । କୁଣ୍ଡଳ ଲୋଳେ କର୍ଣ୍ଣତଟ ।।
କେକୀ ଚନ୍ଦ୍ରିକା ମନୋହର । ହୃଦେ ପଦକ ରତ୍ନହାର ।।
ନବ-ଯୌବନୀ ମନୋହାରୀ । ଅଞ୍ଚଳ ଧରି କୋଳକରି ।।
ରସିକ ରାସର ସେ ଖେଳ । ମଦନ ସୁନ୍ଦର ଗୋପାଳ ।।
ସେ ରୂପେ ହୃଦେ ଧ୍ୟାନ କରି । ସହସ୍ରେ କଳ୍ପ ବ୍ରହ୍ମଚାରୀ ।୨୪।
ତପ ସମ୍ପୂର୍ଣ୍ଣେ ଦେହ ତେଜି । ଶ୍ରୀକୃଷ୍ଣ ପ୍ରେମ ରସେ ମଜି ।।
ଜନ୍ମ ଲଭିଲା ଗୋପପୁରେ । ସୁନନ୍ଦ ଗୋପାଳର ଘରେ ।।
ସୁନନ୍ଦା ନାମେ ଗୋପାଳୁଣୀ । ପ୍ରତକ୍ଷେ ଜାତ କମଳିଣୀ ।।
ନବ ତରୁଣ ରୂପ ଶୋଭା । କୋଟିଏ ଚନ୍ଦ୍ର ଜିଣି ପ୍ରଭା ।।
ଦହ କନକ ଗଉରଙ୍ଗୀ । ପ୍ରେମ ଭାବରେ କୃଷ୍ଣ ସଙ୍ଗୀ ।।
ଦୁହିତା ରୂପଗୁଣ ଦେଖି । ସୁନନ୍ଦ ଗୋପ ମହା ସୁଖୀ ।।
କୃଷ୍ଣଙ୍କ ବଚନେ ଦେବର୍ଷି । ଗୋପ ନଗର ଭ୍ରମି ଆସି ।।
ଆନନ୍ଦେ ସୁନନ୍ଦ ମନ୍ଦିର । ପ୍ରବେଶ ହୋଇ ମୁନିବର ।୩୨।
ଦୂରଂ ଦେଖିଣ ଗୋପବୀର । ଚରଣେ କଲା ନମସ୍କାର ।।

ପୂଜା କରଇ ଗୃହେ ନେଇ । ବୋଲଇ ଶିରେ କରଦେଇ ।୩୪।

ସୁନନ୍ଦା ଉବାଚ

ହେ ମୁନି କଲ୍ପତରୁ ଆଜ । ଗୃହେ ପଡ଼ିଲା ପାଦ ରଜ ॥
ମୋପୁରେ ରହ ଦିନା ଗୁରି । ତୋ ପାଦେ ସେବୁ ମୋକୁମାରୀ ॥
ଯେମନ୍ତ କହୁ ବୃଦ୍ଧ ଗୋପ । ଚଳିଲା ସୁନନ୍ଦା ସମୀପ ॥
ବୋଲଇ ଶୁଣସିଗୋ ମାତ । ମୋପୁରେ ବଜେ ବ୍ରହ୍ମାସୁତ ॥
ଯା ପାଦ ରଜ ଦେନ ଶିରେ । ପ୍ରାଣୀ ସକଳ ଦୁଃଖୁଂ ତରେ ॥
ସେ ବ୍ରହ୍ମଋଷି ବ୍ରହ୍ମାସମ । ଭାଗ୍ୟେ ମିଳିଲେ ଗୋପଗ୍ରାମ ।୪୦।
ଅତିଥିଭାବେ ପୂଜାକର । ଦୁରିତ ମାନ ଅପହର ॥
ଶୁଣିଣ ପିତାର ବଚନ । ଚଳିଲା ମୁନି ସନ୍ନିଧାନ ॥
ମୁନିଙ୍କି ନମସ୍କାର କରି । ହସ୍ତରେ ଧରି ଭୃଙ୍ଗାର ॥
ପ୍ରକ୍ଷାଳି ଚରଣ ଉଦକ । ଆନନ୍ଦେ ସିଞ୍ଚିଲା ମସ୍ତକ ॥

ସୁନନ୍ଦା ଉବାଚ

ବୋଲଇ କୃତାଞ୍ଜଳି ହୋଇ । ହେମୁନି କଲ୍ପତରୁ ମୁହିଂ ॥
ହେ ବ୍ରହ୍ମାସୁତ ତପଶାଳୀ । ମୁଂ ଯେ ଅଗ୍ୟାଂନ ଗୋପବାଳୀ ॥
ତୁମ୍ଭର ନ ଜାଣଇ ସେବା । କରୁଣା ଚିତ୍ତେ ଆଗ୍ୟାଂ ଦେବା।୪୭।
ଯେମନ୍ତ କରୁଣା କରିବ । ମୋ ଚିତ୍ତ କୃଷ୍ଣ ପାଦେ ଥିବ ॥
ସୁନନ୍ଦା ବାକ୍ୟ ଶୁଣି ହସି । ଅସ୍ତୁ ବୋଇଲେ ଦେବଋଷି ॥

ଶ୍ରୀନାରଦ ଉବାଚ

ତୋମନ କୃଷ୍ଣ ପାଦେ ଥାଉ । କୃଷ୍ଣ ସମ୍ଭୋଗ ଦେହ ହେଉ ॥
ଶୁଣି ଆନନ୍ଦ ଗୋପବାଳୀ । ନୟନୁ ଲୋତକ ଉଛୁଳି ॥
ସର୍ବାଙ୍ଗେ ପୁଲକ ଅଙ୍କୁର । ହୃଦେ ଭାବଇଂ ବେଣୁଧର ॥
ଋଷି ଚରଣେ ପୁଣ ପୁଣି । ପ୍ରଣାମ କରି କହେ ବାଣୀ ॥

ସୁନନ୍ଦା ଉବାଚ

ହେ ମୁନି କଲୁ ମୋତେ ରକ୍ଷା । ପୂର୍ଣ୍ଣ ହୋଇଲା ମନୋବାଞ୍ଛା ।୫୪।
ତୁମ୍ଭର ଅନୁଗ୍ରହ ଫଳ । କୃପା କରିବେ ନନ୍ଦ ବାଳ ॥
ଯା ପାଦ ଯୋଗୀ ଜନେ ଚିନ୍ତି । ଶଙ୍କର ବ୍ରହ୍ମାଦ ସେବନ୍ତି ॥
ସେ ଜାତ ନନ୍ଦଗୋପ ଘରେ । ଶରଣ ଗଲି ତା ପୟରେ ॥
ଆମ୍ଭେ ଯେ ଅଗମ୍ୟାଂନ ଯୁବତୀ । କେମନ୍ତେ ଜାଣି ମୁଂ ତା ଗତି ॥
ହେ ମୁନି କହିବ ଯେମ୍ଭ କାନ୍ତେ । ସନ୍ଦେହ ନ ରହେ ଯେମନ୍ତେ ॥
ଶୁଣିଲେ ସୁନନ୍ଦା ବଚନ । ଅନ୍ତରେ କଲେ ଅନୁମାନ ॥
ଧନ୍ୟ ସେ ଗୋପାଳ ନନ୍ଦନ । ସୁନ୍ଦର ତ୍ରୈଲୋକ୍ୟ ମୋହନ ।୬୧।
ଗ୍ୟାଂନେ ଜାଣିଲି ସଦାଶିବ । ଯାହା କହିଲ ଅସମ୍ଭବ ॥
ଶ୍ରୀକୃଷ୍ଣ କହିଲେ ଯେ ମୋତେ । ମୁଂ ଜାତ ଗୋପୀଙ୍କ ନିମନ୍ତେ ॥
ସେ କଥା ଦେଖିଲ ପ୍ରତକ୍ଷ । କରୁଣା କଲେ କମଳାକ୍ଷ ॥
ଯେସେ ସୁଧାର୍ଗ ତପୋବନ୍ତ । ସୁନନ୍ଦ ଗୋପ ଘରେ ଜାତ ॥
କମଳା ଅଂଶେ ଦେହ ବହି । ହେବେ ରମିବ ଭାବଗ୍ରାହୀ ॥
ମୋର ଜୀବନ ଅତି ଧନ୍ୟ । ପୂର୍ବେ ମୁଂ କଲି କେତେ ପୁଣ୍ୟ ॥
ଯେତେ ଅଛନ୍ତି ଗୋପନାରୀ । ଶ୍ରୀକୃଷ୍ଣ ଚନ୍ଦ୍ର ମନୋହାରୀ ॥
ନୟନେ ଦେଖି ନିସ୍ତରିବି । ଜୀବନ କୃତାର୍ଥ କରିବି ॥
ଏମନ୍ତ ଭାବି ଦେବ ଋଷି । ସୁନନ୍ଦା ମୁଖ ଚାହିଁ ଭାଷି ।୭୦।

ନାରଦ ଉବାଚ

ହେ ମାତ ଶୁଣ ମୋ ବଚନ । ତୋତେ ପ୍ରସନ୍ନ ଭଗବାନ ॥
ପୂର୍ବ ତପସ୍ୟା ଯୋଗ ବଳେ । ଜନମ ହୋଇଲୁ ଗୋକୁଳେ ॥
ଲଭିବୁ ବ୍ରହ୍ମ ସନାତନ । ସନ୍ଦେହ ନ କର ଗୋ ମନ ॥
ମୁଂ ତୋତେ କହିବଇଁ କିସ । ତୁ କି ନ ଜାଣୁ କୃଷ୍ଣ ରସ ॥
ମୋତେ ତୁ କମଳା ସମାନ । ତୋ ପାଦେ ଥାଉ ମୋର ମନ ॥

ସର୍ବାତ୍ମା ଭାବେ ତପ କର । ବରିଲୁ ନନ୍ଦ ସୁତ ବର ॥
ତୁ ଦେଖା ଚଞ୍ଚଳା ସ୍ୱରୂପ । ସୁଫଳ ହୋଇଲା ମୋ ତପ ।୭୭।
ନାରଦ ବାକ୍ୟ ଶୁଣି କର୍ଣ୍ଣେ । ସୁନନ୍ଦା ବସ୍ଥିରଇ ମନେ ॥
ଯେସେ ଶ୍ରୀକୃଷ୍ଣ ପାରଷଦ । ଯେସେ ଶ୍ରୀକୃଷ୍ଣ ଭକ୍ତପ୍ରଦ ॥
ମୋପ୍ରୀତି ଜାଣିମାର ଆଶେ । ଶ୍ରୀକୃଷ୍ଣ ପେଷିଲେ ମୋ ପାଶେ ॥
ଏଥିତେ ହରଷ ଗୋପସୁତା । ବୋଲଇ ଶୁଣ ବ୍ରହ୍ମ ବେତ୍ତା ॥

ସୁନନ୍ଦା ଉବାଚ

ବୀଣା ବଜାଇ ଦିବାନିଶି । ଶ୍ରୀକୃଷ୍ଣ ନାମାମୃତ ଘୋଷି ॥
ଆନନ୍ଦେ ଭ୍ରମ ତିନ ପୁରେ । ଜଗତ ଜନ ତାରିବାରେ ॥
ବୀଣା ଗୋଟିଏ ମୋତେ ଦିଅ । ଗୀତେ ଗାଇବି କୃଷ୍ଣ ଭାବ ।୮୪।
ଶୁଣି ନାରଦ ବ୍ରହ୍ମସୁତ । ମନରୁ ବୀଣା ଜାତ କରି ॥
ସୁନନ୍ଦା ହସ୍ତେ ସମର୍ପିଲେ । ନାରଦ ଅନ୍ତର୍ଦ୍ଧାନ ଗଲେ ॥
ସୁନନ୍ଦା ବୀଣା ହସ୍ତେ ଧରି । ଶ୍ରୀକୃଷ୍ଣ ପ୍ରେମ ଅନୁସରି ॥
ପଞ୍ଚମ ରାଗେ ଗୀତ ଗାଇ । ଶ୍ରୀକୃଷ୍ଣ ପାଦେ ମନ ଦେଇ ॥
ସୁନନ୍ଦା ଭାବ ମନେ ଜାଣି । ଗଲେ ସେ ଋଷି ଶିରୋମଣି ॥
ସୁଭଦ୍ର ନାମେ ଗୋପବୀର । ପ୍ରବେଶ ହୋଇଲେ ତା ପୁର ॥
ତପସ୍ୱୀ ସତ୍ୟତପା ମୁନି । ସୁଭଦ୍ର ଗୋପାଳ ନନ୍ଦନୀ ॥
ସୁଭଦ୍ରା ନାମେ ସୁକୁମାରୀ । ସୁଭଦ୍ର ଘରେ ଅବତରି ।୯୨।
ବହୁତ ତପ ଅଛି କରି । ଶ୍ରୀକୃଷ୍ଣ ପାଦ ଚିତ୍ତେ ଧରି ॥
ବାମ ଚରଣେ ଉଭା ହୋଇ । ଦକ୍ଷିଣ ପାଦ କାନ୍ଧେ ଦେଇ ॥
ନୟନ ପିଚ୍ଛୁଡ଼ା ନରହି । ଊର୍ଦ୍ଧ୍ୱ ବଦନେ ବାହୁତୋଳି ॥
କାମ ପୁଟିତ ଦଶାକ୍ଷର । ଗୋପାଳ ନାମ ମନ୍ତ୍ରବର ॥
ଜପଇ ଶୁଦ୍ଧ ସତ୍ତ୍ୱମନେ । ଗୋପାଳ ରୂପ ଶୋଭାଧ୍ୟାନେ ॥
ବୃକ୍ଷରୁ ଶୁଷ୍କ ପତ୍ର ଝଡ଼ି । ପବନ ବଳେ ଯେବେ ଉଡ଼ି ॥
ମୁଖେ ପଡ଼ଇ ବାୟୁ ବଶେ । ତାଗ୍ରାସକରେ ମନତୋଷେ ।୯୫।

ନୋହିଲେ ଆକାଶ ଭୂଷାର । ଆନନ୍ଦେ କରଇ ଆହାର ।୧୦୦।
ଚନ୍ଦ୍ରଇ ଗୋକୁଳ ବିହାରୀ । ଧରନ୍ତ ଚନ୍ଦ୍ର ବେଶ ଧାରୀ ॥
ବଳସ୍ତ୍ରୀ ଦେବିନ ବାହୁ ଧରି । ଆଶ୍ୱାସି ଆଲିଙ୍ଗନ କରି ॥
ପ୍ରିୟା କନ୍ଧରେ ଭୁଜ ଦେଇ । ମଧୁର ହାସେ ଗୀତ ଗାଇ ॥
ଅପର ହସ୍ତେ ବଂଶୀଧରି । ଚରଣ ଯୁଗେ ନୃତ୍ୟକରି ॥
ସ୍ୱେଦ ଗଳଇ ଭାଳପଟେ । ଲୁଳିତ ଅଳକା ପ୍ରକଟେ ॥
ଗୋପାଳ ବେଶେ ବ୍ରହ୍ମରାଶି । ଧ୍ୟାନେ ଚିନ୍ତଇ ଦିବାନିଶି ॥
ସ୍ୱେମନ୍ତେ ଦଶ କଳ୍ପଯାଏ । ଘୋର ଦୁଶର ତପ ସହେ ॥
ସେ ସତ୍ୟତପା ମୁନିବର । ଜନ୍ମିଲ ସୁଭଦ୍ରା ମନ୍ଦିର ।୧୦୮।
ତେଣୁ ସୁଭଦ୍ରା ନାମବହି । କେପାରି ରୂପ ଗୁଣ କହି ॥
ମର୍ତ୍ତ୍ୟେ ଶ୍ରୀକୃଷ୍ଣ ଚନ୍ଦ୍ରାକରି । ଯେସନ୍ତେ କମଳା ଅବତରି ॥
ବିଜୁଳି ତେଜ ଜିଣେ କାନ୍ତି । ଅଙ୍ଗ ଭୂଷଣ ଶୋଭାପାନ୍ତି ॥
ସୁଭଦ୍ର ଗୃହେ ନାନାରଙ୍ଗେ । ବିହାର ସଖୀବୃନ୍ଦ ସଙ୍ଗେ ॥
ହରଷେ ବ୍ରହ୍ମାର ନନ୍ଦନ । ପ୍ରବେଶ ସୁଭଦ୍ର ଦ୍ୱାରେନ ॥
ସୁଭଦ୍ର ନମସ୍କାର କରି । ବୋଲଇ ଶିରେ କର ଧରି ॥

## ସୁଭଦ୍ର ଉବାଚ

ତୋ ପାଦରଜ ତୀର୍ଥ ବର । ଅଶେଷ ମଙ୍ଗଳ ବିସ୍ତର ।୧୧୫।
ସେ ରଜ ପଡ଼େ ଯା ମନ୍ଦିରେ । ସେ ଧନ୍ୟ ସୁରାସୁରନରେ ॥
କି ଭାଗ୍ୟେ ପାଇଲି ରଜନୀ । ମୋ ପୁରେ ବିଜେ ବ୍ରହ୍ମମୁନି ॥
ମୁନିଙ୍କ ଘେନି ଗୋପନୀର । ପ୍ରବେଶ ହୋଇଲ ମନ୍ଦିର ॥
ଦିବ୍ୟ ଭୁବନେ ଠାବଦେଲ । ଈଶ୍ୱର ସମାନେ ପୂଜିଲ ॥
ତାର ସୁହୃଦ ଇଷ୍ଟବନ୍ଧୁ । କାମେମୀ ପୁଣ କୁଳବଧୂ ।୧୨୦।
ଦୁହିତା ଭଦ୍ରା ରୂପବନ୍ତି । ଆନନ୍ଦେ ମୁନିଙ୍କ ସେବନ୍ତି ॥
ବିନେକ ସୁଭଦ୍ର ନନ୍ଦନୀ । ବୋଲଇ ଶୁଣ ବ୍ରହ୍ମମୁନି ॥

## ସୁଭଦ୍ରା ଉବାଚ

ତୁମ୍ଭେ ଯେ ନାରାୟଣ ଦାସ । ଭଗତ ବିବେକ ଉଦାସ ॥
ସକଳ ଜନଙ୍କୁ ଉଦ୍ଧର । ଆନନ୍ଦେ ଭ୍ରମ ତିନିପୁର ॥
ତୁମ୍ଭେ ଯାହାକୁ କୃପାକର । ତାକୁ ପ୍ରସନ୍ନ ବେଣୁଧର ॥
ମୁଂ ଯେ ଅଗ୍ୟାଂନ ଗୋପନାରୀ । କୃଷ୍ଣଙ୍କୁ ମନେ ଅଛୁ ଧରି ॥
କୃଷ୍ଣ ଚରଣେ ମୋର ଆଶ । ସଂପୂର୍ଣ୍ଣ କର ବ୍ରହ୍ମାଶିଷ ॥
ମହତ ବଚନ ଅନ୍ୟଥା । ଶ୍ରୀକୃଷ୍ଣ ନକରେ ସର୍ବଥା ।୧୨୮।
ମୋହୋର ନଥିବ ସନ୍ଦେହ । କୃଷ୍ଣ କରିବେ ଅନୁଗ୍ରହ ॥
ତୁମ୍ଭେ ଯେ ଶ୍ରୀକୃଷ୍ଣ ବିଗ୍ରହ । ପ୍ରସାଦରେ କୃଷ୍ଣଭାବ ବହ ॥
ଶ୍ରୀକୃଷ୍ଣ ଭାବେ ଥିବ ଚିତ୍ତ । କଲ୍ୟାଣ କର ବ୍ରହ୍ମାସୁତ ॥

## ନାରଦ ଉବାଚ

ହସି ବୋଇଲେ ବ୍ରହ୍ମଋଷି । ଶ୍ରୀକୃଷ୍ଣ ଭଜ ଦିବାନିଶି ॥
ଶୁଣି ଗୋପୀକା ମନତୋଷେ । ଭାସିଲା କୃଷ୍ଣ ପ୍ରେମ ରସେ ॥
ନୟନୁ ଅଶ୍ରୁଜଳ ଗଳି । ପୁଲକ ଉଠେ ରୋମାବଳୀ ॥
ଚରଣେ କଲା ନମସ୍କାର । ମସ୍ତକେ ଦେଇ ନିଜକର ।୧୩୬।
ଦେଖି ନାରଦ ମୁନିବର । ବାଳ ବ୍ୟଞ୍ଜନ ଧରି କର ॥
ସୁଭଦ୍ରା ହସ୍ତେ ଦେଇ ଋଷି । ବୋଇଲନ୍ତି ଶୁଣ ଶୁଭ୍ରକେଶୀ ॥
ଏହି ଦିବ୍ୟ ବ୍ୟଜନ ସୁନ୍ଦର । ଯେବେ ଶ୍ରୀକୃଷ୍ଣ ସେବା କର ॥
ତୁମ୍ଭେ ଯେ କୃଷ୍ଣ ଚନ୍ଦ୍ର ପ୍ରିୟା । ମୋ ମାତ କର ମୋତେ ଦୟା ॥
ମୁଂ ଯେ ଶ୍ରୀକୃଷ୍ଣ ପାଦେଦାସ । ତୋ ଅନୁଗ୍ରହେ ମୋର ଆଶ ॥
ଏମନ୍ତ କହି ମୁନିବର । ଯେଠାରୁ ହୋଇଲା ଅନ୍ତର ॥
ବାଳ ବ୍ୟଜନ ହସ୍ତେ ଧରି । ଆନନ୍ଦେ ସୁଭଦ୍ରା କୁମାରୀ ॥
ଗ୍ଲାଡ଼ିଲା ଭବଭୟ ଦୁଃଖ । ଚଳେ ଚନ୍ଦ୍ରାଇ ପଦ୍ମମୁଖ ।୧୪୩।

ଯୋଗୀନ୍ଦ୍ର ନାମ ହବର୍ଦ୍ଧାନ । କପିଥ କରଇ ଭୋଜନ ॥
ଦୁଃସହ ମହା ଘୋର ତପେ । ବଂଶଜ ବର୍ଣ୍ଣ ମନ୍ତ୍ର ଜପେ ॥
ମଦନ ବୀଜ ମାୟାପର । ବ୍ୟୋମ ସହିତ ମନ୍ତ୍ରବର ॥
ମଧ୍ୟରେ ଦଶାକ୍ଷର ରହେ । ସ୍ୱାହାଅନ୍ତେ ନାମ ଶୋହେ ॥
ଗୋପାଳ ବଂଶଜ ଅକ୍ଷର । ଅଖିଳ ମନ୍ତ୍ର ସିଦ୍ଧି ବର ॥
ଜପଇ ହବର୍ଦ୍ଧାନ ଯତି । ଧ୍ୟାନେ ଶ୍ରୀକୃଷ୍ଣ ରୂପଚିନ୍ତି ॥
ଶ୍ରୀବୃନ୍ଦାବନ ମନୋରମ । ମାଧବୀ ମଣ୍ଡପ ଆଶ୍ରମ ॥
ତହିଁ ପଲ୍ଲବ ଶଯ୍ୟାପରେ । ଉତ୍ତାନ ଶୟନେ ହରଷରେ ।୧୫୧।
ଉନ୍ମାଦ ନିଜ ପ୍ରିୟାସଙ୍ଗେ । ବକ୍ଷୋଜ ଦେଇ ହୃଦଭାଗେ ॥
ଆନନ୍ଦି କରେ ଆଲିଙ୍ଗନ । ଗଣ୍ଡ ଚୁମ୍ବନ ମୁଖପାନ ॥
ଦଶ ନ ଛେଦେ ବଶ ଦେହ । ସର୍ବାଙ୍ଗେ ବିରାଜଇ ଲହ ॥
ସୁବାହୁ କମଳ ପ୍ରସାରି । ନିଜ ବଲ୍ଲଭ କୋଳେ ଧରି ॥
ମଧୁର ହାସ ମନୋହରି । ଧ୍ୟାନେ ତିଷ୍ଠଇ ମୁନିବର ॥
ଯେମନ୍ତେ ହବର୍ଦ୍ଧାନ ମୁନି । ତପ ସାଧିଲ କଳ୍ପଦିନ ॥
ସାରଙ୍ଗ ନାମେ ଗୋପବୀର । ଜନମ ହୋଇଲା ତା ଘର ॥
ତାହାର ନାମ ରଙ୍ଗାବଳୀ । ଶହ ଲେଖନ କର୍ମଶାଳୀ ।୧୫୪।
ଦନ୍ତାଗ୍ରେ ଅରୁଣିଶ ଚନ୍ଦ୍ର । ଅଙ୍ଗେ ସୁନ୍ଦର ନୋହେ ଇନ୍ଦ୍ର ॥
ନବ ତରୁଣ ରୂପକାନ୍ତି । ଦେଖିଲେ ବ୍ରହ୍ମା ମୋହଯାନ୍ତି ॥
ସେ ଯେ ଯୁବତୀ ପୁନ୍ୟସ୍ତୁତି । ବଚନ ଶହ ବେଣଧାରି ॥
ତା ପୁରେ ନାରଦ ବିଜୟେ । ଦେଖି ସାରଙ୍ଗ ଗୋପରାୟେ ॥
ଆନନ୍ଦେ କଲା ନମସ୍କାର । ବୋଲଇ ଶୁଣ ମୁନିବର ॥
ହେ ଦେବ ଦେବ ବ୍ରହ୍ମଋଷି । ମୋର ସୁଫଳ ଆଜ ନିଶି ॥
ଧନ୍ୟ ମୋହୋର ଆଜ ଦିନ । ଦେଖିଲି ବ୍ରହ୍ମାର ନନ୍ଦନ ॥
ବିନୟେ ବଚନେ ଆଦରି । ପୂଜିଲା ମୁନିଙ୍କ ପୟରି ॥

ସାରଙ୍ଗ ଗୋପ ଘରେ ତୋଷ । ନାରଦ ହୋଇଲେ ହରଷ ॥
ତାର ଦୁହିତା ରଙ୍ଗାବଳୀ । ମୁନିଙ୍କୁ କଲା ନଉଛୁଳି ॥
ବୋଲଇ କର ପଦ ଯୋଡ଼ି । ମୁନି ଚରଣ ତଳେ ପଡ଼ି ।୧୭୦।

ରଙ୍ଗାବଳୀ ଉବାଚ

ହେ ମୁନି ହୋଇଲି ମୁଂ ଧନ୍ୟ । ପୂର୍ବେ କଣ୍ଟିକେତେପୁଣ୍ୟ ।୧୭୧।
ତୁମ୍ଭ ପ୍ରସାଦେ ସର୍ବଶୁଭ । ଦୁର୍ଲଭ ହୋଇବ ସୁଲଭ ॥
ତୁମ୍ଭ ସନ୍ତୋଷେ ତପୋବନ୍ତ । କୃପା କରିବେ ନନ୍ଦସୁତ ॥
ତୁମ୍ଭେ ତାହାଙ୍କ ଅଂଶେ ଜାତ । ନିସ୍ତାର କରିବ ଜଗତ ॥
କୃଷ୍ଣ ସମ୍ଭୋଗ ମୋହଗ୍ରହ । ତୁମ୍ଭେ କରିବ ଅନୁଗ୍ରହ ॥

ନାରଦ ଉବାଚ

ହସି ବୋଲନ୍ତି ଦେବର୍ଷି । କୃଷ୍ଣଙ୍କୁ ଲଭ ଶୁଭକେଶୀ ॥
ନିମିତ୍ତ ମାତ୍ର ମୋ ଜୀବନ । ଗୋପ ଯୁବତୀ ଯେତେ ଜନ ॥
ପୂର୍ବେ ତପସ୍ୟା ଅଛ କରି । ତେଣୁ ଯୁବତୀ ରୂପ ଧରି ॥
ଜାତ ହୋଇଲ ଗୋପପୁରେ । କ୍ରୀଡ଼ା କରିବ ତା ସଙ୍ଗରେ ॥
ଶ୍ରୀ ବୃନ୍ଦାବନ ମଧ୍ୟେ ହରି । ତୁମ୍ଭ ସଙ୍ଗତେ ଲୀଳାକରି ॥
ପୂର୍ଣ୍ଣ କରିବେ ମନୋରଥ । ନାମ ହୋଇବ ଗୋପୀନାଥ ॥
ଯେମନ୍ତ କହି ଶିବପଟ । ହସ୍ତରେ ଦେନ ବ୍ରହ୍ମାଙ୍ଗୁଷ୍ଠ ॥
ବୋଲନ୍ତି ଶୁଣ ରଙ୍ଗାବଳୀ । ତୋତେ ପ୍ରସନ୍ନ ବନମାଳୀ ॥
ଯେ ଶିବପଟ ହସ୍ତେ ଧରି । ଶ୍ରୀକୃଷ୍ଣ ପାଦ ଚିନ୍ତା କରି ॥
ପଟେ ଲିଖିବୁ ରୂପସାର । ଧ୍ୟାନେ ହୋଇବୁ ତତପର ॥
ସେ ପଟ ଦେଖି ବ୍ରଜବାସୀ । ସୁଖେ ବଞ୍ଚିବେ ଦିବାନିଶି ॥
ତୁ ଚିତ୍ର କର୍ମରେ କୁଶଳ । ଚିତ୍ରିଣ କର୍ମା ନନ୍ଦବାଳ ।୧୮୭।
ଆଜ ସେ ଚିତ୍ରରୂପ ଧରି । ସକଳ ଜନଙ୍କୁ ନିସ୍ତାରି ॥
ନାରଦ ବାକ୍ୟେ ରଙ୍ଗାବଳୀ । ଅଶ୍ରୁ ପୁଲକ ପ୍ରେମାବଳୀ ॥
ନାରଦ ଶିବପଟ ଦେଇ । ଚଳିଲେ ଅନ୍ତର୍ଦ୍ଧାନ ହୋଇ ॥

ହସ୍ତରେ ଚନ୍ଦ୍ରପଟ୍ଟ ଘେନ । ଆନନ୍ଦ ସାରଙ୍ଗ ନନ୍ଦନ ॥
ଶ୍ରୀକୃଷ୍ଣ ରୂପ ତହିଂ ଲେଖି । ନୟନେ ଚନ୍ଦ୍ରରୂପ ଦେଖି ॥
ହରଷ ହୋଇଲେ ସକଳ । ପଟ୍ଟରେ ପୂଜନ୍ତି ଗୋପାଳ ॥
ବ୍ରହ୍ମା ବଚନେ ଦେବହର । ଚନ୍ଦ୍ର ପ୍ରତିମା ରୂପ ଧର ॥
ନାରଦ ବଚନେ ପ୍ରମାଣ । ଚନ୍ଦ୍ର ମୂରତି ନାରାୟଣ ।୧୯୫।
ଶୁଣ ସୁଜନେ କୃଷ୍ଣ ରସ । ଗୋପୀଙ୍କ ଗୁଣ କର୍ମ ଯଶ ॥
ମୁଂ ଯେ ଅଗ୍ୟାଂନ ଦୁଷ୍ଟମତି । ନ ଜାଣି କୃଷ୍ଣ ଭାବ ଗତି ॥
ଆଗମ ନଗମେ ଗୁପତ । ଦେଶ ଭାଷାରେ କଲି ଗୀତ ॥
ଭୟ କରଇ କହିବାକୁ । ଅଗ୍ୟାଂନୀ ପାଷଣ୍ଡ ଆମ୍ଭାକୁ ॥
ଶ୍ରୀ ଶୁକ ନ କହିଲେ ଯାହା । ମୁଂ କମ୍ପା କହୁଅଛି ତାହା ॥
ଅତି ସାହାସ କର୍ମ କଲେ । କେମନ୍ତେ ତରିବି ମୁଂ ଭଲେ ॥
ପୁଣି ବକ୍କୁର କଲି ଚଉ । ଶଙ୍କର କହିଲେ କେମନ୍ତେ ॥
ମୁଂ ତାହା କରିବି ପ୍ରକାଶ । ସାଧୁହୋଇବେଶୁଣିତୋଷ ।୨୦୩।
ପୁଣି କରଇ ମହାଭୟେ । ତରନ୍ତେ କମ୍ପେ ମୋରକାୟେ ॥
ମୋତ୍ତର କୋଟିକେ ଅନ୍ତର । ସାହସ କଲି ଅଗୋଚର ॥
ଯେ ଗୋପୀ କୃଷ୍ଣ ମନୋହରୀ । ତାହାଙ୍କ ଭାବ ଅନୁସରି ॥
ଧ୍ୟାନ ଧାରଣା ମନ୍ତ୍ରଭାଗ । ଅଷ୍ଟାଙ୍ଗ ଯୋଗ ସିଦ୍ଧି ଭୋଗ ॥
ଯେ ଭାବ ହସାରେ କହିଲେ । ସୁଗ୍ୟାଂନୀ ତରିବେ ଶୁଣିଲେ ॥
ଯାହାକୁ କୃଷ୍ଣ କୃପା ଥିବ । ଯେ ରସେ ତା ମନ ରସିବ ॥
ଆନନ୍ଦେ ଭଜିବ ଗୋବିନ୍ଦ । କଟିବ ମାୟା ମୋହ ଫାନ୍ଦ ॥
ସୁଗ୍ୟାଂନୀ ଜନଙ୍କର ଅର୍ଥେ । ଶ୍ରୀକୃଷ୍ଣ ଧ୍ୟାନ ମନ୍ତ୍ର ପଥେ ॥
କହିଲେ ନ ପାଇବି ଦୋଷ । ସାଧୁ ହୋଇବେମୋତେ ତୋଷ ॥
ତାଙ୍କ ସନ୍ତୋଷେ ଦେବ ହରି । ମୋର ଅପ୍ରାଧ କ୍ଷେମାକରି ॥
ସୁଦୟା କରିବେ ଗୋବିନ୍ଦ । ମନ ମୋହୋଇଲା ଆନନ୍ଦ ।୨୧୪।

ଶାସ୍ତ୍ର ପଠନେ ଯୋଗ୍ୟ ନୋହି । ତେଣୁ ପ୍ରାକୃତ ଭାଷା କହି ॥
ମିଶାଇ ଅଛି କୃଷ୍ଣରସେ । ଶୁଣି ସୁଜନ ମନ ତୋଷେ ॥
ଗୋପୀଜନଙ୍କ ପୁଣ୍ୟ କଥା । ପାର୍ବତୀ ଆଗେ ପଞ୍ଚମଥା ॥
କହନ୍ତି ପରମ ସନ୍ତୋଷେ । ପାର୍ବତୀ ବୋଲନ୍ତି ହରଷେ ॥
ହେ ପ୍ରାଣନାଥ ଯୋଗେଶ୍ୱର । ଗୋପୀଜନଙ୍କ ପୁଣ୍ୟସାର ॥
ଶ୍ରବଣେ ବଳିଲା ମୋ ମତି । ବିସ୍ତାରି କହ ପଶୁପତି ॥
ବ୍ରହ୍ମାନନ୍ଦନ ଦେବଋଷି । ଗୋପ ନଗର ଭ୍ରମି ଆସି ।୨୨୯।
କି ଭାବ ଜାଣିଲେ ମନରେ । ପ୍ରବେଶ ହୋଇଲେକି ଘରେ ॥
କେ ପୁଣ୍ୟବନ୍ତ ଗୋପନାରୀ । କି କି ତପ ସେ ଛନ୍ତି କରି ॥
ନାରଦ ମୁନି ଦରଶନେ । କି ଭାବ ଲଭି ଗୋପୀଜନେ ॥
ଭାବନ୍ତି ଶ୍ରୀନନ୍ଦ ନନ୍ଦନ । ସକଳ କହ ତ୍ରିଲୋଚନ ॥
ଗିରିଜା ବଚନେ ଶଙ୍କର । କହନ୍ତି କୃଷ୍ଣରସ ସାର ॥
ସୁଜନେ ଶୁଣ କୃଷ୍ଣକଥା । ହେଲେ ନାଶିବ ଭବବ୍ୟଥା ॥
ସୁନନ୍ଦା ଭଦ୍ରାଲଙ୍ଗା ବଳୀ । ଆଦର ଯେତେ ଗୋପବାଳୀ ॥
ତାହାଙ୍କ ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

ଇତିଶ୍ରୀମତ୍ପରମରହସ୍ୟେ ଶୈବାଗମେ ଗୋପିକାନୁ ଭାବବର୍ଣ୍ଣନେ ନାମ ପଞ୍ଚଶୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ଶ୍ରୀ ଈଶ୍ୱରୋବାଚ

ଜାବାଳି ନାମେ ମୁନିବର । ତା ପୁଣ୍ୟ କେ କରୁ ଗୋଚର ॥
ସେ ବ୍ରହ୍ମବାଦୀ ବ୍ରହ୍ମଗ୍ୟାନୀ । ଅଷ୍ଟାଙ୍ଗ ଯୋଗ ଲଗ୍ନେ ଯେନ ॥
ତପସ୍ୟାବଳେ ବ୍ରହ୍ମଧାମ । ଆତ୍ମାରେ କଲା ସମାଗମ ॥
ଅଧୀନ କଲା ପୂର୍ଣ୍ଣଶକ୍ତି । ସୃଷ୍ଟି ସର୍ଜନା ଲୟସ୍ଥିତି ।୪।

ବ୍ରହ୍ମା ଶଙ୍କର ବିଷ୍ଣୁ ତିନ । ଆମ୍ଭରେ ସମଭାବ ଚିହ୍ନ ॥
ତିନ ଦେବତା ଶକ୍ତି ବନ୍ଦେ । ପରମାନନ୍ଦ ସୁଖେ ରହେ ॥
ସେ ବ୍ରହ୍ମର୍ଷି ଯୈକ ଦେଲେ । ବ୍ରହ୍ମାଣ୍ଡ ଧାମ ପ୍ରସଙ୍ଗେ ॥
ଭ୍ରମଇ ସକଳ ଭୁବନ । ଦେଖଇ ଅଲକ୍ଷିତ ସ୍ଥାନ ॥
ପାତାଳ ଭୂମି ଅନ୍ତରୀକ୍ଷ । ଗମନ କରଇ ପ୍ରତକ୍ଷ ॥
ଉଦୟେ ପର୍ବତ ଶୃଙ୍ଗରେ । ସେ ମହା ଅରଣ୍ୟ କନ୍ଦରେ ॥
ପ୍ରବେଶ ହୋଇଲେ ଜାବାଳ । ଦେଖିଲେ ଶୃଙ୍ଗ ପୁଣ୍ୟସ୍ଥଳୀ ।୧୧।
ସୁବର୍ଣ୍ଣମୟ ଭୂମିଦେଶ । ପାଷାଣ ରତ୍ନଙ୍କ ଆଭାସ ॥
କର୍ପୂର ରଜ ସମଧୂଳି । ଦିଶନ୍ତେ ନବୀନ ଅଂଶୁମାଳୀ ॥
ନବ ପଲ୍ଲବ କଳ୍ପଦ୍ରୁମ । କିବା ନନ୍ଦନ ବନ ସମ ॥
ବିସ୍ତାର ଯୋଜନ ଆୟୁତ । ଦେଖି ବୋଲନ୍ତି ତପୋବନ୍ତ ॥
ଦେବେ ଦାନବେ ଗମ୍ୟନୋହେ । ଧନ୍ୟ କାନନ ମନ ମୋହେ ॥
ପ୍ରଳୟ ବାଧା ନାହିଁ ଯେଉଁ । ଗମନ କରି ଜାଣିପଥ ॥
ମଧ୍ୟେ ଦେଖିଲେ ସରୋବର । ଅମୃତ ସମ ଯହିଁ ନୀର ॥
ସୁଗନ୍ଧ କମଳ କାନନ । ଭ୍ରମର କରେ ମଧୁପାନ ॥
ଶୋଭା ଦିଶନ୍ତି ହଂସ ପନ୍ତି । ଗଗନେ ବଳାହକ ଭ୍ରାନ୍ତି ॥
ରତ୍ନ ପାବଚ୍ଛ ତଟକାନ୍ତି । ପବନ ବହେ ମନ୍ଦଗତି ॥
ସେ ସରୋବର ରତ୍ନକୂଳେ । କୋକିଳ ଗଣ କୁହୁହୋଳେ ॥
କରନ୍ତି ମଧୁର ଶବଦ । ଯେସନ୍ତେ ଗନ୍ଧର୍ବ ବୀଣାବାଦ୍ୟ ॥
ବ୍ୟାପି ପଶ୍ଚିମଦିଗ କୂଳେ । ସୁନ୍ଦର ବଟ ବୃକ୍ଷ ମୂଳେ ॥
ରତ୍ନ ବେଦିକା ବିରାଜଇ । ଦିଶନ୍ତେ କୋଟିଏ ଚନ୍ଦ୍ର ଉଇଁ ॥
ସେ ରତ୍ନ ବେଦିକା ଉପରେ । ଯୈକ କାମେମା ତପକରେ ।୧୨।
ସୁନ୍ଦର ତରୁଣ ବୟସୀ । ଲାବଣ୍ୟ ଧାମ ରୂପରାଶି ॥
ଅଙ୍ଗ କିରଣ ତେଜ ଅଂଶୁ । ନିନ୍ଦଇ କୋଟିଏ ସୁଧାଂଶୁ ॥

ସହସ୍ରେ ଚନ୍ଦ୍ର ସୂର୍ଯ୍ୟ ଜିନୁ । ବଦନେ ବିରାଜେ ତାର ତନୁ ॥
ପଦ୍ମ ଆସନେ ବସି ବାଳୀ । ଧ୍ୟାନେ କରିଣ କୃତାଞ୍ଜଳି ॥
ନୟନ କମଳ ସଂକୋଚି । ନିଶ୍ୱାସ ରୁନ୍ଧି କାଳ ହିତ ॥
ନିଦ୍ରା ଆହାର ଅପହରି । ନିଶ୍ଚଳ ସମାଧି ବିସ୍ତରି ॥
ରୂପଲାବଣ୍ୟ ଦେଖି ତାର । ଜାବାଳି କରନ୍ତି ବିଚାର ॥
ଧନ୍ୟ ସୁବର୍ଣ୍ଣ ରତ୍ନ ରାଶି । ଅଷ୍ଟାଙ୍ଗ ଯୋଗ ବଳେ ବସି ॥
ଧ୍ୟାନେ ଚିନ୍ତଇ ତତ୍ତ୍ୱସାର । ମୋତେ ହୋଇଲା ଅଗୋଚର ।୩୫।
ଲକ୍ଷ୍ମୀଠାରୁ କେ ଅଛି ଅଧିକ । ଦେଖିଲେ ମୋହଇ ତିନିଲୋକ ॥
ଯେ ଲକ୍ଷ୍ମୀ ବିଷ୍ଣୁର ବଲ୍ଲଭା । ତାହାଙ୍କ ଭଗୁଣି ଅଙ୍ଗ ପ୍ରଭା ॥
ପାର୍ବତୀ ରୁଦ୍ର ମନୋହାରୀ । ପାଦ ତଳକୁ ନୋହେ ସରି ॥
ମୋହିନୀ ରୂପେ ଚକ୍ରଧର । ମହେଶ ଗର୍ବ କଲେ ଚୂର ॥
ସେ ଯେବେ ସେ ରୂପ ହୁଅନ୍ତା । କିମ୍ପା ସେ ଧ୍ୟାନେ ବସିଥାନ୍ତା ॥
ମୋହୋର ପୁଣ୍ୟ ତପ ଫଳ । ଲଭେ ସେ ସମାଧି ଯୋଗବଳ ॥
ସଫଳ କଲି ଏତେ ଜୀବନେ । ଏ ଦିବ୍ୟ କାମିନୀ ଦର୍ଶନେ ॥
ଧ୍ୟାନକୁ ନୋହଇ ଗୋଚର । ତ୍ରିଗୁଣ ଶକ୍ତି ପରାପର ।୪୩।
ନିଶ୍ଚୟ ଜାଣିବି କେମନ୍ତେ । ଏମନ୍ତେ ବିଚାରି ଶୁଦ୍ଧ ଚିତ୍ତେ ॥
ରହିଲେ ରତ୍ନ ବେଦୀ ତଳେ । ପୂର୍ବ ସଞ୍ଚିତ ପୁଣ୍ୟବଳେ ॥
ଏମନ୍ତେ ସହସ୍ରେ ବରଷ । ଜାବାଳି ରହିଲେ ତା ପାଶ ॥
ସେ କନ୍ୟା ଧ୍ୟାନେ ଦେଇ ମନ । ତପସ୍ୟା କଲେକ ସମ୍ପୂର୍ଣ୍ଣ ॥
କମଳ ନୟନ ବିକାଶି । କରୁଣା କଟାକ୍ଷ ପ୍ରକାଶି ॥
ସଧୀରେ ଗ୍ରୀବେଂ ଦେଶ ବେଗେ । ଜାବାଳି ଥିଲେ ଯେ ତା ଆଗେ ॥
ତାର କଟାକ୍ଷେ ମୁନିବର । ବଦନୁ ନିସ୍ତରେ ଉତ୍ତର ॥
ଆନନ୍ଦେ ପାଦତଳେ ପଡ଼ି । କହଇ କରପତ୍ର ଯୋଡ଼ି ।୫୧।

## ମୁନି ଉବାଚ

ହେ ମାତ ରକ୍ଷାକର ମୋତେ । ମୁଁ ଯେ ଶରଣ ଗଲିତୋତେ ॥
ବ୍ରହ୍ମା ଶଙ୍କର ଆଦି ଯେତେ । ଯୋଗୀନ୍ଦ୍ର ଅଛନ୍ତି ଜଗତେ ॥
ସେ ତୋତେ ନଜାଣନ୍ତି କେହି । ଦିବ୍ୟ କାମେଶ୍ୱ ତନୁବହି ॥
ନଦା ତୁ ବ୍ରହ୍ମ ସନାତନ । ହେ ମାତ ହୁଅଗୋ ପ୍ରସନ୍ନ ॥
ଅତି ଦୁର୍ଲଭ ତୋ ମହିମା । ଅନନ୍ତ କେ କରିପାରେ ସୀମା ॥
ମୁଁ ଯେ ଜାବାଳିତପୋଧନ । ତପରେ ବ୍ରହ୍ମାଙ୍କ ସମାନ ॥
ତପେ ତୋଷିଲି ଦେବଦ୍ୱର । ସେ ମୋତେ ହୋନ୍ତି କୃପାକର ॥
ତ୍ରିଗୁଣ ଶକ୍ତି ଅଛି ମୋର । ଯେ ସୃଷ୍ଟି ପାଳଣାସଂହାର ।୫୯।
ମୋତହୁଂ ବଡ଼ ନଦେଖିଲି । ଆନନ୍ଦେ ସଂସାରେ ଭ୍ରମିଲି ॥
ଭ୍ରମଇ ଚଉଦଶ ପୁରେ । ବ୍ରହ୍ମା ସଦନ ରୁଦ୍ରଘର ।୬୦।
ବୈକୁଣ୍ଠ ଭୁବନକୁ ଗଲି । ବିଷ୍ଣୁଙ୍କୁ ନୟନେ ଦେଖିଲି ॥
ଲକ୍ଷ୍ମୀ ସହିତେ ଦେବବର । ଆନନ୍ଦେ ମୋତେ ପୂଜାକର ॥
ଗଉରୀ ସହିତେ ଶଙ୍କର । ସାବିତ୍ରୀ ତୁଲେ ବେଦବର ॥
ଶଚୀ ସହିତେ ଦେବରାଜା । ମୋତେ କରନ୍ତି ମାତଗୋ ପୂଜା ॥
ଯେମନ୍ତେ ଅଶେଷ ଭୁବନେ । ମୋର ଭ୍ରମଣି ଆତ୍ମଗ୍ୟାନେ ॥
ଆତ୍ମାରୁ ଭିନ୍ନ ନ ଦେଖଇ । ଅଶେଷ ଆତ୍ମା ମୁଁ ଜାଣଇ ॥
ତୋ ଆତ୍ମା ନୁଁ ପାରିଲି ଜାଣି । ମନ ବଚନେ ପରମାଣି ॥
କେ ତୁମ୍ଭେ କମ୍ପା ତପକର । କି ଫଳ ବାଞ୍ଛା ମନେଧର ।୬୯।
ଯେମନ୍ତେ କହି ମୁନିବର । ପ୍ରଣାମ କରନ୍ତି ପଯୂର ॥
ବଚନ୍ତୁ ଦେଖି ଶୁଭ୍ରକେଶୀ । କୋମଳ ବଚନ ଆଶ୍ୱାସି ॥

## ବ୍ରହ୍ମବାଦଦ୍ୟା ଉବାଚ

ବୋଲନ୍ତି ଶୁଣ ବ୍ରହ୍ମଋଷି । ତୁ ବୁଦ୍ଧି ସତ୍ତ୍ୱ ଗ୍ୟାନ ରାଶି ॥
ବ୍ରହ୍ମାଙ୍କୁ ଦେହେ ଲୀନ କଲୁ । ଆନନ୍ଦେ ସଂସାରେ ଭ୍ରମିଲୁ

ତୁ ତ ସାକ୍ଷାତ ବ୍ରହ୍ମରୂପେ । ତୋର ଅବୟବ ନିଜ କାୟେ ॥
ତେଣୁ ମୋ ଆଗେ ଅଛୁ ରହି । ମୋର କଟାକ୍ଷ ଯାତ ସହି ॥
ସଂସାରେ ଯେତେ ମୁମୁକ୍ଷୁଜନ । ବ୍ରହ୍ମରେ ହୋଇଅଛି ସେ ଲୀନ ॥
ମୋର କଟାକ୍ଷ ବ୍ରହ୍ମରସ । ସଂପୂର୍ଣ୍ଣ ଆନନ୍ଦ ପ୍ରକାଶ ॥
ସେ ସୁଖେ ଲୟ ହୋଇ ନାହଁ । ମୁକ୍ତି କରୁଛୁ ଆଗେ ରହି ॥
ସଂପୂର୍ଣ୍ଣ ବ୍ରହ୍ମଜ୍ଞାନ ବଳେ । ମୋତେ ଦେଖିଲୁ ଚର୍ମଚକ୍ଷୁ ତଳେ ॥
ତ୍ରିଗୁଣ ଶକ୍ତି କାଳ ମାୟା । ଆବୋରି ଅଛି ବ୍ରହ୍ମକାୟା ॥
ସେ କାଳ ପାଶକୁ ଜିଣିଲ । ସ୍ୱ ଦେହେ ମୋତେ ତୁ ଲଭିଲୁ ॥
ମୋ ଭକ୍ତ ଯୋଗୀ ଜନେ ଚିନ୍ତି । କଷ୍ଟ ମାୟାରୁ ନିସ୍ତରନ୍ତି ॥
ଜ୍ଞାନ ଆନନ୍ଦ ବ୍ରହ୍ମପଦ । ପୂର୍ଣ୍ଣ ପରମ ବ୍ରହ୍ମାନନ୍ଦ ॥
ପରମାନନ୍ଦ ସୁଖ ନିଧି । ଭକ୍ତେ ସଂପୂର୍ଣ୍ଣ ମୋର ବୁଦ୍ଧି ॥
ତଥାପି କୃଷ୍ଣ ଭକ୍ତି ବନ୍ଧୁ । ବୃଥା କଲି ନିଜ ତନୁ ॥୮୫॥
ସେ ତନୁ ହୋଇବ କାରଣ । ଶ୍ରୀକୃଷ୍ଣ ସେବା ପରାୟଣ ॥୮୬॥
ଯେମନ୍ତ ଭାଳ ଯୋଗ ବଳେ । ତପ ସାଧିଲି କୃଷ୍ଣଧ୍ୟାନେ ॥
ମୁଂ ଯେ ସାକ୍ଷାତେ ବ୍ରହ୍ମବିଦ୍ୟା । ମୋତେ ଯେ ନ ରହେ ଅବିଦ୍ୟା ॥
ଯେ କାଳ ମାୟା ମୋହ ପାଶ । ମୋ ତେଜ ଲାଗି ହୋଏ ଧ୍ୱଂସ ।
ମୁଂ ସେ ପରମ-ବ୍ରହ୍ମ ରୂପା । ସମାଧି ଯୋଗେ ମୁଂ ଅରୂପା ॥
ଶ୍ରୀକୃଷ୍ଣ ପାଦପଦ୍ମ ଆଶେ । ତପ ସାଧିଲି ବନ ଦେଶେ ॥
ସେ ଦେହ ତେଜି ଦେହାନ୍ତରେ । ଶ୍ରୀକୃଷ୍ଣ ବାସନା ବଶରେ ॥
କୃଷ୍ଣ ଚରଣେ କର ଧ୍ୟାନ । କରିବ ବୈକୁଣ୍ଠ ଗମନ ॥
ଶ୍ରବଣେ ବ୍ରହ୍ମବିଦ୍ୟା ବାଣୀ । ଶୁଣି ଆନନ୍ଦ ମୁନିମଣି ॥
ଶ୍ରୀକୃଷ୍ଣ ଉପାସନା ବିଧି । ଯେମନ୍ତ ଧାରଣା ସମାଧି ॥
ଯତ୍ନରି ଜାଣିଲେ ସମସ୍ତ । ମନ ହରଷେ ତପୋବନ୍ତ ॥
ଅଧ୍ୟାତ୍ମ ଜ୍ଞାନ ତତ୍ତ୍ୱଶିକ୍ଷା । ପରମ ବ୍ରହ୍ମ ପଦବାଞ୍ଛା ॥

ସ୍ଥାଣୁଭଳେ ତୃଣ ପ୍ରାପ୍ତେ କରି । ଶ୍ରୀକୃଷ୍ଣ ପ୍ରୀତି ମନେଧରି ॥
ମୁନିଙ୍କ ବହ୍ନି ବ୍ରହ୍ମଗ୍ୟାଂନ । ହରଷ ବ୍ରହ୍ମ ବିଦ୍ୟାମନ ॥
ଯେ ଦେହେ ତପ କରୁଥିଲା । ମୁନି ଦେଖନ୍ତେ ବିସର୍ଜିଲା ॥
ଜ୍ଞାନ ଅନଳେ ପିଣ୍ଡ ଦହି । ନିଜ ବାସନା ଦେହ ବହି ॥
ପୂର୍ବ ରୂପରୁ କୋଟିଗୁଣେ । ଅଧିକ ସୁନ୍ଦର ଭୂଷଣେ ॥
ବ୍ରହ୍ମାଣ୍ଡେ ପୂରିଲା ତା ତେଜ । ନିନ୍ଦଇ କୋଟି ଚନ୍ଦ୍ର ସୂର୍ଯ୍ୟ ॥
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା । ଶ୍ରୀକୃଷ୍ଣ ପାଦ ସେ ଲଭିଲା ॥
ସେ ବ୍ରହ୍ମ ବିଦ୍ୟା ସଦଗତି । ନୟନେ ଦେଖି ବୃହସ୍ପତି ॥
ସେ ବନସ୍ଥାଣୁ ମୁନିବର । ମିଳିଲେ ମାନ ସରୋବର .
ତପ ସାଧିଲେ ଘୋର ବନେ । ଶ୍ରୀକୃଷ୍ଣ ପାଦ ପଦ୍ମଧ୍ୟାନେ ॥
ସବ୍ୟ ଚରଣେ ଉଭା ହୋଇ । ଅସବ୍ୟ ପଦ ସ୍କନ୍ଧେ ଦେଇ ॥
ଊର୍ଦ୍ଧ୍ୱ ବଦନେ ତପଶାଳୀ । ନସ୍ୟୂନ ପିଛୁଡ଼ା ନ ଭୁଲି ॥
କର ଅଞ୍ଜଳି ଦେଇ ଶିରେ । ଘୋର ଦୁଃସହ ତୃପକରେ ॥
ପଞ୍ଚବିଂଶତି ବର୍ଣ୍ଣଧାମ । ବ୍ରହ୍ମ ଗୋପାଳମନ୍ତ୍ରନାମ ।୧୧୧।
ଚାରି ଅକ୍ଷର ଆଦ୍ୟେ ଦେଇ । ମୋହନାନନ୍ଦ ଉଚ୍ଚରଇ ॥
ବଧୂ ଭୁବନେଶ୍ୱରୀ ନାମ । କୃଷ୍ଣ ଗୋବିନ୍ଦ ବେନି ନାମ ॥
ଚତୁର୍ଥ ଅନ୍ତେ ଉଚ୍ଚାରିବ । ପୁଣି ହ୍ରୀଂ ଲକ୍ଷ୍ମୀ କାମଥିବ ॥
ସଚନ୍ଦ୍ର ସର୍ବ ଗର୍ବ ଯୁତ । ବହ୍ନି ବଲ୍ଲଭା ନିରୂପିତ ॥
ମନ୍ତ୍ର ଜପଇ ଶୁଦ୍ଧ ମନେ । ବ୍ରହ୍ମ ଗୋପାଳ ରୂପଧ୍ୟାନେ ॥
ଯେ ଗୋପବାଳ ବ୍ରଜପୁରେ । ପରମାନନ୍ଦ ରୂପ ଧରେ ॥
ଚିତ୍ର ବିଚିତ୍ର ପତି ଲୀଳା । ଗମନେ ମୋହେ ଗୋପବାଳା ॥
ଲଳିତ ପଦ ନ୍ୟାସ ଚାରୁ । କ୍ୱଣିତ କଣସ୍ଥ ନୂପୁର ॥
ବଙ୍କିମ ଅପାଙ୍ଗ ବୀକ୍ଷଣ । ସସ୍ମିତ ଅଧର ଅରୁଣ ॥
ଦିବ୍ୟ ଚନ୍ଦନ ଘଷି ଦେହେ । ଦିବ୍ୟ କୁସୁମ ଦାମ ଶୋହେ ॥

ପୀତ ବସନ ରତ୍ନ କାଞ୍ଚି । ସୁନ୍ଦର କଟିତଟେ ଖଞ୍ଚି ॥
ମୋହଇ ଅଶେଷ ଭୁବନ । ଜଗତ ପତି ଜନାର୍ଦ୍ଦନ ॥
ଯେ ବ୍ରହ୍ମ ଗୋପାଳ ମୂରତି । ଅଷ୍ଟାଙ୍ଗ ଯୋଗ ଧ୍ୟାନେଜନ୍ତି ॥
ତପ ସାଧିଲେ କଳ୍ପ ନବ । ଅନ୍ତେ ଲଭିଲେ କୃଷ୍ଣଭାବ ॥
ସେ ମୁନିବର ଗୋପପୁରେ । ପ୍ରଚଣ୍ଡ ନାମ ଗୋପଘରେ ।୧୨୭।
ଜନ୍ମିଲ କୃଷ୍ଣ ଅଂଶ ଯେନ । କାମେଣୀ ରୂପେ ବ୍ରହ୍ମ ମୁନି ॥
ବହିଲ ଚନ୍ଦ୍ର ଗନ୍ଧାନାମ । ସୁନ୍ଦର ତନୁ ଲକ୍ଷ୍ମୀ ସମ ॥
ଗନ୍ଧ ଚନ୍ଦନ ବନୁ ଧଙ୍ଗ । ଆମୋଦ କରେ ଦଶଦିଗ ॥
ସୁନ୍ଦର ଅଙ୍ଗ ସୁକୁମାର । ଭୁବନେ ନାହିଂ ପଟାନ୍ତର ॥
ଶ୍ରୀକୃଷ୍ଣ ପାଦ ଧ୍ୟାନକରି । ପ୍ରଚଣ୍ଡ ଘରେ ଅବତରି ॥
ନାରଦ ଗଲେ ତା ମନ୍ଦିର । ଦେଖି ପ୍ରଚଣ୍ଡ ଗୋପବୀର ॥
ଗୃହକୁ ନେଇ ତପୋନିଧି । ଆନନ୍ଦେ କଲ ପୂଜାବିଧି ॥
ତାର ଦୁହିତା ଚନ୍ଦ୍ରଗନ୍ଧା । ମୁନି ଚରଣେ କଲ ଶ୍ରଦ୍ଧା ॥
ବିବିଧ ବେଶ ଅଳଙ୍କାର । ଭୂଷଣି କଲ କଳେବର ।୧୩୫।
ହସ୍ତରେ ଜପମାଳ ଯେନ । ଆସଇ ପ୍ରଚଣ୍ଡ ନନ୍ଦନୀ ।୧୩୬।
ଅତିଥି ସେବା ବିଧି ମତେ । ମୁନିଙ୍କ ପୂଜିଲ ଯୁଗତେ ॥
ଅନେକ ମତେ କଲ ସ୍ତୁତି । ବୋଲଇ ଶୁଣ ବ୍ରହ୍ମ ପତି ॥

ଚନ୍ଦ୍ରଗନ୍ଧା ଉବାଚ

ତୁମ୍ଭେ ହେ କୃଷ୍ଣର ସେବକ । ପବିତ୍ର କର ସର୍ବଲୋକ ॥
ଇଚ୍ଛାରେ କଲ ଆଗମନ । ଯୋଗେ ଜାଣିଲୁ ତୁମ୍ଭ ମନ ॥
କୃଷ୍ଣ ମହିମା ଜାଣିମାତ୍ରେ । ଗମନ କଲ ମୋ ମନ୍ଦିରେ ॥
ଶ୍ରୀକୃଷ୍ଣ ପାଦେ ମୋର ମନ । ତୁମ୍ଭେ କରିବ ନିବେଦନ ॥
ତୁମ୍ଭ ବଚନ ନାରାୟଣ । କରି ନପାରେ ଅପ୍ରମାଣ ॥

ନଳ କୁବର ମଣିଗ୍ରୀବ । କୁବେର ଆତ୍ମାର ସମ୍ଭବ ॥
ଭୃତ୍ୟ ବଚନେ ବେନିଭାଇ । ଯାମଳାର୍ଜ୍ଜୁନ ବୃକ୍ଷ ହୋଇ ॥
ସ୍ଥାବର ହୋଇ ଗୋପେ ଥିଲେ । କୃଷ୍ଣ ତାହାଙ୍କୁ ନିସ୍ତାରିଲେ ॥
ହେ ମୁନି କର ମୋତେ ଦୟା । ଶ୍ରୀକୃଷ୍ଣ ଲଭୁ ମୋର କାୟା ॥
ଅଦ୍ଭୁତ ବଚନ ତାହାର । ଶୁଣି ଚକିତ ମୁନିବର । ୧୪୮ ।
ହୃଦୟ ମଧ୍ୟେ ବିଶ୍ଵରନ୍ତି । ଧନ୍ୟ ଯୁବତୀ ରତ୍ନକାନ୍ତି ॥
ବିପୁଳ ନନ୍ଦେ ଦେହ ଝୁଲ । ପଡ଼ିଲ୍ ଅଂଗ ଶୁଦ୍ଧ ଶାଳୀ ॥
ଆମୋଦ ଅଂଗ ପରିମଳ । ସୁନ୍ଦର ଦିଶେ ପାଦ ତଳ ॥
ଲାବଣ୍ୟ ତନୁ ମହାଶୋଭା । ବିରାଜେ ଦଶ ଦିଗେ ପ୍ରଭା ॥
ମୋ ଶାପେ କୁବେର ନନ୍ଦନ । କୃଷ୍ଣଙ୍କୁ କଲେ ଦରଶନ ॥
ସେ କଥା ଜାଣିଲା ତରୁଣୀ । ପ୍ରତକ୍ଷେ ଜାତ କମଳିଣୀ ॥
ଯେତେ ବିସ୍ମିତ ଦେବ ମୁନି । ବୋଲନ୍ତି ଶୁଣ ଚନ୍ଦ୍ରାନନୀ ॥

## ନାରଦ ଉବାଚ

ଶ୍ରୀକୃଷ୍ଣ ପାଦପଦ୍ମ ଭବ । ତୋ ବିନୁ କେ ଆନ ଲଭିବ ॥
ତୁ ସେ ଶ୍ରୀକୃଷ୍ଣ ମନୋହାରୀ । ତପେ କୃଷ୍ଣଙ୍କୁ ଅଛୁ ବରି ॥
ସାଧୁ ସଂଗରେ ମୋତେ ଗଣୁ । ଆମ୍ଭା ସ୍ଵଭାବ ନ ପ୍ରମାଣୁ ॥
ନିର୍ମଳ ବ୍ରହ୍ମପଦ ଭବ । ହେ ଭଲୁ ଶ୍ରୀକୃଷ୍ଣ ବଲ୍ଲଭୀ ॥
ଲୀଳା କଲ୍ଲୋଳେ ପ୍ରେମ ରଂଗ । ଲଭିବୁ କୃଷ୍ଣ ଅନୁସଂଗେ ॥
କୃଷ୍ଣ ରମଣୀ ତୋତେ କରୁ । ହୃଦୟ ତାପ ଅପହରୁ । ୧୬୧ ।
ନାରଦ ବାକ୍ୟ ସୁଧାରସେ । ଗୋପକାମିନୀ ମନ ଭାସେ ॥
ଆନନ୍ଦେ ବହେ ଅଶ୍ରୁଧାର । ପୁଲକ ଦିଶଇ ସୁନ୍ଦର ॥

## ଚିତ୍ରଗନ୍ଧା ଉବାଚ

ବୋଲଇ ଗଦ ଗଦ ବାଣୀ । ତୋର ପ୍ରସାଦେ ମୁନିମଣି ॥
କୃଷ୍ଣ ବସିବେ ଅନୁଗ୍ରହ । ମନରେ ନାହିଂ ମୋ ସନ୍ଦେହ ॥

ଶୁଣି ସନ୍ତୋଷ ମହାମୁନି । ସ୍ତୁତି ପଙ୍କଜ ମାଳେ ଘେନି ॥
ବୋଲନ୍ତି ଶୁଣ ଚନ୍ଦ୍ରଗନ୍ଧା । କୃଷ୍ଣ କରନ୍ତୁ ତୋତେ ଶ୍ରଦ୍ଧା ॥
ଏହି ମାଳା ଗୋଟି ଥୋଇଥିବୁ । ଶ୍ରୀବୃନ୍ଦାବନେ ଯେବେ ଯିବୁ ॥
ରାସମଣ୍ଡଳେ ଦେବବର । ଥିବେ ଯେ ନଟ ବେଶ ଧର ॥
ଏହିମାଳା କୃଷ୍ଣ କଣ୍ଠଦେଶେ । ଭୂଷଣ କରିବୁ ତୁ ରସେ ॥
ଗୋପୀଙ୍କ ମଧ୍ୟେ ନନ୍ଦ ସୁତ । ପ୍ରଶଂସା କରିବେ ବହୁତ ॥
ଏହିମନ୍ତ କହି ଗଲେ ମୁନି । ଆନନ୍ଦ ପ୍ରଚଣ୍ଡ ନନ୍ଦିନୀ ॥
ପ୍ରାଣୁ ଅଧିକ କରି ମାଳା । ମନ୍ଦିରେ ଥୋଇଲା ଅବଳା ॥
ଚିନ୍ତଇ କୃଷ୍ଣପାଦ ବେନି । ନାରଦ ବଚନେ କାମିନୀ ॥
ଶୁଣ ସୁଜନେ କୃଷ୍ଣରସ । ଗୋପୀଙ୍କ ଭଗତି ବିଶ୍ୱାସ ॥
ଏହି ରସେ ଯେବେ ମନଦେବ । ବିଷୟ ପ୍ରବନ୍ଧ ଛେଦିବ ॥
ଭଜିବ କୃଷ୍ଣ ପଦ୍ମପାଦେ । ମାୟା ନାଶିବ ଅପ୍ରମାଦେ ॥
ଗୋପୀଙ୍କ ଭାବେ ଦେଇମନ । ଲଭିବ ଶ୍ରୀକୃଷ୍ଣ ସଦନ ॥
ସୁଜନେ ଶୁଣ ମନତୋଷେ । ଗୋପୀଜନଙ୍କ ଭକ୍ତି ଆଶେ ॥
ତରିବ ସଂସାର ସାଗର । ଶ୍ରୀକୃଷ୍ଣ ଭଜ ନିରନ୍ତର ॥
ଅଧମ ଦ୍ୱିଜ ଜଗନ୍ନାଥ । କହଇ ଦେଶ ଭାଷା ଗ୍ରନ୍ଥ ।୧୮୧।

ଇତିଶ୍ରୀମତ୍‌ପରମରହସ୍ୟେ ଶୈବାଗମେ ବ୍ରହ୍ମବିଦ୍ୟା
ଉପଦେଶେ ନାମ ଷଷ୍ଠମୋଽଧ୍ୟାୟ ।

—॰—

# ସପ୍ତମ ଅଧ୍ୟାୟ

ଈଶ୍ୱରୋବାଚ

ପାର୍ବତୀ ଆଗେ ଶୂଳପାଣି । ଭବେ କହନ୍ତି ପ୍ରିୟବାଣି ॥
ସଜନି ଶୁଣ ସାବଧାନେ । ତପ ସାଧନେ ଗୋପୀଜନେ ॥
ସବେ ତୋଷିଲେ ବ୍ରହ୍ମରାଶି । ଯେତେ ଗୋପାଳ ବ୍ରଜବାସୀ ॥
ତାହାଙ୍କ ଚରିତ ଶୁଣିଲେ । ଦୂରିତ ନରହୁଲ ଭଟିଲେ ॥
ସେ ଦେବ ଋଷି ମନତୋଷେ । ଗୋପ ନଗର ଭମିଆସେ ॥
ଆନନ୍ଦେ କରନ୍ତି ଗମନ । ଚହନ୍ତି ଦେଖି ପୂଣ୍ୟସ୍ଥାନ ॥
ଗୋକର୍ଣ୍ଣେଶ୍ୱର ବୋଲି ହର । ପ୍ରାସାଦ ଅତି ମନୋହର । ୭ ।
ନାରଦ ରହିଲେ ସେ ସ୍ଥାନେ । ଗୋପୀଜନଙ୍କ ଦରଶନେ ॥
ଯୌବନେ ଶତେ ଗୋପବାଳୀ । ଆସନ୍ତି ହୋଇ ଯୌବ ମେଳ ॥
ତୁଲ୍ୟ ବୟସୀ ସୁକୁମାରୀ । ସମସ୍ତେ ନବୀନ କଶୋରୀ ॥
ରୂପେ ଲକ୍ଷ୍ମୀଙ୍କ ପଟାନ୍ତର । ଭୂଷଣ ରତ୍ନ ଅଳଙ୍କାର ॥
କରଣେ ଦଶଦିଗ ବ୍ୟାପି । ହଂସ ଗମନ ଶୁଭ୍ର କେଶୀ ॥
ଯେବକ ଆରେକ ହସ୍ତଧତ । ମନେ ଶ୍ରୀକୃଷ୍ଣ ଚିନ୍ତାକର ॥
ନୟନୁ ଗଳେ ନୀରଧାର । ପୁଲକ ରାଜି ମନୋହର ॥

ଆନନ୍ଦେ ଆସନ୍ତି କାମେଶ୍ୱ । ସୁନ୍ଦର ବଶଇ ଅବଶ୍ୱ । ୧୫ ।
ବିଧାତା ମନୁ ପୁତ୍ର ଜାତ । ସ୍ୱାୟମ୍ଭୁ ପ୍ରମୁଖ ବହୁତ ॥
ଥୋକାଏ ଧର୍ମ ଆଚରଣେ । ବ୍ରତିଲେ ସଂସାର କାରଣେ ॥
ଥୋକାଏ ରଜୋ ଗୁଣ ଧାଷା । ଅଖିଳ କର୍ମ ଫଳବାଞ୍ଛା ॥
ସୃଷ୍ଟି ଉତ୍ପତ୍ତି ବିଚାରିଲେ । ଅଷ୍ଟାଙ୍ଗ ଯୋଗେ ତପକଲେ ॥
ସ୍ୱାୟମ୍ଭୁ ମନୁ ଆଦି ଯେତେ । ଧର୍ମ କହିଲେ ନାନା ମତେ ॥
ଯେ ଦକ୍ଷ ପ୍ରଜାପତି ନାମ । ଦକ୍ଷିଣ ଭୁଜରୁ ଜନମ । ୨୧ ।
ତା' ଠାରୁ ସୃଷ୍ଟି ପ୍ରବର୍ତ୍ତିଲା । ଅନେକ କନ୍ୟା ଜାତକଲା ॥
କଶ୍ୟପ ମୁନିଙ୍କି ଥୋକାଏ । ମନ ସନ୍ତୋଷ ବିଭାକାଏ ॥
ସେ ମୁନି ବୀର୍ଯ୍ୟେ ଚରାଚର । ସମ୍ଭବ ହୋଇଲା ସଂସାର ॥
ତା ଦେଖି ଦକ୍ଷ ପ୍ରଜାପତି । ପୁତ୍ର ସର୍ଜନେ କଲା ମତି ॥
ଆତ୍ମାର ଏତେକ କୁମର । ଜନମ କଲା ଦକ୍ଷ ବୀର ॥
ଅନଳ ସମତେଜ ରାଶି । ନିର୍ମଳ ସତ୍ତ୍ୱ କ ପ୍ରକାଶି ॥
କାମ କ ସତେ ତନୁଧର । ବାଳକ ରୂପେ ଅବତାର ॥
ପୁତ୍ରଙ୍କୁ ବୃନ୍ଦଂ ଦକ୍ଷ ମୁନି । ମନ ସନ୍ତୋଷେ ବ୍ରହ୍ମଯୋନି । ୨୯ ।
ବୋଲଇ ଶୁଣରେ ନନ୍ଦନ । ସର୍ଜନ କର ସୃଷ୍ଟି ମାନ ॥

## ପୁତ୍ରୋବାଚ

ପୁତ୍ରେ ବୋଲନ୍ତି ଶୁଣ ତାତ । ଆମ୍ଭେ ତୋହୋର ଶତେ ସୁତ ॥
ସହଜେ ବାଳକ ପ୍ରକୃତି । ସୃଷ୍ଟିରେ ନାହିଁ ଆମ୍ଭମତି ॥

ଯେ ସୃଷ୍ଟି ଅଟଇ କାହାର । କ ରୂପେ ସୃଷ୍ଟିର ବେଭାର ॥
ଏହା ତାତ କହ ତତ୍ତ୍ୱ ବାଣୀ । ସୃଷ୍ଟି କରିବୁ ତାହା ଜାଣି ॥
ବୋଲନ୍ତି ଦକ୍ଷ ପ୍ରଜାପତି । ଏହୋ ପୁତ୍ରେ ଶୁଣ ସୃଷ୍ଟି ସ୍ଥିତି ॥

ଦକ୍ଷୋବାଚ

ସ୍ୱୟଂ ପରମ ବ୍ରହ୍ମଧାମ । ଯେ କୃଷ୍ଣଚନ୍ଦ୍ର ନିତ୍ୟନାମ ।୩୭।
ତାର ତ୍ରିଗୁଣ ଶକ୍ତି ଅଂଶେ । ଯେ ନାରାୟଣ ସ୍ୱ ପ୍ରକାଶେ ॥
ତା ନାଭି କମଳୁ ବିଧାତା । ଜନ୍ମିଲା ରଜୋଗୁଣ କର୍ତ୍ତା ॥
ତାର ସର୍ଜିଲା ଯେ ଅଖିଳ । ସ୍ଥାବର ଜଙ୍ଗମ ସକଳ ॥
ସେ ବ୍ରହ୍ମ ଅଂଶ ଜାତ ହୋଇ । ବିଶ୍ୱ ସର୍ଜନେ ମନ ଦେଇ ॥
ତୁମ୍ଭଙ୍କୁ ଜାତ କଲା ଯେବେ । ଯେ ବିଶ୍ୱେ ରଜୋ ଗୁଣଭାବେ ॥
ଶ୍ରବଣେ ଶୁଣି ଶାନ୍ତେ ସୁତ । ବିସ୍ମିତ ବୋଲନ୍ତି ଏହା ତାତ ॥

ପୁତ୍ରୋବାଚ

ସଂସାରେ ନାହିଁ ଆମ୍ଭ ମନ । ଭଜିବୁ କମଳ ଲୋଚନ ॥
କୃଷ୍ଣ ପରମ ବ୍ରହ୍ମରାଶି । ତା ପ୍ରେମ ଜଳେ ଆମ୍ଭେ ଭାସି ॥
ପରମ ଈଶ୍ୱର ମୁରାରି । ସେ ସର୍ବ ଆତ୍ମା ଅଧିକାରୀ ॥
ତା ପଦ୍ମପାଦ ଭାବ ବିନୁ । ବଞ୍ଚିଥେ ନେବୁ କମ୍ପା ତନୁ ॥
ସେ ନିତ୍ୟ ନାୟକ ଶ୍ରୀହରି । ତା ପ୍ରୀତି ଅର୍ଥେ ତପ କରି ॥
ତା ପାଦେ ପଶିବୁ ଶରଣ । ଜୀବନ କରିବୁ କାରଣ ॥
ଯେମନ୍ତ କହି ଶତେ ସୁତ । ହୋଇଲେ ସର୍ବେ ଅବଧୂତ ॥

ପିତାଙ୍କୁ ନମସ୍କାର କରି । ବନେ ଗମିଲେ ବ୍ରହ୍ମଗୃହୀ ॥
ମାନସ ସରୋବର କୂଳେ । ଦକ୍ଷ ନନ୍ଦନ ପ୍ରେକ୍ଷ ମେଳେ ॥
ତପସ୍ୟା କଲେ ସୁରୁଚିର । ପବନ କରନ୍ତି ଆହାର ॥
ମଦନ ବୀଜ କୃଷ୍ଣ ନାମ । ଚତୁର୍ଥି ଅନ୍ତେ ଅଭିରାମ ॥
ଯେ କଲା ବୃତ୍ତି ଅନ୍ତସାଇଂ । ଲୁଚନ୍ତି ଅଗ୍ନି କାନ୍ତ ହୋଇ ।୫୪।
ପ୍ରେମନ୍ତେ ପଞ୍ଚ ଦଶାକ୍ଷର । ଜପନ୍ତି ଦକ୍ଷଙ୍କ କୁମର ॥
ଧ୍ୟାନେ ଜପନ୍ତି କୃଷ୍ଣ ମୂର୍ତ୍ତି । ଦିବ୍ୟ ଭୂଷଣ ଗୃରୁକାନ୍ତି ॥
ଦିବ୍ୟ ବସନ ଚିତ୍ରପଟ । ଶୋଭିତ ପୀତ କଟିତଟ ॥
ଶିଖେ ଶିଖଣ୍ଡି ପୁଚ୍ଛା ଚୂଡ଼ା । କୁଣ୍ଡଳ ଲୁଳେ କର୍ଣ୍ଣେ ପୁଡ଼ା ॥
ସବ୍ୟ ଜଘନେ ଦକ୍ଷପାଦ । ବନ୍ୟାପି ହସ୍ତ ମୁଦ୍ରାଛନ୍ଦ ॥
ପ୍ରେକ ପଦ୍ମରେ ଗତି କରି । କକ୍ଷ ମୂଳରେ ବଂଶୀ ଧରି ॥
ହୁଂକାର କରି ନୃତ୍ୟ କରି । ଗୋପୀ ନୟନ ମନ ହରି ॥
ପ୍ରେ ରୂପେ ଧ୍ୟାନେ ଦେଇ ଚିତ୍ତ । ଦକ୍ଷ ମୁନିଙ୍କ ଶତେ ସୁତ ।୬୨।
ତପ ସାଧିଲେ କଳ୍ପ ଶତ । ଆମ୍ଭା ସଙ୍ଗୀମେ ଶତେ ମୁନି ॥
ତଦନ୍ତେ ତପ ସିଦ୍ଧ କରି । ଜନ୍ମ ଲଭିଲେ ଗୋପ ପୁରୀ ॥
ପୂର୍ବେ ବାସନା ଭାବ ଯେଣି । ପୀରନ୍ତି ଶତେକ କାମେଣୀ ॥
ସର୍ବେ ହୋଇଣ ପ୍ରେକ ମେଳି । ବ୍ରଜପୁର ସେ ଗୋପବାଳୀ ॥
ଯୋଗେ ଅଇଲେ ଶିବଆଳେ । ଶତେ କାମେଣୀ ପ୍ରେକ ମେଳେ ॥
ରୁଦ୍ର ବ୍ରଜର ସାରି ବାଳୀ । ସକଳ ହୋଇ କୃତାଞ୍ଜଳୀ ॥
ନାରଦ ଚରଣେ ନମିଲେ । କର ପଲ୍ଲବ ଶିରେ ଦେଲେ ॥

ଗୋପ୍ୟୁବାଚ

ବୋଲନ୍ତି ଶୁଣ ମୁନିବର । ତୁମ୍ଭେ ଯେ ଶ୍ରୀକୃଷ୍ଣ କଙ୍କର ।୭୦।
ଜଗତ ହିତେ ଦୟାବନ୍ତ । ସଂସାରେ ଭ୍ରମି ପର୍ବ୍ବଂ ତତ୍ତ୍ୱଂ ॥
ତୁମ୍ଭ ପ୍ରସନ୍ନେ ମଧୁହାସ । ଅଶେଷ ଲୋକଙ୍କୁ ନିସ୍ତାର ୭୨।
ସୁଫଳ କଲ୍ଲ ଆଜଦିନ । ମହେଶ ପ୍ରଭୁ ଦରଶନ ॥

ନୟନେ ତୁମ୍ଭଙ୍କୁ ଦେଖିଲୁ । ଦୁରନ୍ତ ମାନ ଉପେକ୍ଷିଲୁ ॥
ଶୁଣି ବୋଲନ୍ତି ଦେବଋଷ । ଶୁଣ ଯୁବତୀ ରତ୍ନମଣି ॥

ନାରଦ ଉବାଚ

ତୁମ୍ଭେ ଶ୍ରୀକୃଷ୍ଣ ସହଚରୀ । ଲକ୍ଷ୍ମୀର ଅଂଶେ ଅବତରି ॥
କୃଷ୍ଣ କରିବେ ଉପଭୋଗ । ବିଧାତା କରନ୍ତୁ ସଂଯୋଗ ॥
ସେ ବ୍ରହ୍ମମଣି ସୁଖଧାମ । ପୂର୍ଣ୍ଣ କରିବେ ତୁମ୍ଭକାମ ॥
ପ୍ରଭୁଙ୍କ ଅନୁଗ୍ରହ ବଳେ । ତୁମ୍ଭଙ୍କୁ ଦେଖି ଚର୍ମ ଡୋଳେ ॥
ଜୀବନ କଲଇଂ ସୁଫଳ । ଧନ୍ୟ ମୋହୋର ତପବଳ ॥
ଧନ୍ୟ ଶ୍ରୀକୃଷ୍ଣ ଭବଗ୍ରାହୀ । ଯେତେତେ ଦୟାକୁ ଅଛୁ କାହିଂ ॥
ଗୋପ ନନ୍ଦନୀ ଛନ୍ତି ଯେତେ । ଲକ୍ଷ୍ମୀଙ୍କ ସମାନ ସମସ୍ତେ ॥
ଯେହ୍ନାଙ୍କ ଭାବ ଜାଣିଣାରେ । ମୋତେ ପେଷିଲେ ଗୋପପୁରେ
ସେ ମୋତେ ଯେତେ ଦୟାବନ୍ତ । ବଚନେ କେ ପାରିବ କହି ॥
ଧନ୍ୟରେ ମୋହୋର ଜୀବନ । ମୋତେ ପୂଜନ୍ତି ଗୋପୀଜନ ॥
ଯେ ଗୋପୀଜନଙ୍କର ପାଶ । କୃଷ୍ଣ ହୋଇବେ ଭବେଦାସ ॥
ଯେମନ୍ତ ବୋଲି ନୃତ୍ୟକରି । ଶ୍ରୀକୃଷ୍ଣ ନାମ ମୁଖେଧରି ॥
ଶୁଦ୍ଧ ସ୍ଫଟିକଦେହ ଦ୍ୟୁତି । ପୁଲକ କୁଳ ବିରାଜନ୍ତି ।।୮ ।
ନୟନୁ ଅଶ୍ରୁଜଳ ବହେ । ଭାବ ପଦ୍ମୁଦେ ବାଣୀ କହେ ॥
ନାରଦ ନୃତ୍ୟଦେଖି ବାଳୀ । ଆନନ୍ଦେ ଦ୍ୟନ୍ତି ହୁଳାହୁଳି ॥
ସ୍ୱର୍ଗେ ଯେ ଥିଲେ ଦେବ ବୃନ୍ଦେ । କୁସୁମ ବର୍ଷନ୍ତି ଆନନ୍ଦେ ॥
ଯେ ଦେବ ଋଷି ଶିବଆଳେ । ଗୋପକା ମେଲାଯେକମେଳେ ॥
ବହୁତ କହି କୃଷ୍ଣରସ । ଗୋପୀଙ୍କ ମନକଲେତୋଷ ॥
ସେ ଗୋପୀ ଜନଙ୍କର ପାଦେ । ବ୍ରାହ୍ମଣ ଜଗନ୍ନାଥ ବନ୍ଦେ ॥

ଇତିଶ୍ରୀ ମତ୍ପରମ ରହସ୍ୟେ ଶୈବାଗମେ ଗୋପୀକାନୁ ଭାବ-ବର୍ଣ୍ଣନେ ନାମ ସପ୍ତଶୋଽଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ

## ପାର୍ବତୀ ଉବାଚ

ବନସ୍ଥ ହୋଇ ଶାକମ୍ଭରୀ । ବୋଲନ୍ତି ଶୁଣ ଶୂଳଧାରୀ । ୧।
ତୁମ୍ଭେ ଯେ ମୋର ପ୍ରାଣନାଥ । ଜୀବନ କରିବ ଜୁହାର୍ଥ ॥
ସେ ବ୍ରହ୍ମଋଷି ନନ୍ଦଗୋପେ । କି ଭାବ କଲେ କି ପ୍ରସ୍ତାପେ ॥
ସେ ପୁଣ୍ୟ ବନ୍ତୀ ଗୋପବାଳୀ । ଦେଖି ନାରଦ ତପଶାଳୀ ॥
କି ଭାବେ ନାରଦର ମନ । ସନ୍ତୋଷକଲେ ଗୋପୀ ଜନ ॥
ସେ ଗୋପୀ ପର୍ବ ପୁଣ୍ୟକଥା । ବିସ୍ତାରି କହ ପଞ୍ଚମଥା ॥
ପାର୍ବତୀ ବଚନେ ଶଙ୍କର । ପୁଲକ କଲେ କଳେବର ॥
ହରଷେ କରି ଆଲିଙ୍ଗନ । କହନ୍ତି ମଧୁର ବଚନ ॥

## ଈଶ୍ୱର ଉବାଚ

ଶୁଣଗୋ ପ୍ରାଣ ହଂସାଗ୍ରୁଣୀ । ଗୋପୀଜନଙ୍କ ପୁଣ୍ୟବାଣୀ ॥
ପୂର୍ବେ ଯେ କୁଶଧ୍ୱଜ ଋଷି । ବିଧାତା ସମାନେ ସନ୍ନ୍ୟାସୀ ॥
ସେ ଋଷି ସାର୍ଯ୍ୟେ ବେଦବତ୍ତା । ଜନମ ହୋଇଲେ ପ୍ରତ୍ୟକ୍ଷ ॥
ସୁବର୍ଣ୍ଣ ସୁଚୀ ଶ୍ରବନାମ । ଯେହ୍ନେ ଶଶାଙ୍କସୂର୍ଯ୍ୟଧାମ ॥
ସେ ବେଦଭାଇ ଯେତ୍ନବଦନେ । ତପେ ତକଲେ ଘୋରବନେ ॥
ଊର୍ଦ୍ଧ୍ୱ ଚରଣେ ଉଦ୍ଧ ହୋଇ । ଅଧୋବଦନେ ଦୁଃଖ ସହି ।
ବାହୁ ଯୁଗଳେ ଭୂମିଧରି । ହୃଦେ ଚିନ୍ତନ୍ତି ନରହରି ।୧୫।
ଜପନ୍ତି ନିଅକ୍ଷର ମନ୍ତ୍ର । ମଦନ ବୀଜ ରଙ୍ଗ ତନ୍ତୁ ॥
ମଗ୍ନଳ ସଂଗ୍ୟାଂ ମନ୍ତ୍ରବେଦ । ଧ୍ୟାନ କରନ୍ତି ତପବେଦ ॥
ବାଳ ଗୋପାଳ ତନୁ ଶ୍ୟାମ । ନୂତନ ତନୁ ଅଭିରାମ ॥
କନକ ଡୋରି କଟିତଟେ । ତରକ୍ଷୁ ନଖ ଶୋଭେ କଣ୍ଠେ ॥
ଦେଖି ଆନନ୍ଦ ବ୍ରଜନାରୀ । ବାଳକ ରୂପଧ୍ୟାନ କରି ॥

କଲ୍ପ ସଂପୂର୍ଣ୍ଣେ ତନୁ ତ୍ୟାଗୀ । ଗୋପେ ହୋଇଲେ ଜନ୍ମଭାଗୀ ॥
ସୁବୀର ଗୋପଘରେ ଜାତ । କାମେଶ ରୂପେ ତପୋବନ୍ତ ॥
ନବ କିଶୋରୀ ବେଣୀବାଳା । ନିର୍ମଳ ପ୍ରଭା କାନ୍ତିମାଳା । ୨୩ ।
ବ୍ରହ୍ମା ହାରବ ଦେଖି ଗଯ୍ୟାଂନ । ରୂପେ ମୋହନ୍ତି ତ୍ରିଭୁବନ ।୨୪।
ଶ୍ରୀକୃଷ୍ଣ ଭାବେ ମନ ଦେଇ । ସୁବୀର ଘରେ ଜନ ନେଇ ॥
ସେମନ୍ତେ ନାରଦ ପ୍ରବେଶ । ଦେଖି ସୁବୀର ମନ ତୋଷ ॥
ମୁନିଙ୍କି ନମସ୍କାର କଲା । ବିନୟ ଭାବରେ ପୂଜିଲା ॥
ଘରେ ରଖିଲା ଜନା ସ୍ଥିର । ଅତିଥି ଭାବେ ସେବା କରି ॥
ସୁବୀର ଗୋପ ବେନ ସୁତା । ନୟନେ ଦେଖି ବ୍ରହ୍ମ ବେତ୍ତା ॥
ଚରଣେ ଲାଗିଲେ ନମସ୍କାର । ବୋଲନ୍ତି ଶୁଣ ମୁନିବର ॥

କନ୍ୟା ଉବାଚ

ତୁମ୍ଭେ ପରମ ଭାଗବତ । ତୁମ୍ଭରେ ତରିବେ ଜଗତ ।୩୧।
ଆମ୍ଭର ପୂର୍ବ ପୁଣ୍ୟବଳେ । ତୋତେ ଦେଖିଲୁ ଚର୍ମଡୋଳେ ॥
ହେ ମୁନି କର ପ୍ରତିକାର । ଲଭିବୁ ଯଶୋଦା କୁମର ॥
ନିର୍ମଳ ପ୍ରଭା କାନ୍ତିମାଳା । ସହଜେ କୃଷ୍ଣ ରସେ ଭୋଳା ॥
ମୁନି ଚରଣ ତଳେ ପଡ଼ି । ଉଠିଲେ କର ପଦ ଯୋଡ଼ି ॥
ତାଙ୍କ ବିନୟ ଦେଖି ଋଷି । କଲ୍ୟାଣ ବଚନ ପ୍ରକାଶି ॥

ନାରଦ ଉବାଚ

କୃଷ୍ଣ କରିବେ ଅନୁଗ୍ରହ । ମନରେ ନ କର ସନ୍ଦେହ ॥
ତୁମ୍ଭେ ତାହାର୍ଥୀ ମନୋହାରୀ । ତୁମ୍ଭଙ୍କୁ ଦେବେ ବେଣୁଆରି ।୩୮।
କରିବେ ରାସରଙ୍ଗେ ଲୀଳା । ଶ୍ରୀବୃନ୍ଦାବନ ନନ୍ଦ ବାଳା ॥
ନାରଦ ମୁଖୁଂ ବାକ୍ୟ ଶୁଣି । ସନ୍ତୋଷ ସୁବୀର ଦୁଲଣୀ ॥
ତାହାଙ୍କ ଭାବେ ମନ ଜାଣି । ଭକତ ବୃନ୍ଦ ଶିରୋମଣି ॥
ଗମନ କଲେ ଅନ୍ୟ ସ୍ଥାନେ । ମନ ନିବେଶି କୃଷ୍ଣ ଧ୍ୟାନେ ॥

ସୁଧର୍ମ ଚନ୍ଦ୍ର ସତ୍ୟ ସନ୍ଧ । ମଙ୍ଗଳ ଧନ୍ୟ ଧର୍ମ କନ୍ଧ ॥
ନନ୍ଦ ଦ୍ୱା ଭାବେ ଶୁକ୍ର ଋଷି । ତପ ସାଧିଲେ ଜଳେ ବସି ॥
ପୁଣି ତ ରମା ସପ୍ତ କାମ । ଯେ ଦଶାକ୍ଷର ମନ୍ତ୍ରନାମ ।
ଜପ କରନ୍ତି ମନ ଦମି । ଶ୍ରୀକୃଷ୍ଣ ଭାବ ଯଶଣାମି ।୪୭।
ଧ୍ୟାନେ ଚିନ୍ତନ୍ତି କୃଷ୍ଣରୂପ । ପରମାନନ୍ଦ ରସ କୂପ ॥
ଭ୍ରମନ୍ତି ନୃତ୍ୟ ରସ ରଙ୍ଗେ । ନଟ ଗୋପାଳ ବାଳ ସଙ୍ଗେ ॥
ସର୍ବାଙ୍ଗେ ଚନ୍ଦନ ଭୂଷିତ । ପଦ୍ମ କୁସୁମ ବର୍ତ୍ତଂସିତ ॥
କହ୍ଲାର ମାଳ ଶୋଭେ କଣ୍ଠେ । ପୀତ ବସନ କଟି ତଟେ ॥
ପଦ୍ମରେ କନକ ନୂପୁର । ସୁବେଶ ନଟ ମନୋହର ॥
ଧ୍ୟାନ କରନ୍ତି ନଟ ବେଶ । ପ୍ରେମଭକ୍ତି ତନ୍ମ କଲ୍ପ ଶେଷ ॥
ସେ ଶୁକ୍ର ଋଷି ଗୋପପୁରେ । ଜନ୍ମିଲେ ସୁରସେନ ଘରେ ॥
ଧର୍ମ ଚନ୍ଦ୍ରକା ସତ୍ୟବନ୍ତି । ମଙ୍ଗଳ ପ୍ରଭା ଦୀପ୍ତ କାନ୍ତି ।୪୮।
ତରୁଣ ବପ୍ସ ସୁନ୍ଦରୀ । ରୂପ ଜିଣିଲେ ତନ୍ମ ପୁରୀ ॥
ଦିବ୍ୟ ବେଶ ଅଳଙ୍କାର । ରତ୍ନ ବସନ ଉପହାର ॥
ସେବା ଦୁର୍ଲଭ ସୁର ପୁରେ । ସେ ମିଳେ ସୁରସେନ ଘରେ ॥
ଇଚ୍ଛାରେ ତନୁ ବେଶ କରି । ରତ୍ନ ଭୂଷଣେ ଭଳ ଶୁଭ୍ର ॥
ସମ୍ପୂର୍ଣ୍ଣ ଚନ୍ଦ୍ର ଜ୍ୟୋତି ଗଞ୍ଜେ । ତେଜ ଅଦ୍ଭୁତ ଉଜ୍ଜ୍ୱଳରଞ୍ଜେ ॥
ସୁରସେନର ଗୃହ ସୁତା । ଶ୍ରୀକୃଷ୍ଣ ଭାବେ ଭନ୍ମମତ୍ତା ॥
ତାହାଙ୍କ ପୁରେ ଦେବ ଋଷି । ଆନନ୍ଦେ ଶୁର ଭମିଆସି ॥
ପ୍ରବେଶ ବ୍ରହ୍ମାର ନନ୍ଦନ । ଦେଖି ଆନନ୍ଦେ ସୁରସେନ ।୬୨।
ବୋଲଇ ପାଦ ତଳେ ପଡ଼ି । କର ପଲ୍ଲବ ଶିରେ ଯୋଡ଼ି ।

## ସୁରସେନ ଉବାଚ

ହେ ଦେବ ଋଷି ବ୍ରହ୍ମାସୁତ । ଦୁସ୍ତରୁଂ ହୋଇଲା ମୁକତ ॥
ତୁମ୍ଭଙ୍କୁ ଦେଖିଲା ନୟନେ । କି ଫଳ ଅଛି ବ୍ରହ୍ମଗ୍ୟାଂନେ ॥

ଦେବତା ପିତୃ ସର୍ଗ୍ୟଂ କାଳେ । ଅକ୍ଷୟ ଦାନ ତୀର୍ଥ ଫଳ ॥
ସର୍ବ ମଙ୍ଗଳ ମୋର ଆଜ । ଲଭିଲି ତୁମ୍ଭ ପାଦ ରଜ ॥
ପ୍ରେମନ୍ତେ କଲ୍ପ ପୂଜା କଲ୍ପ । ନିଜ ମନ୍ଦିରେ ବାସ ଦେଲ୍ପ ॥
ମୁନି ରହିଲେ ଦିନା ଦଶ । ଆନନ୍ଦେ ସୁରସେନ ବାସ ।୭୯।
.ତାର ଦୋହିତା ମନ ତୋଷ । ସେବା କରନ୍ତି ମୁନି ପାଶେ ॥
କୁଶ ଅର୍ଜ୍ଜୁନ ହୋମ ବଧି । ଘୃତ ତଣ୍ଡୁଳ ଯେ ପ୍ରସିଦ୍ଧି ॥
ଦଧି ପାୟସ ଦ୍ରବ୍ୟ ଯେତେ । ଦିଅନ୍ତି ମୁନିଙ୍କ ଅଗ୍ରତେ ॥
ମୁନି ବଚନ ପ୍ରତିପାଳି । ସମୀପେ ଥାନ୍ତି ଗୋପବାଳୀ ॥
ଶ୍ରୀକୃଷ୍ଣ ଭାବେ ମନେ ଧରି । ବଚନେ ପ୍ରକାଶ ନ କରି ॥
ସେବା କରନ୍ତି କୃଷ୍ଣଦାସ । ଶ୍ରୀକୃଷ୍ଣ ପାଦପଦ୍ମ ଆଶ ॥
ନାରଦ ଜାଣି ତାଙ୍କ ମନ । କହନ୍ତି ମଧୁର ବଚନ । ୭୬ ।

ଶୁଣ ମୋ ସୁରସେନ ସୂତା । ଶ୍ରୀକୃଷ୍ଣ କରନ୍ତୁ ଚିନ୍ତା ॥
ତୁମ୍ଭେ ତାହାଙ୍କ ପ୍ରିୟବନ୍ତୀ । ତା ଚିନ୍ତା କରିବା ଯୁଗତି ॥
ଶ୍ରୀ ବୃନ୍ଦାବନେ ନନ୍ଦସୂତ । ମୂରଲୀ ସ୍ୱନେ ତୁମ୍ଭ ଚିତ୍ତେ ॥
ମୋହିବେ ଜଗତମୋହନ । ତୁମ୍ଭେ ସରବେ ନିଜ ଜନ ॥
ତୁମ୍ଭ ସଙ୍ଗତେ ଲୀଳା କରି । ରସ ମଣ୍ଡଳେ ନରହରି ॥
ବ୍ରହ୍ମକୁ କରି ଆଳିଙ୍ଗନ ।ସଂପୂର୍ଣ୍ଣ କରିବ ଗୋମନ ॥
ନାରଦ ବାକ୍ୟ କର୍ଣ୍ଣେ ଶୁଣି । ଆନନ୍ଦେ ଲୋଟିଲେ ଧରଣୀ ॥
ବୋଲନ୍ତି ଶୁଣ ମୁନିବର । ତୁମ୍ଭ ବଚନ ବେଦସାର ।୮୪।
ସେ ମହାପ୍ରଭୁ ବ୍ରହ୍ମବଶି । ତାହାବେ ଆମ୍ଭ ମନ ଭାସି ॥
ଇତର ଜନ କେସେ ହରି । ସଚରାଚରେ ଅଛି ପୂରି ॥
ସେ ପ୍ରଭୁ ତୁଲେ ଅଭିଳାଷ । ସଂପୂର୍ଣ୍ଣ କଲୁ ଆମ୍ଭେଆଶ ।
ତୁମ୍ଭ ପ୍ରସନ୍ନେ ଦେବହରି । ଆମ୍ଭଙ୍କୁ କରୁଣାବିସ୍ତାରି ॥
ଆମ୍ଭେ ଅଜ୍ଞାନୀ ଗୋପୀଜନ । କରୁଣାସିନ୍ଧୁ ଭଗବାନ ॥

ଭଟେଟଷେ ତୁମ୍ଭ ଆଜ୍ଞା ପାଇ । ଶ୍ରୀକୃଷ୍ଣ ପାଦେ ମନ ଦେଇ ॥
ଦାନ ବାଞ୍ଛିବୁ ଅନୁଷଣେ । ତ୍ରୋମୁନି ତୁମ୍ଭର କଲ୍ୟାଣେ ॥
ଯେତ୍ମନ୍ତ କହି ଗୋପବାଳୀ । ନ ମିଳେ ଶିରେ କରତାଳି ॥
ତାହାଙ୍କ ଭାବେ ବ୍ରହ୍ମାସୁତ । ଆନନ୍ଦେ ହୋଇ କୃତ କୃତ୍ୟ ॥
ବୋଇଲେ ନମସ୍କରିଲ ଆଜ । କରୁଣା କଲେ ଦେବରାଜ ॥
ଯେତ୍ମନ୍ତ ବୋଲି ମୁନିବର । ବୁଲନ୍ତି ଗୋକୁଳ ନଗର । ୯୩ ।
ସେ ମୁନି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥
ସୁଜନେ ଶୁଣ କୃଷ୍ଣ ରସ । ଗୋପୀଜନଙ୍କ ପୁଣ୍ୟଯଶ ॥
ଯେତ୍କାଳେ ପାର୍ବତୀ ଅଗ୍ରତେ । ଯାହା କହିଲେ ଶୂଳହସ୍ତେ ॥
ସେକଥା କଲି ଗୀତରସ । ସୁଜନ ପାଦେ ମୋର ଆଶ ॥

ଇତି ଶ୍ରୀମହାରମ ରହସ୍ୟେ ଶୈବାଗମେ ଗୋପୀକାନୁଭାବ ବର୍ଣ୍ଣନେ ନାମ ଅଷ୍ଟମୋଽଧ୍ୟାୟଃ

## ନବମ ଅଧ୍ୟାୟ

### ଈଶ୍ୱର ଉବାଚ

ରୁଦ୍ର ବୋଲନ୍ତି ପ୍ରିୟେ ଶୁଣ । ସେ ଗୋପୀଜନଙ୍କର ଗୁଣ । ୧ ।
ପରାର୍ଦ୍ଧ ଧାର୍ଦ୍ଧତପା ମୁନି । ଜନ୍ମିଲେ ବ୍ୟାସଅଂଶ ଘେନି ॥
ତାଙ୍କ ଆତ୍ମାରୁ ପୁତ୍ରଜାତ । ବ୍ୟାସ ସମାନେ ଗୁଣବନ୍ତ ॥
ସେ ପୁତ୍ର ଜାତ ମାତ୍ରହୋଇ । ଶ୍ରୀକୃଷ୍ଣ ନାମ ଉଚ୍ଚାରଇ ॥
ଶୁକ ପରାୟେ ତା ବଚନ । ଦେଖି ହରଷ ମୁନିଜନ । ୫ ।
ସମସ୍ତେ ମିଳିଲେ ଆଶ୍ରମ । ଥାପିଲେ ଦେଲେ ଶୁକନାମ ॥
ବାଳେକ ରୂପେ ଶୁକମୁନି । ପରମ ବ୍ରହ୍ମ ତତ୍ତ୍ୱଜ୍ଞାନୀ ॥
ସେ ମହାଗ୍ୟାନୀ ଶୁଦ୍ଧିଜତ । ଭବେକ ଧାର୍ମିକ ସୁମତ ॥
ସୁହୃଦ ଇଷ୍ଟପ୍ରୀତିଜନ । ତେଜ ସକଳ ବନ୍ଧୁମାନ । ୯ ।

ଗ୍ରୁଡ଼ିଲ୍ ମାତା ପିତା ଆସ । ଘୋର ଗହନେ କଲାବାସ ॥
ମାନସ ଉପଗୃରେ ଯତ୍ତ । କୃଷ୍ଣ ପୂଜଇ ଦିବାରାତ୍ର ॥
ରମା ପ୍ରତିଷ୍ଠିତ ମନ୍ତ୍ରବର । ଜପଇ ଅଷ୍ଟାଦଶାକ୍ଷର ॥
ଆହାର ତନୁ ଦେହ ଧରି । ଗୋପାଳ ରୂପ ଧ୍ୟାନ କରି ॥
ଭାବଇ ହେମ କଳ୍ପତରୁ । ହେମ ମଣ୍ଡପ ମହାଗୁରୁ ॥
ମଣ୍ଡପେ ରତ୍ନ ସିଂହାସନ । ବିଜୟେ ଗୋକୁଳ ନନ୍ଦନ ॥
କନକ ବଂଶୀ ବାମପାଣି । ଅପାଙ୍ଗ ତ୍ରି ଭଙ୍ଗୀ ଗୃହାଣି ॥
ହେମ ପଙ୍କଜ ଦକ୍ଷକରେ । କେକୀ ଚନ୍ଦ୍ରକା ଶିଖ ପରେ । ୧୭ ।
ଶ୍ରବଣେ ମକର କୁଣ୍ଡଳ । କଣ୍ଠେ ତୁଳସୀ ଦଳମାଳ ॥
କଟିରେ ଶୋହେ ପିତ ପଟି । କଳପ୍ଟୁ କଟି ବାହୁଟି ॥
ଯୁବତୀ ରତ୍ନ ବେଢ଼ ପାଶେ । ଦିବ୍ୟ ଭୂଷଣ ଗୁରୁବେଶ ॥
ଦେହ କନକ ମଞ୍ଜୁ କାନ୍ତି । ତଡ଼ିତ ତେଜ ଅଙ୍ଗଭ୍ରାନ୍ତି ॥
ନବ କଶୋର ବେଢ଼ ବାଳା । ଶ୍ରୀକୃଷ୍ଣ ପ୍ରେମରସେ ॥
ଏରୂପ ଧ୍ୟାନ କଲେ ଭକ୍ତ । କୃଷ୍ଣ ଚରଣ ପଦ୍ମ ପ୍ରାପ୍ତି ॥
କଲ୍ପାନ୍ତେ ତେଜି କଳେବର । ଜନ୍ମ ଲଭିଲା ଗୋପପୁର ॥
ଗୋପାଳ ଉପନନ୍ଦ ନାମ । ତା ଘରେ ହୋଇଲା ଜନମ । ୧୮ ।
ନୀଳ ଉତ୍ପଳ ଦଳ ପ୍ରଭା । ଲାବଣ୍ୟ ତନୁ ମହାଶୋଭା ॥
ପୀତ ବସନ ପଟ୍ଟଛନ୍ଦ । ବଚନ କୋକିଳ ନିନାଦ ॥
ସିନ୍ଦୂର ବିନ୍ଦୁ ଭାଲପଟେ । ସ୍ୱର୍ଣ୍ଣ କୁଣ୍ଡଳ କର୍ଣ୍ଣପଟେ ॥
ଷାଠ କୁମ୍ଭକ ଲତା ସୁନ୍ଦା । ସର୍ବା ବସୁକ ସୁବର୍ଣ୍ଣିନୀ ॥
ସ୍ୱର୍ଣ୍ଣ ପଙ୍କଜ ମାଳା ହୃଦେ । କୁସୁମ ସୁଗନ୍ଧ ଆମୋଦେ ॥
ସଖୀଜନଙ୍କୁ ଘେନି ସଙ୍ଗେ । ଦିନ ବଞ୍ଚଇ ନନା ରଙ୍ଗେ ॥
କୃଷ୍ଣ ଚରଣେ ଚିତ୍ତବଳ । ସୁମତି ନାମେ ଗୋପବାଳୀ ॥
ତା ପୁରେ ପ୍ରବେଶ ନାରଦ । ଦୂରୁଁ ଦେଖି ଉପନନ୍ଦ ।୧୯।

ଆନନ୍ଦେ ଆସନ ଦେଲେ ଆଣି । ମୁନୀଙ୍କ ଚରଣ ପୂଜିଲା ॥
ଆଦର କରି ଗୃହେ ନେଇ । ଷଡ଼ଭୋଗ ଉପହାର ଦେଇ ॥
ସେବକ ଅତିଥି ବେଶରେ । ନାରଦ ରହିଲେ ତା ଘରେ ॥
ତାହାର ଦୁହିତା ସୁମନ୍ତି । ଜାଣିଲା ନାରଦଙ୍କ ଗତି ॥
ଆସଇ ଋଷିବେଶ ହୋଇ । ତୁଟେ ଜଗତ ପାପର ମୋହ ॥
ହସ୍ତରେ ଘେନିଛି ଶ୍ରୀଫଳ । ନମଇ ମୁନୀ ପାଦତଳ ॥

ସୁମନ୍ତି ଉବାଚ

ବୋଲଇ କୃତାଞ୍ଜଳି ହୋଇ । ହେ ମୁନୀ ନିସ୍ତରିଲି ମୁହିଂ ।୪୦।
ସହଜେ ଅଜ୍ଞାନ ପ୍ରକୃତି । ବାଳ ଚଞ୍ଚଳ ମୋର ମତି ॥
ତୁମ୍ଭ ମହିମା ନଜାଣଇ । ଅଜ୍ଞାନ ଭାବେ ପଚାରଇ ॥
ନନ୍ଦ ମନ୍ଦିରେ ଦେବ ହରି । ସମ୍ପୂର୍ଣ୍ଣ ଅଂଶେ ଅବତରି ॥
ଖଣ୍ଡିବେ ଅବନୀର ଭାର । ସୁଜନେ କରିବେ ନିସ୍ତାର ॥
କରୁଣା ସିନ୍ଧୁ ବ୍ରହ୍ମଋଷି । ତା ଭାବେ ମୋର ମନ ଭାସି ॥
ତାର ଅଭୟ ପଦ୍ମପାଦେ । ମନ ମୋ ରହିଲା ଆନନ୍ଦେ ॥
ସେ ମୋତେ କରୁ ଅନୁଗ୍ରହ । ଏ କଥା ବିଷମ ସନ୍ଦେହ ॥
ମୁଂ ଥିର କୋଟିକେ ଅନ୍ତର । ସେ ତ ଅନାଦି ନିରାକାର ॥
ଏମନ୍ତ ବୋଲି ଶୋକଭରେ । ନମଇ ମୁନୀଙ୍କ ପଦରେ ॥

ନାରଦ ଉବାଚ

ନାରଦ ବୋଲନ୍ତି ଗୋ ମାଏ । ତୋତେ ପ୍ରସନ୍ନ ଦେବରାଏ ।୫୦।
ତୁମ୍ଭ ନିମନ୍ତେ ବେଣୁଧର । ନନ୍ଦ ମନ୍ଦିରେ ଅବତାର ।୫୧।
ଧ୍ୟାନେ ମୁଂ ଜାଣିଲି ସକଳ । ତୁମ୍ଭ ସଙ୍ଗତେ ନନ୍ଦବାଳ ॥
ଲୀଳା କରିବେ ବୃନ୍ଦାବନେ । ଶରଦ ପୂର୍ଣ୍ଣିମୀର ଦିନେ ॥
ଶୁଣି ସୁମନ୍ତି ମନତୋଷ । ଅଧିକୁ ହରିଭକ୍ତ ଦୃଶ୍ୟ ॥
ଦରିଦ୍ର ପାଇଲେକ ନିଧି । ଯୋଗୀ ଲଭିଲେ ଜ୍ଞାନସିଦ୍ଧି ॥

ଶ୍ରୀକୃଷ୍ଣ ପାଦେ ଦେଇମନ । ଆନନ୍ଦ ସୁମଣ୍ଡର ମନ ॥
ନାରଦ ହୋଇଲେ ଅନ୍ତର । ଉମାଙ୍କୁ କହନ୍ତି ଶଙ୍କର ॥

## ଈଶ୍ୱର ଉବାଚ

ପୂର୍ବେଗୋ ଶ୍ୱେତ କେତୁ ସୁତ । ବେଦ ବେଦାଙ୍ଗରେ ନିଷ୍ଠିତ ॥
ଅଖିଳ ସଙ୍ଗ ପରିତ୍ୟାଗୀ । ତପ ସାଧନେ ମହାଯୋଗୀ ॥
ସେ ମହାଯୋଗୀ ଘୋରବନେ । ଶ୍ରୀକୃଷ୍ଣ ପ୍ରାପତି ସାଧନେ .
ଜପଇ ଏକାକ୍ଷର ମନ୍ତ୍ର । ଚିନ୍ତଇ କୃଷ୍ଣ ଶକ୍ତି ଯୁକ୍ତ ॥
ଯେ କୃଷ୍ଣ ଶକ୍ତି ପରାନନ୍ଦ । ସୁର ସେବିତ ପଦଦ୍ୱନ୍ଦା ॥
ସୁଧା ମଧୁର ଆଳାପିନୀ । ବ୍ରହ୍ମାରୁଦ୍ରାଦି ସମୋହିନୀ ॥
ଯେକାନ୍ତ ଭାବେ ପ୍ରିୟଭକ୍ତା । ଗୁଣ କାରଣେ ପରିଶକ୍ତା ॥
ପରମାନନ୍ଦେ ଅନୁରାଗୀ । ପ୍ରେମ କାରଣ ରସସଙ୍ଗୀ ॥
ପରମ ଯୋଗୀଙ୍କି ଦୁର୍ଗମ । ଧ୍ୟାନେ ଚିନ୍ତଇ ଆତ୍ମାରାମ ॥
ଯେମନ୍ତେ ଗଲା କଳ୍ପଭିନ୍ନ । ସିଦ୍ଧି ଲଭିଲା ମହାମୁନ ॥
ଜନ୍ମିଲା ବଳସେନ ଘରେ । ଅଙ୍ଗନା ରୂପ ମନୋହରେ ॥
କଅବା ଦେବୀଙ୍କ ଉପମା । ହ୍ରିକ୍ଷାପୁ ରୂପେ ଦେବୀରମା ॥
ସୁନ୍ଦର ବଳସେନ ସୁତା । ରୂପ ଲାବଣ୍ୟ ଆନନ୍ଦିତା ॥
ବିଳାସ ମୋହିନୀ ତା ନାମ । ତିନି ଭୁବନେ ନୋହିସମ ॥
ପଦ୍ମ ଚରଣ ପଦ୍ମପାଣି । ପଦ୍ମ ନୟନ ଗୁରୁଶ୍ରେଣୀ ॥
ପଦ୍ମ କୁନ୍ତଳ ସ୍ତମ୍ଭବାଳ । କଣ୍ଠେ ଲମ୍ବଇ ମୋତିମାଳ ॥
ବଦନ ଚନ୍ଦ୍ର ପରେ ରମା । କେଶ ପଟଳଘନଶ୍ୟାମ ।୭୪।
ଅମୃତ ସ୍ରବଣୀ କୁଣ୍ଡଳ । ଶ୍ରବଣ ତଟେ ଟଳଟଳ ॥
କପୋଳେ କସ୍ତୁରୀ ପତ୍ରିକା । କଣାପୁ କଙ୍କଣ ମୁଦ୍ରିକା ।୭୫।
ରତ୍ନ ବଳୟ ବଦମା[illegible] । ରଙ୍ଗ ବସନ ପିନ୍ଧିବାଳୀ ॥
ସହଜେ ଦିବ୍ୟ ବେଶହୋଇ . । ଅଶେଷ ଭୁବନ ମୋହଇ ॥.

ଶ୍ରୀକୃଷ୍ଣ ପାଦେ ତାର ମନ । ଜାଣି ନପାରେ ଅନ୍ୟଜନ ॥
ସେମନ୍ତେ ବଳସେନଘରେ । ନାରଦ ଅତିଥି ବେଶରେ ॥
ପ୍ରବେଶ ହୋଇଲେ ହରଷେ । ଦେଖିଗୋପାଳ ମନତୋଷ ॥
ଚରଣ ପ୍ରକ୍ଷାଳିଲା ଜଳେ । ନମିଲା ମୁନି ପାଦ ତଳେ ॥

ବଳସେନ ଉବାଚ

ବୋଲଇ ଧନ୍ୟ ମୋ ଜୀବନ । ଦେଖିଲି ବ୍ରହ୍ମାର ନନ୍ଦନ ॥
ସ୍ୱନଯ୍ନେ ହୋଇ ଗୃହେଦେନେଲ । ବିବିଧ ମତେ ପୂଜାକଲା ॥
ଦୁହିତା ବିଳାସ ମୋହିନୀ । ବାଳକ ଭାବେ ମହାଗ୍ୟାନୀ ॥
ବୋଲଇ ପିତା ମୁଖଚାହିଁ । ମନ ଚଞ୍ଚଳ କାହିଁ ପାଇଁ ॥
ଗୋପାଳ ବୋଲଇ ଗୋ ମାତ । ମୋ ପୁରେ ବିଜେ ବ୍ରହ୍ମାସୁତ ॥
ତାହାଙ୍କ ପାଦେ ସେବାକର । ଅଶେଷ ସଙ୍କଟୁ ନସ୍ତର ॥
ପିତା ବଚନେ ଶୁଭକେଶୀ । ସନ୍ତୋଷ ମନେ ଅଳୁହସି ॥

ବିଳାସ ମୋହିନୀ ଉବାଚ

ମୋହିତେ ମିଳା ଦେବଋଷି । ଯେଵୁହା ଘରକୁ ଛନ୍ତି ଆସି ।୯୦
ସେମନ୍ତ ଭାଳ ଶୁଦ୍ଧଚିତ୍ତେ । ଶ୍ରୀକୃଷ୍ଣ ଭାବ ଅନୁଗତେ ॥
ସୁବର୍ଣ୍ଣ ବର୍ଣ୍ଣ ଶିରୋମଣି । ମୁନି ସେବକାନ୍ତ କାଳଜାଣି ॥
ହସ୍ତରେ ଘେନି ଉପହାର । ଚରଣେ କଲା ନମସ୍କାର ॥
ମୁନି ଅଗ୍ରତେ ଉଭାହୋଇ । କର ଅଞ୍ଜଳି ଶିରେ ଦେଇ ॥
ବୋଲଇ ମଧୁର ବଚନ । ହେ ଦେବ ଋଷି ତପୋଧନ ॥
ତୁମ୍ଭେ ଯେ କୃଷ୍ଣ ଚନ୍ଦ୍ର ସଙ୍ଗୀ । ଶ୍ରୀକୃଷ୍ଣ ରସ ରଙ୍ଗ ରଙ୍ଗୀ ॥
ତୁମ୍ଭେ ଶ୍ରୀକୃଷ୍ଣ ଭାବ ଜାଣି । ସଂଚର ଅଶେଷ ଧରଣୀ ॥
ତୁମ୍ଭଙ୍କୁ କଲି ଦରଶନ । ମୋତେ କହିବ କୃଷ୍ଣ ଧ୍ୟାନ ॥

ନାରଦ ଉବାଚ

ହସି ବୋଲନ୍ତି ଦେବଋଷି । ମାହା କହିଲ ଶୁଭକେଶୀ ॥
ତା ଧ୍ୟାନ କେହି ନ ଜାଣିଲ । ଯାହାକୁ ଯେମନ୍ତ ଦିଶଇ ॥

ସେ ରୂପେ କରଇ ସେ ଧ୍ୟାନ । ଅରୂପ ଶ୍ରୀନନ୍ଦନନ୍ଦନ ।୧୦୧।
ଯାହାର ଆଦ୍ୟ ଅନ୍ତ ନାହିଁ । ମନ ବଚନେ ଭେଟକାହିଁ ॥
ଯେ ଭାବ ଯେତେବେଳେ ଧରି । ସେ ଭାବେ ତାଙ୍କୁ ଧ୍ୟାନକରି ॥
ସର୍ବ ସ୍ୱରୂପ ନର ହରି । ନନ୍ଦ ମନ୍ଦିରେ ଅବତରି ॥
ତୁମ୍ଭ ସଙ୍କେତେ ଯେତେ ଭାବ । ଶ୍ରୀ ବୃନ୍ଦାବନେ ବିସ୍ତାରିବ ॥
ସେ ଭାବ ଧ୍ୟାନ ଯୋଗେ ଚିନ୍ତି । ଆମ୍ଭେ ତରିବୁ ସର୍ବଜନ୍ତୁ ॥
ଅଶେଷ ମୁନି ଜନ ହିତେ । ଶ୍ରୀକୃଷ୍ଣ ତୁମ୍ଭର ସଙ୍ଗତେ ॥
ଲୀଳା କରିବେ ବୃନ୍ଦାବନେ । ଆମ୍ଭେ ଜାଣିଲୁ କୃଷ୍ଣ ଧ୍ୟାନେ
ଯେମନ୍ତ କହି ମୁନିବର । ତୁମ୍ଭର ଧରି ନିଜ କର ॥
ବୋଲନ୍ତି ମନୋହର ବାଣୀ । ଶୁଣ ସୁକଣ୍ଠ ଶିରୋମଣି ॥
ଶ୍ରୀ ବୃନ୍ଦାବନେ କୃଷ୍ଣ ସଙ୍ଗେ । ରାସ ବିନୋଦ ରସରଙ୍ଗେ ॥
ତୁମ୍ଭର ଧରି ସେବାକର । ପ୍ରାଣ ବଲ୍ଲଭ ମନହର ॥
ଯେମନ୍ତ କହି ମନ ଯାନେ । ତକ୍ଷଣେ ଗଲେ ଅନ୍ୟସ୍ଥାନେ ॥
ତୁମ୍ଭର ଯେଣେ ଗୋପବାଳୀ । ଆନନ୍ଦେ ନପୂନ ଉଚ୍ଛୁଳି ॥
କୃଷ୍ଣ ଚିନ୍ତଇ ପ୍ରେମଭରେ । ପୁଲକ ଉଦ୍‌ଗମ ଶରୀରେ ॥
ସମସ୍ତ ଗୋପୀକା ଆଖ୍ୟାନ । ଯେ କରେ ଶ୍ରବଣ କୀର୍ତ୍ତନ ॥
ଲଭଇ ଅଖଣ୍ଡିତ ପ୍ରେମ । ଖଣ୍ଡଇ ଅଖିଳ ସଂଭ୍ରମ ॥
ସମସ୍ତ କଳାସ ମୋହିମା । ତାଙ୍କ ଚରଣେ ଦେଇ ମୁର୍ଦ୍ଧି ॥
କହଇ ବିପ୍ର ଜଗନ୍ନାଥ । ଗୋପୀଜନଙ୍କ ପରମାର୍ଥ ॥

ଇତିଶ୍ରୀମତ ପରମହଂସେ । ଶୈବାଗମେ ଗୋପୀକାନୁଭାବବର୍ଣ୍ଣନେ
ନାମ ନବମୋ ଽ ଧ୍ୟାୟଃ

## ଦଶମ ଅଧ୍ୟାୟ

### ଈଶ୍ୱର ଉବାଚ

ସୁଜନେ ଶୁଣ ରସବାଣୀ । ପାର୍ବତୀ ଆଗେ ଶୂଳପାଣି ।୧।
କହନ୍ତି କୋମଳ ବଚନ । ଯେ ଶୁଣି କଲେ ଗୋପୀଜନ ॥

ମର୍ତ୍ତ୍ୟ ମଣ୍ଡଳେ ମହାରାଜ । ତାହାର ନାମ ଚନ୍ଦ୍ର ଧ୍ୱଜ ॥
ସେ ରଜା ବିଷ୍ଣୁ ସେବା କରି । ସଙ୍କେ ପୂଜନ୍ତି ନରହରି ॥
ଶ୍ରୀକୃଷ୍ଣ ପ୍ରସନ୍ନେ ତାହାର । ଉପୁଜି ହୋଇଲା କୁମର ॥
ଚନ୍ଦ୍ର ବଦନ ତାର ଗତି । ଦେଖି ସନ୍ତୋଷ ମହୀପତି ॥
ସେ ପୁତ୍ର ନାମ ଚନ୍ଦ୍ର ଧ୍ୱଜ । ତାକୁ ପ୍ରସନ୍ନ ଦେବରାଜ ।୨।
କୁମାର କାନ୍ତ କୃଷ୍ଣଦାସ । ଭାବେ ଉଦଇ ପୀତବାସ ॥
ସମ ସୁଶାନ୍ତ ଶୀଳ ଗୁଣ । ସ୍ୱଭାବେ ବିଷ୍ଣୁ ପରାୟଣ ॥
ପୁତ୍ରକୁ ଦ୍ୱାଦଶ ବରଷେ । ନୃପତି ମନର ସନ୍ତୋଷେ ॥
ବ୍ରାହ୍ମଣ ଦ୍ୱାରେ ଉପଦେଶ । ଯେ ସିଦ୍ଧ ବର୍ଣ୍ଣ ଅଷ୍ଟାଦଶ ॥
ନିଜ ପୁତ୍ରକୁ ଦୀକ୍ଷା କରି । ଦେବତା ପୂଜା ହୋମସାରି ॥
ତୀର୍ଥ ପବିତ୍ର ମନ୍ତ୍ରୋଦକ । ପୁତ୍ରକୁ କଲେ ଅଭିଷେକ ॥
ନୃପତି ପୁତ୍ର ଚନ୍ଦ୍ର ଧ୍ୱଜ । ଚିତ୍ତେ ଚିନ୍ତଇ ଦେବରାଜ ॥
ଅଶ୍ରୁ ପୁଲକ ପ୍ରେମଭରେ । ଆନନ୍ଦେ ବାହ୍ୟ ଅଭ୍ୟନ୍ତରେ ॥
ପୀତ ବସନ ମଣିହାର । ବିବିଧ ରତ୍ନ ଅଳଙ୍କାର ।୧୨।
ସୁବେଶ କଲା ନିଜ ତନୁ । ଜପଇ କୃଷ୍ଣ ସିଦ୍ଧମନ୍ତ୍ରୁ ॥
ଶ୍ରୀକୃଷ୍ଣ ଉପଭୋଗ ଶେଷ । ନୈବେଦ୍ୟ କରେ ଆସ୍ୱାଦ୍ୟେ ସେ ॥
ଦିବସ ଶେଷେ ସ୍ନେହ ହୋଇ । ବିଜନ ସ୍ଥାନ ବିଚାରଇ ॥
କେମନ୍ତେ ଭଜିବି କୃଷ୍ଣଙ୍କୁ । ଚିନ୍ତିବି ଶ୍ରୀକୃଷ୍ଣ ରୂପକୁ ॥
ସଙ୍ଗତେ ଘେନି ଗୋପନାରୀ । ଶ୍ରୀବୃନ୍ଦାବନପିନେ ବିହରି ॥
ଗୋପୀଜନଙ୍କ ପ୍ରାଣନାଥ । ମୋହୋର ପ୍ରଭୁ କେଶ୍ରୁହସ୍ତ ॥
ତା ବିନୁ ବ୍ୟର୍ଥ ଜୀବନ । ଯେମନ୍ତେ ବିଚାରି ନିଜ ମନ ।୧୩।
ଆକୁଳମତି ନୃପ ସୁତ । ଚିନ୍ତା ଅଳସେ ନିଦ୍ରାଗତ ॥
ସ୍ୱପ୍ନେ ଦେଖଇ ଅଦଭୁତ । ସହଜେ ଶ୍ରୀକୃଷ୍ଣ ଭଗତ ॥
ମାଣିକ୍ୟ ରତ୍ନମୟ ପୀଠେ । କନକ ବେଦୀ ପଦ୍ମପୃଷ୍ଠେ ॥

ବଗଙ୍କେ ରତ୍ନ ସିଂହାସନ । ମଣି କିରଣ ଝନ ଝନ ॥
ଗୋପାଳ ରୂପ ଦେବ ହରି । ତଥି ବଜାଇ ବଂଶୀଧର ॥
ତ୍ରିଭଙ୍ଗୀ ରୂପେ ହୋଇ ଉଭା । ଶିଖେ ଶିଖଣ୍ଡି ପୁଚ୍ଛ ଶୋଭା ॥
ଜଳନ୍ଦି ବର ଶ୍ୟାମ ତନୁ । ସ୍ୱ ସ୍ୱରେ ବାଜେ ମୃଦୁବେଣୁ ॥
ପାଶେ ଅଛନ୍ତି ବେନ ସଖୀ । ଶରଦ ପୂର୍ଣ୍ଣ ଚନ୍ଦ୍ର ମୁଖୀ ।୩୧।
ସ୍ୱାମୀଙ୍କ ଆଙ୍ଗଭର ଦେଇ । ଅଳସ ଲୋଚନେ ଅନାଇ ॥
ଶ୍ରୀକୃଷ୍ଣ ତାଙ୍କୁ ଅନୁରାଗେ । କର ପ୍ରସାରି ବେନ ଅଙ୍ଗେ ॥
ଆଶ୍ଳେଷ କରି ଚୁମ୍ବ ଦେଇ । ପ୍ରେମ କଲ୍ଲୋଳେ ମଗ୍ନ ହୋଇ ॥
କୃଷ୍ଣ ବିଳାସ ରୂପ ଗର୍ବ୍ବି । ସଂକୋଚ ଭାବେ ଦୂରେରହି ॥
ମନ ଆନନ୍ଦେ ସଲଜ୍ଜିତ । ଅପୂର୍ବ ଦେଖି ମୋହଗତ ॥
ଅଧୋବଦନେ ଦୂରେ ରହି । କୃଷ୍ଣଙ୍କୁ ନପାରଇ ଚୁହିଂ ॥
କୋଟି ମଦନ ରୂପସାର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ତା ମନ ଜାଣି ବେଣୁ ପାଣି । ସମୀପେ ଥିଲା ଯେ ତରୁଣୀ ।୩୯।
ତାକୁ ବୋଲନ୍ତି ପ୍ରିୟଙ୍କର । ଶୁଣ ମୋ ପ୍ରାଣ ସହଚରୀ ॥

ଶ୍ରୀକୃଷ୍ଣ ଉବାଚ

ଦେଖ କୁମର ଚନ୍ଦ୍ର ଧ୍ୱଜ । ଚନ୍ଦ୍ରଧ୍ୱଜର ଯେ ଆତ୍ମଜ ॥
ତୋ ଭାବ ଲଭିବାର ଆଶେ । ଧ୍ୟାନେ ମିଳିଲା ମୋର ପାଶେ ॥
ତୋ ଅଙ୍ଗ ତେଜ ତାକୁ ଦେଇ । ଯେମନ୍ତେ ତୋ ରୂପ ଲଭଇ ॥
ତେମନ୍ତ କରି ନର୍ତ୍ତକରି । ଯୁବତୀ ହେଉ ଏ କୁମର ॥
ଶ୍ରୀକୃଷ୍ଣ ମୁଖୁଂ ବାକ୍ୟ ଶୁଣି । ସନ୍ତୋଷେ ଚଳିଲା ତରୁଣୀ । ୪୫ ।
ମିଳିଲା ଚନ୍ଦ୍ର ଧ୍ୱଜ ପାଶେ । ମଧୁର ବଚନ ଆଶ୍ୱାସେ ॥
ଶୁଣ କୁମର ଶିରୋମଣି । ତୋ ପୁଣ୍ୟ କେ ପାରିବ ଗଣି ॥
ଶ୍ରୀକୃଷ୍ଣ ହୋଇଲେ ପ୍ରସନ୍ନ । ଧନ୍ୟ ହୋଇଲା ତୋ ଜୀବନ ॥
ପ୍ରେମନ୍ତେ ବୋଲି ରତ୍ନମାଳା । ଲମ୍ବାଇ କୁମରର ଗଳା ॥

ତରୁଣୀ ରୂପେ ତାକୁ ଦେଇ । ଆପଣା ତେଜରେ ମିଶାଇ ॥
ଉରଜ ବେନି ହୃଦେଶୋଭେ । ବସ୍ତ୍ର ଘୁଞ୍ଚାଣି କୃଷ୍ଣ ମୋହେ ॥
ମଣି କଙ୍କଣ ତାଡ଼ଚୂଡ଼ । ଅଙ୍ଗଭୂଷଣ ଅଙ୍ଗେଗଢ଼ ॥
ପାଦରୁ ପାଦ ଯେତେ ଦେଖାଳ । ସୁନ୍ଦରବଦନେ ରୂପଶାଳ । ୫୩ ।
କୁମାରୀ ରୂପ ନୂପ ସୂତ । ଅଧୋବଦନେ ସଲ୍ଲଜିତ ॥
ତ ଭାବ ଜାଣି ମହତେଶ । ଆପଣା କରେ କର ଧରି ॥
ଶ୍ରୀକୃଷ୍ଣ ହସ୍ତେ ସମର୍ପିଲ । ହରଷେ ଆଲିଙ୍ଗନ କଲ ॥
ତାଦେଖି ଦେବ ଋଷିରାଜ । ବାମ ପାର୍ଶ୍ୱେ ପ୍ରାଣସଖ୍ୟ ॥
ତାହାକୁ କରି ଆଲିଙ୍ଗନ । ବୋଲନ୍ତି ମଧୁର ବଚନ ॥
ସେ ସଖି ସ୍ୱେ ତୋହର ଦାସୀ । ତୋ ପାଦେ ସେବୁ ହବାନସି ॥
ଜ ସେବା କରିବ ସ୍ୱେ କହ । ମନଇଚ୍ଛାସ୍ୱେ ନାମ ଦିଅ ॥
ପ୍ରିୟ ବଦନୁ ବାକ୍ୟ ଶୁଣି । ଆନନ୍ଦେ ବୋଲଇ ତରୁଣୀ । ୬୧ ।
ସ୍ୱେହାର ନାମ ତରଳା । ଗାନ୍ଧାର ବଦ୍ୟାରେ କୁଶଳା ॥
ହିପଞ୍ଚି ଘେନ ମୋର ପାଶେ । ଗୀତ ଗାଇବ ମନତୋଷେ ॥
ତୋପାଦେ କର ଅନୁରାଗ । ସ୍ୱେତ ପରମ ମହାଭାଗ୍ୟ ॥
ସ୍ୱେତେ ବୋଲିଲ କୃଷ୍ଣନାଥ । ବୀଣା ଗୋଟିଏ କରେ ଧରି ॥
ତାହାର ହସ୍ତେ ତୋଳିଦେଲେ । ଶ୍ରୀକୃଷ୍ଣ ସମୁଖେ ରହିଲେ ॥
ନୃପତି ପୁତ୍ର ଚିତ୍ରକଳା । ଶ୍ରୀକୃଷ୍ଣ ଭାବେ ହୋଇ ଭୋଳା ॥
ସେ ବେନି ସଖିଙ୍କ ଚରଣେ । ପ୍ରଣାମ କଲ ତତକ୍ଷଣେ ॥
କୃଷ୍ଣ ଅଦ୍ଭୁତ ରୂପ ଦେଖି । ପିଚ୍ଛୁଡ଼ି ନ ପାରଇ ଆଖି ॥
କୃଷ୍ଣ ଚରଣେ ନମସ୍କାର । ଆନନ୍ଦେ କଲ ତିନିବାର ॥
ଯନ୍ତ୍ର ଧଇଲ ନିଜ କରେ । ଗୀତ ଗାଇଲ ମୃଦୁସ୍ୱରେ ।୭୧।
ପରମ ଆନନ୍ଦ ସାଗରେ । ତାମନ ଭାସିଲ ନିର୍ଭରେ ॥
ସ୍ୱପ୍ନେ ଶ୍ରୀକୃଷ୍ଣ ଅଙ୍ଗସଙ୍ଗେ । ପ୍ରେମ କଲ୍ଲୋଳେ ଉଦରଙ୍ଗେ ।

ସତ ପରାପ୍ତେ ମଣିଥିଲ । ସୁସୁପ୍ତି ନିଦ୍ରାହର କଲ ॥
ଆକୁଳ ଭାବେ ନୃପସୁତ । ନିବେଦନ କରଇ ବହୁତ ॥
ଚିନ୍ତା କରଇ ବହୁଗଣି । ସ୍ୱପ୍ନଭାବରେ ମନଭାସି ॥
ହାରକୁଣ୍ଡଳ ରତ୍ନମାନ । ଛିଣ୍ଡାଇ ପକାଇଲା ତଳ ॥
ଆହାର ଛାଡ଼ିଲା ତୁରିତେ । ଶ୍ରୀକୃଷ୍ଣ ଭଜିବା ନିମନ୍ତେ ॥
ପିତାଜନନୀ ବନ୍ଧୁଜନେ । ଧାର୍ମିକ ପାତ୍ର ମନ୍ତ୍ରୀ ମାନେ ।୭୯।
ବୋଧ କହିଲେ ନଶୁଣଇ । ଚିତ୍ତ ପ୍ରତିମା ପ୍ରାପ୍ତେ ରହି ॥
ସମ୍ପୂର୍ଣ୍ଣ ମାସେ ଥିଲା ଘରେ । ଉଦାସ ଜନଙ୍କ ବେଶରେ ।
ରଜନୀ କାଳେ ଘୋର ବନେ । ଗମନ କଲା ତୋଷମନେ ॥
ମୁନି ଦୁବସହ୍ର ତପ ସାଧି । କଲ୍ପ ସମ୍ପୂର୍ଣ୍ଣେ ଲଭେ ସିଦ୍ଧି ॥
ଗୋପାଳ ଶାର ଘୋଷ ନାମ । ତାଘରେ ହୋଇଲା ଜନମ ॥
ତାହାର ନାମ ଚନ୍ଦ୍ରକଳା । ସ୍ୱଦେହେ ଭଜସ୍ତୁ କମଳା ॥
ରୂପ ଲାବଣ୍ୟ ଦେଖି ତାର । ଆନନ୍ଦେ ଜନନୀ ପିଅର ॥
ଅଶେଷ ବ୍ରହ୍ମାଣ୍ଡ ମୋହିନୀ । ଗୃଲନ୍ତେ ସୁନ୍ଦର ଅବନୀ ॥
ତରୁଣ ରୂପ ନିତମ୍ବିନୀ । ଦେଖି ଢଳବେ ସୁରମୁନି ॥
ତାପରେ ବନେ ବ୍ରହ୍ମାଶିଷ । ଦୁରୁହୁଁ ଦେଖି ବୀର ଘୋଷ ॥
ଚରଣ ତଳେ ଶିର ଦେଇ । ପ୍ରଣାମ କଲା ଉଭା ହୋଇ ॥
ବିନୟ ହୋଇ ଗୃହେ ନେଲା । ବ୍ରହ୍ମା ସମାନେ ପୂଜା କଲା ॥
ବିବିଧ ଉପହାର ଦେଇ । ଅତିଥି ବେଶରେ ସେବଇ ॥
ମୁନି ରହିଲେ ତା ମଢରେ । ଶ୍ରୀକୃଷ୍ଣ ଅଗ୍ୟାଂ ଘେନି ଶିରେ ॥
ତାହା ଜାଣିଲେ ଚନ୍ଦ୍ରକଳା । କରୁଣା କଲେ ପଦ୍ମ ତୋଳା ।୯୪।
ନୋହିଲେ କନ୍ୟା ଦେବ ଋଷି । ମୋର ଭୁବନେ ମିଳେ ଆସି ॥
ଯେତେ ବଶୃତ ବେଶ ହୋଇ । ବିବିଧ ଅଳଙ୍କାର ଲଇ ॥
ବସ୍ତ୍ର ଚନ୍ଦନ ପୁଷ୍ପ ଫଳ । ତାମ୍ବୁଳ ପଣ କନ୍ଦମୂଳ ॥

ଗୃହଂତ ସଜ ହସ୍ତେ ଘେନ । ଗମନ କରଇ କାମେଣୀ ॥
ମୁନୀଙ୍କି ଦେଖି ବେନ ଡୋଳେ । ପ୍ରଣାମ କଲା ପାଦତଳେ ॥

ଚନ୍ଦ୍ରକଳା ଉବାଚ

ବୋଲଇ ଧନ୍ୟ ମୋ ଜୀବନ । ଦେଖିଲି ବ୍ରହ୍ମାର ନନ୍ଦନ ॥
ତୁ ଦେବ ମହନ୍ତ ପୁରୁଷ । କୃଷ୍ଣର ଅଟୁ ତୁ ବିଶ୍ୱାସ ॥
ତୋର ପ୍ରସାଦେ କୃଷ୍ଣପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ।୧୦୨।

ନାରଦ ଉବାଚ

ଶୁଣି ବୋଲନ୍ତି ଦେବ ଋଷି । ସାଧୁ କହିଲୁ ଗୁରୁ କେଶୀ ॥
ସେ କଥା କୁହଇ ଗୋ ଧାନ । ତୋତେ ପ୍ରସନ୍ନ ଭଗବାନ ॥
ପୂର୍ବେ ଅନେକ ତପକଲି । ବର ମାଗିଲୁ ଦେବ ହରି ॥
ସେ ହରି କରୁଣା ସାଗର । ଭଗତଜନଙ୍କ ସୋଦର ॥
କମଳା ଅଂଶେ ତୋତେ ଜାତ । ଗୋକୁଳେ କଲେ ବେଣୁହସ୍ତ ॥
ତୁ ତାଙ୍କ ପ୍ରାଣ ମନୋହାରୀ । ତୋତେ ନୋହନ୍ତି କେବେ ପର ॥
ତୋ ଭାବ ପଥେ ଯେତେ ଜନ । ଭଜିବେ ଶ୍ରୀନନ୍ଦନନ ।୧୦୯।
ହେଲେ ବସିବେ ବିଷ୍ଣୁ ଗ୍ରାମ । ଲଭିବେ ଅଖଣ୍ଡିତ ପ୍ରେମ ॥
ହେ ମାତ କର ମୋତେ ଦୟା । ଶ୍ରୀକୃଷ୍ଣ ଚନ୍ଦ୍ର ପ୍ରାଣପ୍ରିୟା ॥
ପୂର୍ବେ ମୁଁ ବୈକୁଣ୍ଠ ଭୁବନେ । ଗମିଲି ଲୋକ ପର୍ଯ୍ୟଟନେ ॥
ବୀଣା ବଜାଇ ନୃତ୍ୟ କରି । ଶ୍ରୀକୃଷ୍ଣ ନାମ ମୁଖେ ଧରି ॥
ଲକ୍ଷ୍ମୀ ସହିତେ ସରସ୍ୱତୀ । ସଙ୍ଗତେ ଘେନ ନଜପତି ॥
ବିଜୟ କରିଛନ୍ତି ଯହିଁ । ପ୍ରବେଶ ହୋଇଲେ ମୁଁ ତହିଁ ॥
ରମା ସହିତେ ଭଗବାନ । ମୋତେ ହୋଇଲେ ସୁପ୍ରସନ୍ନ ॥
ସାରଦା ଥିଲେ ସେ ସମୀପେ । ବୋଇଲେ ମଧୁର ଆଳାପେ ୧୧୭

ସାରଦା ଉବାଚ

ହେ ମୁନିଶୁଣ ମୋ ବଚନ । ତୁମ୍ଭେ ଯେ ଭ୍ରମ ତ୍ରିଭୁବନ ।୧୧୮।
ଶ୍ରୀ କୃଷ୍ଣ ନାମ ଧରି ମୁଖେ । ବୀଣା ବଜାଇ ମହାସୁଖେ ॥

ଜଗତ ଜନକଙ୍କୁ ନମସ୍କାର । ଶ୍ରୀ କୃଷ୍ଣ ଭାବେ ନୃତ୍ୟକର ॥
ଭାବେ ତୋଷିଲୁ ମୋର ମନ । ଯେମନ୍ତ କଲ୍ପ ସରସ୍ୱତୀ ॥
ବୀଣାଯେ ସନ୍ମୋହିନୀ ନାମ । ତିନଭୁବନେ ନୋହିସମ ॥
ମୋକରେ ଦେଲେ ହସ୍ତତାଳ । ଦେଖି ସନ୍ତୋଷ ବନମାଳୀ ॥
ସେ ବୀଣା ଧରି କରକରେ । ବାଦ୍ୟନ କଲେ ପଞ୍ଚସ୍ୱରେ ॥
ମୋହିଲ ଶ୍ରୀହରିର ମନ । କୃତାର୍ଥ କଲଇ ଜୀବନ ।୧୨୫।
ତୋତେ ଦେଉଛୁ ମନତୋଷେ । ଯେବୀଣା ଦେଣ କୃଷ୍ଣପାଶେ ॥
ପଞ୍ଚମସ୍ୱରେ ଗାନ୍ଧର୍ବ ଗୀତ । ହେଲେ ମୋହିବୁ କୃଷ୍ଣଚନ୍ଦ୍ର ॥
ଯେମନ୍ତ କଲ୍ପ ବୀଣା ଦେଇ । ନାରଦ ଅନ୍ତର୍ଦ୍ଧାନ ହୋଇ ॥
ଆନନ୍ଦ ଚନ୍ଦ୍ରକଳା ମନ । ଚିନ୍ତଇ ଶ୍ରୀନନ୍ଦନନ୍ଦନ ॥
ଅଙ୍ଗ ପୁଲକ ସମାକୁଳ । ଯେସନ୍ତେ କଦମ୍ବ ପୁଷ୍ପମାଳ ॥
ସଜଳ ନୟନେ କାମେଶୀ । କୃଷ୍ଣ ସ୍ମରେ ବୀଣାଧେନ ॥
ଚନ୍ଦ୍ର ନଟବର ପଦ୍ମପାଦେ । ଆନନ୍ଦ ଶୋକ ଗଦଗଦେ ॥

ଚନ୍ଦ୍ରକଳା ଉବାଚ

ବୋଲଇ ଧନ୍ୟ ମୋ ଜୀବନ । ଶ୍ରୀକୃଷ୍ଣ ହୋଇବେ ପ୍ରସନ୍ନ ।୧୩୩।
ରସେ ରମିବେ ବୃନ୍ଦାବନେ । ସଙ୍ଗତେ ଥିବେ ଗୋପିଜନ ॥
ଧନ୍ୟ ନାରଦ ମୁନିବର । ଜାଣନ୍ତି କୃଷ୍ଣ ତତ୍ତ୍ୱସାର ॥
ନୟତେ ବସନ୍ତ ସୁଖୀହୋଇ । ସୁଜନେ ଶୁଣ ମନଦେଇ ॥
ଗୋପିଜନଙ୍କ ପୁଣ୍ୟ କଥା । ଶ୍ରବଣେ ନାଶ ସର୍ବବ୍ୟଥା ॥
ଗୋପୀ ଶ୍ରୀକୃଷ୍ଣ ସଙ୍ଗପଥ । ନହୋଇ ଦାସ ଜଗନ୍ନାଥ ॥

ଇତିଶ୍ରୀମତ୍ ପରମରହସ୍ୟେ ଶୈବାଗମେ ଗୋପୀକାନ୍ତ ଭାବବର୍ଣ୍ଣନେ
ନାମ ଦଶମୋଽଧ୍ୟାୟଃ

## ଏକାଦଶ ଅଧ୍ୟାୟ

ପାର୍ବତୀ ଉବାଚ

ଶିବ ଅଗ୍ରତେ ଗୋସାମଣି । ବିନମ୍ର ହୋଇ ବୋଲେ ବାଣୀ ।୧।
ହେଦେବ ଦେବ ତ୍ରିଲୋଚନ । କୃତାର୍ଥ କର ମୋ ଜୀବନ ॥

ଗୋପୀଙ୍କ ପୁଣ୍ୟ ଗୁଣମାନ । ଶ୍ରବଣ କଲେ ମୋ ମନ ॥
ବିଶେଷି କହ ପ୍ରାଣନାଥ । ଶୁଣି ବୋଲନ୍ତି ଶୂଳହସ୍ତ ॥

ଈଶ୍ୱର ଉବାଚ

କଶ୍ୟପ ବଂଶରେ ଜନମ । ଯେମନ୍ତ ପୁଣ୍ୟଶ୍ରଦ୍ଧା ନାମ ॥
ପରମଧର୍ମ ସେ ଜାଣଇ । ରୁଦ୍ର ସଙ୍ଗତେ ବଖାଣଇ ।୭।
ଅଷ୍ଟାଙ୍ଗ ଯୋଗ ସିଦ୍ଧକରି । ପୂଜଇ ଶଙ୍କର ଗଉରୀ ॥
ନିଷ୍କାମ ଚିତ୍ତେ ବ୍ରହ୍ମମୂନି । ମୋତେ ଭାବଇ ଜନ୍ମତିନି ॥
ତାହାର ତପେ ତୋଷହୋଇ । ତାହାର ସଙ୍ଗତେ ଯେନମୁହିଂ ॥
ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ । ନିଶାର୍ଦ୍ଧେ ଗଲି ଶୁଭ୍ରକେଶୀ ॥
ବୃଷ ବାହାନେ ତାରପାଶେ । ମିଳିଲି ମନର ସନ୍ତୋଷେ ॥
ଦେଖି ଆନନ୍ଦେ ମୁନିବର । ଶିରେ ଲଗାଇ ବେନିକର ॥
ବହୁତ କଲା ମୋତେସ୍ତୁତି । ସେ ପୁଣ୍ୟ ସ୍ତବ ବ୍ରହ୍ମଯତି ॥
ସନ୍ତୋଷେ ଦେଲି ବରଦାନ । ତୋହର ହୋଇବ ନନ୍ଦନ ।୧୪।
ବାଳକ କାଳେ କୃଷ୍ଣପାଦେ । ଭାବେ ଭଜିବ ଅପ୍ରମାଦେ ॥
ଅଷ୍ଟମ ବରଷ ସମ୍ପୂର୍ଣ୍ଣେ । ବେଦ ସାଙ୍ଗ ହୋମଦାନେ ॥
ସଂସ୍କାର କରି ତାର ଗାତ୍ର । ଦୀକ୍ଷା କରିବୁ ନିଜ ପୁତ୍ର ॥
ବିଦ୍ୟା ଗୋପାଳ ନାମ ମନ୍ତ୍ର । ବଂଶତ ବର୍ଣ୍ଣେ ସୁଦ୍ଧ ଯନ୍ତ୍ର ॥
ଯେମନ୍ତେ ସାରଦା ଆନନ୍ଦ । ବଚନ ସିଦ୍ଧ ବରପ୍ରଦ ॥
ହେଲେ ଦିଅଇ ଭୁକ୍ତି ମୁକ୍ତି । ନିଷ୍କାମେ ଲଭେ କୃଷ୍ଣଭକ୍ତି ॥
ସ୍ୱୟଂ ଶ୍ରୀକୃଷ୍ଣ ମନ୍ତ୍ରରୂପୀ । ମନ୍ତ୍ର ବିଧାନ ଯୋଗେ ବ୍ୟାପୀ ॥
ମନ୍ତ୍ର ସ୍ୱାଧ୍ୟାରେ ସର୍ବଲପ୍ତେ । ମନ୍ତ୍ର ସ୍ୱରୂପ ବ୍ରହ୍ମଯେ ।୧୧।
ଆଦ୍ୟେ ମଦନ ବୀଜମାୟା । ମଙ୍ଗ ଭଗୃତ ପଦ୍ମାଳୟା ॥
ଯେ ବର୍ଣ୍ଣଗୃହ ଦାମୋଦର । ରେଙ୍ଗ ସଙ୍ଗତେ ବିନ୍ଦୁ ଶିର ॥
ମଧ୍ୟରେ ଦଶାକ୍ଷର ମନ୍ତ୍ର । ତ୍ରି ବୀଜ ବମାଇବ ପ୍ରାନ୍ତ ॥

ବସାନ୍ତ ଭକ୍ତ ମନ୍ତ୍ରନ୍ୟାସେ । ଋଷି ଦେବତା ବୃନ୍ଦ ବୈକଣ୍ଠ ॥
ସର୍ବାଙ୍ଗ ଶ୍ରୀ ମୂତ ଆମ୍ନାଧ୍ୟେ । ଚିନ୍ତବ ଧାମ ଜ୍ୟୋତିମଯ୍ୟେ ॥
ଯେ ଧାମ କାଳନ୍ଦୀ ବେଷ୍ଟିତ । ଶ୍ରୀବୃନ୍ଦାବନ ମଧ୍ୟଗତ ॥
ଯେ ବନେ ସର୍ବ ଋତୁରଙ୍ଗେ । ଦ୍ରୁମ ସଙ୍କୁଳ ମନ ମୋଦେ ॥
କୁସୁମ ବଲ୍ଲୀ ମହାଶୋଭା । କନକ କାନ୍ତ ବଦ୍ୟ ପ୍ରଭା ।୩୦।
ନୃତ୍ୟ କରନ୍ତ ଶିଖିବାତ । ଗାବନ୍ତି ପିକ ମଧୁବ୍ରତ ॥
ସେବନ ମଧ୍ୟେ ପାରିଜାତ । ଦ୍ରୁମ ବିସ୍ତାର ଯୁଣ ଶତ ॥
ଶାଖା ପ୍ରଶାଖା ବିସ୍ତାରିତ । ନବ ପଲ୍ଲବ ପଲ୍ଲବିତ ॥
ସେ ବୃକ୍ଷ ବାହ୍ଯ ବୃନ୍ଦାବନେ । ଧେନୁ ମଣ୍ଡଳ ମଧ୍ୟଭାଗେ ॥
ଧେନୁ ମଣ୍ଡଳ ଦକ୍ଷପାଶେ । ଗୋପାଳେ ନଟବର ବେଶେ ॥
କରନ୍ତ ବେଣୁ ବୀଣାବାଦ୍ୟ । ନିଶାଣ କାହାଳୀ ଶବଦ ॥
ପଶ୍ଚିମ ଦିଗେ ଗୋପବାଳୀ । ଆନନ୍ଦେ ହୋଇ କୃତାଞ୍ଜଳୀ ॥
ନେ ହସ୍ତେ ଧେନ ଉପାୟନ । ପ୍ରମୋଦେ ବହ୍ୱଳିତ ମନ ।୩୧।
ଶୁକ୍ଳା ଭରଣ ବିଭୂଷିତ । ପ୍ରେମ ଭାବରେ ପରିସ୍ପୃତ ॥
ତାହାଙ୍କ ପାଶେ ଶ୍ରୁତିକନ୍ୟା । କୃଷ୍ଣ ଶ୍ରୋଭଣି ମହାଧନ୍ୟା ॥
ପ୍ରାଣ ବଲ୍ଲଭ ଗୁଣଗାଇ । ଆନନ୍ଦେ ଶିରେ କରଦେଇ ॥
ଯେ ଗୃନ୍ଦାବନ ମଧ୍ୟଦେଶ । ସେରଙ୍ଗ ଭୂମି ସୁପ୍ରକାଶ ॥
ସେ ଭୂମି ମଧ୍ୟେ କଳ୍ପତରୁ । ଉଚ୍ଚର୍ଗ ଦୀର୍ଘ ସମଗୁରୁ ॥
ଦ୍ରୁମ ମୂଳରେ ସିଂହାସନ । ଉପରେ ବାନ୍ଧିଛି ବିତାନ ॥
ଦୁକୂଳ ଶଯ୍ୟା ପରେ ହରି । ବଜସ୍ପେ ରାଧା ଭୁଜଧରି ।୩୨।
ହସ୍ତେ ମୋହନ ବଂଶୀ ଶୋଭା । ମର୍କତ ଗ୍ରଞ୍ଜେ ତନୁପ୍ରଭା ॥
ନୀଳ ରାଜୀବ ନେତ୍ରଯୁଗ । ପୀତ ବସନ କଟିଭାଗ ॥
ବରହୀ ପୁଛ ଚୂଡ଼ ଗଳ । ମକର ଆକୃତ କୁଣ୍ଡଳ ॥
ହୃଦରେ ନବ ମୋତିହାର । ଶ୍ୟାମ ଜଳଦେ ଯେସନ୍ଥତାର ॥

କଣ୍ଠେ ତୁଳସୀଦଳ ମାଳ । ଲମ୍ବଇ ପଦ୍ମପାଦ ତଳେ ।୫୧।
ବାହେ ବାହୁଟି ବଦ ମାଳ । ମୁଦ୍ରିକା ବିରାଜେ ଅଙ୍ଗୁଳ ॥
କୋଟି ମଦନ ରୂପଗଞ୍ଜି । ଅଶେଷ ଜନ ମନରଞ୍ଜି ॥
ନବକିଶୋର ରୂପରାଶି । ହୃଦେ ଚିନ୍ତିବ ଦିବାନିଶି ॥
ପ୍ରେମମନ୍ତ୍ର ଧ୍ୟାନକର ଇଷ୍ଟ । ପୁତ୍ରକୁ ଦେବୁ ମୁନିଶ୍ରେଷ୍ଠ ॥
ଅନ୍ୟଥା ଶିଷ୍ୟକୁ ନ ଦେଇ । ଯେ ଆତ୍ମାଶୁଭ ମନାସଇ ॥
ଶୁଣି ସନ୍ତୋଷ ବ୍ରହ୍ମସୁତ । ଆନନ୍ଦେ ବନ୍ଦେ ନେତ୍ର ବାର ॥
ତାହାଙ୍କୁ ଦୀକ୍ଷା ବିଧି କହି । ଗଗନେ ଗଲ ପ୍ରାଣସହି ।
ପ୍ରବେଶ କଇଲାସ ପୁରେ । ଶୁଣିମା ସେଥୁ ଅନନ୍ତରେ ।୫୯।
ସେ ପୁଣ୍ୟଶ୍ରବା ମୁନିବର । ମଧ୍ୟରେ ଥିଲେ ଯେ କୁମର ॥
ସାବିତ୍ରୀ ବେଦ ମନ୍ତ୍ର ଦାନ । ପୁତ୍ରକୁ କହି ଦିବ୍ୟ ଜ୍ଞାନ ॥
ସେପୁତ୍ର କୃଷ୍ଣ ଦୀକ୍ଷାପାଇ । ଘୋର ତପିଲେ ଦୁଃଖସହି ॥
ଦ୍ୱାଦଶ କଳ୍ପଯାଏ ତଳେ । ତପସାଧିଲ ଯୋଗବଳେ ॥
ସୁକଣ୍ଠ ଗୋପ ଘରେ ଜାତ । କାମେଶ୍ୱା ରୂପେ ତପୋବନ୍ତ ॥
ତାହାର ନାମ ଚିତ୍ରକଣ୍ଠୀ । ଦେଖିଲେ ମୋହଇ ନବସୃଷ୍ଟି ॥
ତାପୁରେ ଜନେ ବ୍ରହ୍ମାସୁତ । ସୁକଣ୍ଠ ଦେଖି କୃତ କୃତ ।୬୭।
ମୁନିଙ୍କି ନିଜ ଗୃହେ ନେଇ । ଶ୍ରୀହରି ସମାନେ ପୂଜଇ ॥
ତାର ଭଗତି ଭାବ ଦେଖି । ମୁନି ରହିଲେ ଦିନାନ୍ତରେ ॥
ଦୁହିତା ଚିତ୍ରକଣ୍ଠୀନାମ । ମୁନିଙ୍କି କରଇ ପ୍ରଣାମ ॥
ବୋଲଇ ପାଦତଳେ ପଡ଼ି । କର ପଲ୍ଲବ ଶିରେ ଯୋଡ଼ି ॥

ଚିତ୍ରକଣ୍ଠୀ ଉବାଚ

ହେ ଦେବ ସିଦ୍ଧ ମହାପତି । ମୋହୋର ଅଗ୍ୟାନ ପ୍ରକୃତି ॥
ଲଭିବ ଶ୍ରୀକୃଷ୍ଣ ବିଗ୍ରହ । ହେମୁନି କର ଅନୁଗ୍ରହ ॥
ନାରଦ ବୋଲନ୍ତି ଗୋମାପ୍ୟେ । ନିକଟେ ଲଭ ଦେବରୂପେ ।୭୩।

ଶ୍ରୀବୃନ୍ଦାବନେ ରାସଲୀଳା । ତୋର ସଙ୍ଗରେ କହିବଳା ॥
କରିବେ ଶରଦ ରାତ୍ରିରେ । ଯମୁନା ନଦୀ କୂଳଦରେ ॥
କଲ୍ୟାଣ କରି ମୁନିବର । ସେଠାରୁ ହୋଇଲେ ଅନ୍ତର ॥
ସନ୍ତୋଷ ହୃଦ କର୍ଣ୍ଣିମନେ । ଦିନ ବଞ୍ଚଇ କୃଷ୍ଣଧ୍ୟାନେ ॥
ଗୋପ ନଗରେ ମୁନିବର । ଦେଖନ୍ତି ସକଳ ମନ୍ଦିର ॥
ଯେତେ ଅଛନ୍ତି ଗୋପବାଳୀ । ଦେଖି ନାରଦ ତପଶାଳି ॥
ଆନନ୍ଦ ହୋଇ ମନେମନ । ଚିନ୍ତନ୍ତି କମଳ ଲୋଚନ ॥
ଅତଥିଭାବେ ମହାମୁନି । ଦେଖନ୍ତି ଗୋକୁଳ କାମେଶୀ ।୮୧।
ସମସ୍ତେ ଲକ୍ଷ୍ମୀ ପଟାନ୍ତର । କେବଳ ମହିମା ତାଙ୍କର ॥
ସେ ଗୋପୀଜନଙ୍କ ଦର୍ଶନେ । ନାରଦ ଉଲ୍ଲସିତ ମନେ ॥
ଦେଖନ୍ତି ପଶି ପୁରେ ପୁରେ । ଭାବ ଜାଣନ୍ତି ଅଭ୍ୟନ୍ତରେ ॥
କେତେ କହିବା ନାମଧର । ଗୋଳ ସହସ୍ର ବ୍ରହ୍ମଭାଗ ॥
ଯେବେ ଆରକେ ମୁନିବର । ତପସ୍ୟା କଲେ ଅଗୋଚର ॥
ମଞ୍ଜେ ମନୁଷ୍ୟ ଦେହବହି । ପ୍ରାକୃତ ଭାଷାରେତା କହି ॥
କେମନ୍ତେ କରିବ ଭରସା । ଜାଣନ୍ତି ଦେବ କୃତ୍ତିବାସ ॥
କହନ୍ତି ପାର୍ବତୀ ଅଗ୍ରତେ । ଆନନ୍ଦ ମନେ ବ୍ରହ୍ମା ସୁତେ ।୮୯।
ଗୋପାଙ୍କ ନୟନେ ଦେଖନ୍ତି । ଶ୍ରୀକୃଷ୍ଣ ଭାବ ବର୍ତ୍ତନ୍ତି ॥
ମାଧବୀ ମାଳତୀ କନ୍ୟକା । ଲବଙ୍ଗା ଅଶୋକ ମାଳିକା ॥
ପୃଥୁଳା ରଙ୍ଗଣୀ ସେବତୀ । ମୃଦୁଳା ବୃନ୍ଦା ସ୍ୱର୍ଣ୍ଣାବତୀ ॥
କୁନ୍ଦ ପାଟଳୀ ଚନ୍ଦ୍ରବମ୍ବା । ବହୁଳା ଜାତି ମଧୁଶ୍ରବା ॥
ମଞ୍ଜରୀ କଳା ବରଶ୍ମିଜା । ମଙ୍ଗଳା ବକୁଳ ମାଳିକା ॥
ଝିଲ୍ଲିକା ତାରା ବ୍ରହ୍ମାପୁଣୀ । ଶ୍ୟାମଳା ସହସ୍ର ପାର୍ବଣୀ ॥
କୁମୁଦା ବାସନ୍ତି ସରଳା । ନବ ମାଳିକା ପ୍ରେମକଳା ॥
ଶତ ପଦ୍ମିକା ଲୀଳାବତୀ । ମଧୁରୀ ମନୋହରୀ ସତୀ ।୯୭।

ସରଳା ଚନ୍ଦ୍ରା ମଞ୍ଜୁମଣି । ଅଶେଷ ଗୋକୁଳ ଯୁବତୀ ॥
ଭାବେ ଦେଖନ୍ତି ବ୍ରହ୍ମାସୁତ । କେତେହେଂ ବଦନେ କହେ ଅନ୍ତ ॥
ସେ ଗୋପୀଜନଙ୍କ ମହିମା । ବଚନେ କେ କହିବ ସୀମା ॥
ଶ୍ରୀକୃଷ୍ଣ ଚନ୍ଦ୍ର କୃପାବଳେ । ନାରଦ ଦେଖି ଚର୍ମ ଡୋଳେ ॥
ଭଜିଲେ ଶ୍ରୀକୃଷ୍ଣ ଚରଣେ । ଷୋଳ ସହସ୍ର ଗୋପୀଗଣେ ॥
ସେ ଗୋପୀଜନଙ୍କର ପାଦ । ପଦ୍ମ ଗଳିତ ମକରନ୍ଦ ॥
ଭ୍ରମର ପ୍ରାପ୍ତେ ମନ କର । ବ୍ରାହ୍ମଣ ଜଗନ୍ନାଥ ତର ॥

ଇତି ଶ୍ରୀମତ ପରମ ରହସ୍ୟେ ଶୈବାଗମେ ଗୋପୀକାନୁଭାବ
କୀର୍ତ୍ତନେ ନାମ ଏକାଦଶୋଽଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

### ଈଶ୍ୱର ଉବାଚ

ନନ୍ଦ ସମାନେ ମହାଭାଗ୍ୟେ । ସେ ବୃଷଭାନୁ ନାମ ହୋଏ ॥
ତାପୁରେ ନାରଦ ପ୍ରବେଶ । ଯାତନ୍ତି କରନ୍ତି ବୀଣା ଘୋଷ ॥
ଦୂରୁହୁଁ ଦେଖି ବୃଷଭାନୁ । ତକ୍ଷଣେ ଉଠିଲା ଆସନୁ ॥
ପ୍ରଣାମ କଲା ମୁନିପାଦେ । ପୂଜଇ ପରମ ଆନନ୍ଦେ ॥

### ବୃଷଭାନୁ ଉବାଚ

ବୋଲଇ ଶୁଣ ମହାମୁନି । ଧନ୍ୟ ମୋ ପିଅର ଜନନୀ ॥
ଧନ୍ୟ ଜୀବନ ଆଜ ମୋର । କରୁଣା କଲେ ଦାମୋଦର ॥
ଧନ୍ୟ ମୋହର ପୁଣ୍ୟବଳ । ଦେଖିଲି ବ୍ରହ୍ମାର ଦୁଲାଳ ॥
ଗୋପାଳ ହୋଏ କୃତ କୃତ୍ୟ । ଦେଖି ବୋଲନ୍ତି ତପୋବନ୍ତ ॥

### ନାରଦ ଉବାଚ

ଧନ୍ୟ ଗୋପାଳ ବୃଷଭାନୁ । ଧାର୍ମିକ ଅଛୁ କେତେ ବନୁ ॥
ତିନି ଭୁବନେ ତୋର ଯଶ । ଚନ୍ଦ୍ରମା ପ୍ରାୟେକ ପ୍ରକାଶ ॥

ପୁନ ଦୁହିତା ତୋର ଯେତେ । କୁଶଳେ ଅଛନ୍ତି ସମସ୍ତେ ॥
ନାରଦ ବାକ୍ୟ କର୍ଣ୍ଣେ ଶୁଣି । କହନ୍ତି ବୃଷଭାନୁ ବାଣୀ ॥

ବୃଷଭାନୁ ଉବାଚ

ହେ ମୁନି ତୋହର ପ୍ରସାଦେ । ସମସ୍ତେ ଅଛନ୍ତି ଆନନ୍ଦେ ॥
ଯେମନ୍ତ କହି ଗୋପରାୟେ । ମନ୍ଦିରୁ ଆଣିଲା ତନୟେ ॥
ନାରଦ ଅଗ୍ରତେ ପ୍ରବେଶ । ଦେଖି ନାରଦ ମନତୋଷ ॥
ସଂପୂର୍ଣ୍ଣ ଚନ୍ଦ୍ର ପ୍ରାୟେ ତେଜ । ରୂପେ କୋଟିଏ ମନସିଜ ॥
ପଦ୍ମ ପଲାଶ ନିନ୍ଦେ ନେତ୍ର । ସୁଗ୍ରୀବ ସୁନ୍ଦର ପବିତ୍ର ॥
ସ୍ଥୂଳ ଦର୍ଶନ ସମ୍ପନ୍ନ । ଗୁରୁ ଭ୍ରୂଲତା ଗୁରୁ ଶ୍ରୁତି ॥
ଅଜାନୁ ଲମ୍ବେ ବାହୁବେନି । କରଣେ ଧରିଛେ ଅବନୀ ।୧୯।
ହୃଦୟ କମଳ ବିସ୍ତାର । ସଂକୀର୍ଣ୍ଣ ସୁନ୍ଦର ଉଦର ॥
କୋଟି କନକ ସିଂହ ଠାଣି । ସୁନ୍ଦର କଟି ଶୋଭାଜଣି ॥
ମସୃଣ ବିଶାଳ ନିତମ୍ବ । ଜାନୁଯୁଗଳ ମଣିସ୍ତମ୍ଭ ॥
ରଙ୍ଗ କମଳ ପାଦ ଦୁଇ । ଦେଖି ନାରଦ ସୁଖ ପାଇ ॥
ହରଷେ କୁମାରକୁ କୋଳେ । ବସାଇ ବ୍ରହ୍ମାର ଦୁଲାଳେ ॥
ନିବିଡ଼େ କଲେ ଆଲିଙ୍ଗନ । ଆନନ୍ଦେ ବୁଜିଲେ ନୟନ ॥
ହସି ବୋଲନ୍ତି ପ୍ରିୟବାଣୀ । ଶୁଣ ଗୋପାଳ ଚୂଡ଼ାମଣି ।୨୦।

ନାରଦ ଉବାଚ

ନନ୍ଦ ମନ୍ଦିରେ ବ୍ରହ୍ମରାଶି । ଭାବେ ବିଜୟେ କଲେ ଆସି ।୨୧।
ତାହାର ସଖା ଯେ କୁମର । ମହିମା ମୋତେ ଅଗୋଚର ॥
ଯେହ୍ନାକୁ ପୁଣ ସ୍ନେହ କରି । ଅଟନ୍ତି ଲକ୍ଷ୍ମୀକୁ ବିଷ୍ଣୁ ପୁରି ॥
ଶୁଣି ଆନନ୍ଦ ବୃଷଭାନୁ । ବୋଲଇ ଶୁଣ ବ୍ରହ୍ମାସୁନୁ ॥

ବୃଷଭାନୁ ଉବାଚ

ହେମୁନି ତୁମ୍ଭେ ଯେବେ ଜାଣ । ନନ୍ଦ ମନ୍ଦିରେ ନାରାୟଣ ॥
ଜନ୍ମିଲେ ସଂସାର କାରଣେ । ଖଳ ଦନୁଜ ନିବାରଣେ ॥

ମୋ ପୁଣ୍ୟ ତାହାର ବିଶ୍ୱାସ । ପବିତ୍ର ହୋଇଲା ମୋ ବଂଶ ।୩୩।
ଯେ ପୁତ୍ର କଲି ମୁଂ ସଞ୍ଜାତ । ଯେଉଁ ଦୁହିତା ତପୋବନ୍ତ ॥
ପରମ ଆନନ୍ଦ ପୁତ୍ତୁଳୀ । ଜାତ ହୋଇଛି ମହାଆଳୀ ॥
ଦେଖିଲେ ମହାସୁଖପାଇ । ନୟନ ପିଞ୍ଜୁ ନ ଚଳଇ ॥
ମୁଂ କିସ କହିବି ବଚନେ । ପ୍ରତ୍ୟକ୍ଷ୍ୟ ଦେଖିବ ନୟନେ ॥
ଅନ୍ଧବଧିର ଜଡାକୃତି । ମୋର ଦୁହିତା ରୂପବତି ॥
ବଚନ ନ କହେ ମନ୍ତ୍ରେନ । ଶବଦ ନଶୁଣଇ କର୍ଣ୍ଣେ ॥
ନୟନ ନିରେକ୍ଷଣ ନ କୃଷ୍ଣଂ । ଯେ ମୋର ପଞ୍ଚ ପ୍ରାଣ ଦହି ॥
ତୁମ କଲ୍ୟାଣେ ମୁନିବର । ମୋର ଦୁସ୍ତର ହେଉ ପାର ।୪୧।
ସେ କନ୍ୟା ଯେବେ କଥା କହି । ନୟନ ମେଳି ସୁଖେ ଗୃହିଂ ॥
ଶ୍ରବଣେ ଶୁଣିମ ବଚନ । ତେବେ ସେ ରହିବ ଜୀବନ ॥
ମୁଣ୍ଡନ ଦେଇ ମୁନି ପାଦେ । ବୋଲଇ ଶୋକ ଗଦ ଗଦେ ॥
ନାରଦ ଦେଖିତା ସକଳ । ବୋଲନ୍ତି ଶୁଣହେ ଗୋପାଳ ॥

ନାରଦ ଉବାଚ

ଶୋକ ସମ୍ଭାଳ ଗୃହ ଯିବା । ଦୁହିତା ରୂପତା ଦେଖିବା ॥
ଯେମନ୍ତ କହି ମହାମୁନି । ସଙ୍ଗତେ ବୃଗଭାନୁ ଘେନି ॥
ମିଳିଲେ ଅନ୍ତେସ୍ୱର ପୁରେ । ଦେଖିଲେ ରତ୍ନ ପଲଙ୍କରେ ।୪୮।
ଦେବାଙ୍ଗବାସ ଶେଜ୍ୟାରଞ୍ଜି । ଉପରେ ଧୂଳି ତହିଂ ଭଞ୍ଜି ॥
ଉପରେ ବାନ୍ଧିଛି ବିତାନ । କୁମାରୀ କରିଛି ଶୟନ ॥
କୋଟିଯେ ଲକ୍ଷ୍ମୀ କେହୋଇ । ପାଦତଳକୁ ସମନୋହି ॥
ଅଙ୍ଗଲାବଣ୍ୟ ଶୋଭାରାଶି । ନିନ୍ଦଇ କୋଟି ପୂର୍ଣ୍ଣଶଶୀ ॥
ଦେଖି ନାରଦ ମୋହଗତ । ମନେ ଭାଳନ୍ତି ତପୋବନ୍ତ ॥
ଯେବେ ଶ୍ରୀକୃଷ୍ଣ ଚନ୍ଦ୍ର ପ୍ରିୟା । ଯାହାର ଦାସୀ ମହାମାୟା ॥
ଯୋଗେ ଦେଖିଲ ଚର୍ମଡୋଳେ । ଅଶେଷ ତପପୁଣ୍ୟ ବଳେ ॥

ଭାନୁକୁ ବୋଲନ୍ତ ବଚନ । ସେପୁରେ ନଥିବେକି ଜନ ॥
ସନ୍ତୋଷେ କଲ୍ୟାଣ କରିବୁ । ଦୁହିତା ଭଲ କରିଦେବୁ ॥
ନିକଟେ ଥିବେ ଯେବେଜନ । ଅବଶ୍ୟ ହାରିବେ ଜୀବନ ॥
ମୁନି ବକ୍ତ୍ରୁର ବାଣୀଶୁଣି । ସେପୁରର ଥିଲେ ଯେତେପ୍ରାଣୀ ॥
ସମସ୍ତେ ହୋଇଲେ ବାହାର । ସେ ବୃଷଭାନୁ ଗୋପବର ॥
କପାଟ କିଳିଲ ଭିତରେ । ଆନନ୍ଦ ସମାକୁଳ ଚିତ୍ତେ ।୭୧।
ପୁର ଶୋଧିଲ ବେଗକରି । ବାହାରେ ରହିଲ ଆବୋରି ॥
ସ୍ୱେକାନ୍ତ ଦେଖି ଦେବମୁନି । ଆନନ୍ଦେ ଲୋଟିଲେ ଅବନୀ ॥
କରପଲ୍ଲବ ଶିରେଦେଇ । ପ୍ରଣାମ କରି ଉଭା ହୋଇ ॥
ନୟନୁ ଗଳେ ଅଶ୍ରୁଧାର । ସ୍ତୁତି କରନ୍ତି ମୁନିବର ॥

ନାରଦ ଉବାଚ

ପ୍ରେମଦା ଯୋଗ ମୋହେଶ୍ୱରୀ । ମହାପ୍ରଭାରେ ବିଶ୍ୱପୂରି ॥
ଅନାଦିକାଳ ଯୋଗମାୟୀ । ଅଶେଷ ବିଭୂତି ତୋକାୟୀ ॥
ମହାମୋହିନୀ ଦିବ୍ୟ ଅଙ୍ଗୀ । ନବ ମଧୁର ରସ ସଙ୍ଗୀ ।୭୨।
ମହା ଅଦ୍ଭୁତ କଥାନନ୍ଦେ । ଶିଶିର କୃତ ମନଚନ୍ଦ୍ରେ ॥
ଅଚିନ୍ତ୍ୟ ମହାଭାଗ୍ୟ ଫଳେ । ଦର୍ଶନ କଲି ଚର୍ମଡୋଳେ ॥
ନିତ୍ୟ ଅନ୍ତରେ ପରବେଶ । ତୋମନ୍ତ ମହାନନ୍ଦେ ତୋଷ ॥
ପ୍ରସନ୍ନ ମଧୁର ମଞ୍ଜୁଳା । ସୁସମ ଶ୍ରୀମୁଖ ମଣ୍ଡଳ ॥
ଅନ୍ତଃକରଣ ସୁଖରସ । ପରମାନନ୍ଦେ ସ୍ୱପ୍ରକାଶ ॥
ସୃଷ୍ଟି ପାଳଣ ସମାହାର । ଶୁଦ୍ଧ ବିଶୁଦ୍ଧ ଦୟାପର ॥
ଅଖିଳ ଶକ୍ତିତୋର ଅଂଶେ । ବୈଷ୍ଣବାନନ୍ଦ ଘଟବଶେ ॥
ପ୍ରେମାଚ ପରାନନ୍ଦ ଧାମ । ବ୍ରହ୍ମା ଈଶ୍ୱରଙ୍କୁ ଦୁର୍ଗମ ।୭୩।
ଯୋଗୀନ୍ଦ୍ର ଯୋଗ ଧ୍ୟାନରସ । ତୋଭାବ ପଥେ ଅପ୍ରବେଶ ॥
ଯେ ଇଚ୍ଛାଶ୍ୟାଂନ ଶକ୍ତିନିୟା । ଯେ କାଳ ମହାଯୋଗମାୟା ॥

ତୋ ଅଂଶା ଅଂଶରେ ଯେ ଜାତ । ବିଭୂତି ଯେତେ ସମ୍ମାନେତ ॥
ପରେଶ ମହା ବିଷ୍ଣୁ ଦେବ । ଆନନ୍ଦ ରୂପ ବ୍ରହ୍ମଭାବ ॥
ଶ୍ରୀକୃଷ୍ଣ ବିଭୂତି ସକଳେ । ସେବନ୍ତି ତୋ ପାଦ କମଳେ ॥
ଶ୍ରୀକୃଷ୍ଣଚନ୍ଦ୍ର ପ୍ରାଣେଶ୍ୱରୀ । ବୃନ୍ଦାକାନନ ଅଧୀଶ୍ୱରୀ ॥
କୁମାରୀ ରୂପ ତୋ ସୁନ୍ଦର । ହେଲେ ମୋହିଲୁ ଚରାଚର ।୮୩।
ତରୁଣ ରୂପ କିବା ତୋର । ଯେ ରୂପେ ବଶ ବେଣୁଧର ॥
ଶ୍ରୀବୃନ୍ଦାବନ ମଧ୍ୟେ ହରି । ଗୋପ କାମିନୀ ସଙ୍ଗ କରି ॥
ରାସଲୀଳାରେ ତୋତେ ଘେନି । ଲୀଳା ବିସ୍ତାରିବେ ଅବନୀ ॥
ପୂର୍ବେ ସକଳ ଋଷିମାନେ । ଶ୍ରୀକୃଷ୍ଣ ଚନ୍ଦ୍ର ଦରଶନେ ॥
କାମିନୀ ରୂପେ ଗୋପେ ଜାତ । ତୋ ପ୍ରେମ ଭାବେ ଅନୁଗତ ॥
ତାହାଙ୍କ ଆଶା ପୂର୍ଣ୍ଣ ଅର୍ଥେ । ତୋ ଜନ୍ମ ବୃଷ ଭାନୁସୁତେ ॥
ମୋତେ କହିଲେ ନନ୍ଦସୁତ । ସୁଦୟା କରସି ଗୋ ମାତ ॥
ମୁଁ ସେ ନାରଦ ତପୋବନ୍ତ । ସର୍ବଦା ତୋ ପାଦେ ଭଗତ ॥
ଯେମନ୍ତ କହି ପାଦତଳେ । ପ୍ରଣାମ କଲି ମୁନି ଭୋଳେ ॥
ସେ ମୁନି ପାଦ ଅରବିନ୍ଦେ । ବ୍ରାହ୍ମଣ ଜଗନ୍ନାଥ ଭଜେ ।୯୩।

ଇତି ଶ୍ରୀମତ୍ପରମରହସ୍ୟେ ଶୈବାଗମେ ଶ୍ରୀରାଧା ଦର୍ଶନେନାମ ଦ୍ୱାଦଶୋଽଧ୍ୟାୟଃ

## ତ୍ରୟୋଦଶ ଅଧ୍ୟାୟ

### ଈଶ୍ୱର ଉବାଚ

ମାୟାରେ ବିଭୂତି ପ୍ରକାଶି । ନାରଦ ଲୋଚନକୁ ବଶି ॥
କୋଟିଏ କନ୍ୟା ରୂପ ରାଶି । ନବୀନ କିଶୋର ବୟସୀ ॥
ଶ୍ରୀବୃଷ ଭାନୁ ସୁତାପାଶେ । ସେବା କରନ୍ତି ମନ ତୋଷେ ॥
ତାଳ କଂସାଳ ବୀଣା ଘେନି । ସୁସ୍ୱରେ ନୃତ୍ୟ ଗୀତ ଧ୍ୱନି ।୪।

କେକରେ ଭ୍ରମର ଝଙ୍କଣି । ସଧୀରେ ଡ଼ାକନ୍ତ ତରୁଣୀ ॥
କୁସୁମ ଝଙ୍କନ୍ତ କେନାଗ୍ରୀ । କେକରେ ଉପାସ୍ନନଧର ॥
ତାରକା ପୂର୍ଣ୍ଣ ଚନ୍ଦ୍ର ପାଶେ । ଯେସନେ ସୁନ୍ଦର ଆକାଶେ ॥
କମଳ ବନେ ରାଜହଂସୀ । କୃଷ୍ଣ ବଲ୍ଲଭା ତେଜରାଶି ॥
ଦେଖି ନାରଦ ତପୋବନ୍ତ । ଆନନ୍ଦ ସାଗରେ ଅପ୍ଲୁତ ॥
ଢ଼ଳି ପଡ଼ିଲେ ମହୀତଳେ । ଅଗ୍ୟାନ ପ୍ରକୃତି ଚଞ୍ଚଳେ ॥
ତାଦେଖି ଅଶୋକ ମାଳିନୀ । ସେ ନିତ୍ୟରାସ ବିଳାସିନୀ ॥
ମୁନି ସମୀପେ ଉଭା ହୋଇ । ଅମିୟ ବାଣୀ ବରଷଇ ।୧୨।

ଅଶୋକ ମାଳିନୀ ଉବାଚ

ହେ ଦେବ ଋଷି ଶିରୋମଣି । ତୋତେ ପ୍ରସନ୍ନ ବେଣୁପାଣି ॥
ବ୍ରହ୍ମା ଶଙ୍କର ଆଦ୍ୟ ଯେତେ । ଭଗତ ଅନନ୍ତ ଜଗତେ ॥
ତୋତେ ନୁହନ୍ତି କେହିସମ । ଲଭିଲୁ ଅଖଣ୍ଡିତ ପ୍ରେମ ॥
ଧଇର୍ଯ୍ୟ ହୋଇ ବ୍ରହ୍ମଋଷି । ଦେଖ ଶ୍ରୀକୃଷ୍ଣ ମନୋହାରୀ ॥
ଯାର କଟାକ୍ଷ ମାତ୍ର ପାଇଁ । କାଷ୍ଠ ପାଷାଣ ଦ୍ରବ ହୋଇ ॥
ସ୍ୱରୂପ ଧ୍ୟାନେ ନନ୍ଦସୁତ । ପ୍ରେମ ସାଗରେ ପରିପ୍ଲୁତ ॥
ଶ୍ରୀକୃଷ୍ଣ ସଂସାର ବାସନା । ଶୃଙ୍ଖଳ ରୂପ ବରାଙ୍ଗନା ।୧୩।
ଯାହାର ଦାସୀ ଯୋଗମାୟା । ବ୍ରହ୍ମ ପ୍ରକାଶ ତନୁଛାୟା ॥
ସେ ନିତ୍ୟ ପ୍ରେମ ଧାମ ବାସୀ । ଭବେ ଜନ୍ମିଲେ ସ୍ୱେଥେଆସି ॥
ସେହାଙ୍କ ପାଦ ପଦ୍ମତଳେ । ପ୍ରଣାମ କର ଭାଗ୍ୟବଳେ ॥
ସଖୀ ବଚନେ ତପସାଇଁ । କର ପଲ୍ଲବ ଶିରେ ଦେଇ ॥
ସଧିରେ ହୋଇ ମୁନିଉଭା । ଦେଖଇ ଶ୍ରୀକୃଷ୍ଣ ବଲ୍ଲଭା ॥
ତେଜ ପୂରିଲା ଦଶ ଦିଶେ । କରଣେ ବ୍ରହ୍ମସ୍ୱ ପ୍ରକାଶେ ॥
ସେଅଷ୍ଟ ଦଳ ପଦ୍ମପତ୍ର । ଅରୁଣ କେଶର ପବିତ୍ର ॥
କେଶର ମଧ୍ୟେ ରଙ୍ଗମହୀ । ଷଟ କର୍ଣ୍ଣିକା ଯାହା କହି ।୨୭।

କର୍ଣ୍ଣିକା ମଧ୍ୟେ କୃଷ୍ଣ ନାଥ । ବିଜୟେ ଯୁଗଳ ରୂପ ଧରି ॥
ଦକ୍ଷିଣ ପାଶେ ଚନ୍ଦ୍ରାବଳୀ । କୋଟିଏ ଚନ୍ଦ୍ର ଦେହ ଝଳ ॥
ଶ୍ରୀଭୂବ ଶକ୍ତି ବେଣି ପାଶେ । ପ୍ରେମ କାରୁଣ୍ୟ ରସ ତୋଷେ ॥
ତ୍ରିକୋଣ କେନ୍ଦ୍ରି ଷଡ଼ ଦଳେ । ଷଷ୍ଠ ଶକ୍ତି ଯେ ରସ ଖେଳେ ॥
ସେବନ୍ତି କୃଷ୍ଣକାନ୍ତା ପାଦେ । ପ୍ରେମ ଆନନ୍ଦ ରସ ସ୍ୱାଦେ ॥
ଶବଦ ରୂପୀ ବୃନ୍ଦାବତୀ । ଗଉରତନୁ ମହାଶକ୍ତି ॥
ନିଗୂଢ଼ ପ୍ରେମରସ ଧାମ । ସମ୍ପୂର୍ଣ୍ଣ ଚନ୍ଦ୍ରମା ବଦନ ॥
ତାହାର ବାମେ ରଙ୍ଗ ଦେବୀ । ସର୍ବ ଅବୟବ ସମ୍ଭବ ।୩୯।
ଶ୍ରୀକୃଷ୍ଣ ପ୍ରାଣଧନ ତାର । ମୋହଇ ବ୍ରହ୍ମାଣ୍ଡ ଠାକୁର ॥
ଐଶାନ୍ୟେ ସୁଭଦ୍ରା ବିଜୟେ । ପଦ୍ମ ଲୋଚନା ମହାମାୟେ ॥
ସ୍ୱରୂପା ରୂପାଧିକାରିଣୀ । ଶ୍ରୀକୃଷ୍ଣପ୍ରୀତି ବିବର୍ଦ୍ଧିନୀ ॥
ତାବାମେ ପ୍ରିୟମ୍ବଦା ସଖୀ । ଶରଦ ପୂର୍ଣ୍ଣଚନ୍ଦ୍ର ମୁଖୀ ॥
ରସା ସ୍ୱାଦନ ରସଶୀଳା । ରସ ମୂରତି ରସେଖେଳା ॥
ରସେ ଶ୍ରୀକୃଷ୍ଣ କଲ ବଶ । ରାଧିକା ଚରଣେ ବିଶ୍ୱାସ ॥
ତା ବାମେ ଇନ୍ଦୁରେଖା ନାମା । ଦିବ୍ୟ ଶକତି ଅନୁପମା ॥
ନିଜାଙ୍ଗ ଗନ୍ଧ ରୂପରସେ । ଆମୋଦ କରେ ଦଶଦିଶେ ।୪୩।
ତା ବାମେ ନିତ୍ୟା ଦେବୀରହେ । ସୁନ୍ଦର ତନୁ କୃଷ୍ଣ ମୋହେ ॥
ନିତ୍ୟ ନୂତନ ରୂପଧାରୀ । ନିତ୍ୟ ଆନନ୍ଦ ସୁଖକାରୀ ॥
ଯେ ଷଷ୍ଠ ଶକ୍ତି କୃଷ୍ଣ ରସେ । ନିଗୂଢ଼ ପ୍ରେମ ଭାବ ବଶେ ॥
ଯେହାଙ୍କ ମଧ୍ୟେ ଭୂବ ଶକ୍ତି । ଅରୁଣ ଦୁର୍ବାଦଳ ଜ୍ୟୋତି ॥
ଦିବ୍ୟ ଭୂଷଣ ବିଭୂଷଣା । କର କମଳେ ଯନ୍ତ୍ର ବୀଣା ॥
ଗାୟନ କରେ କୃଷ୍ଣ ରସ । ପ୍ରେମ ଆସ୍ୱାଦ ରସେ ବଶ ॥
ଦକ୍ଷିଣ ପାଶେ ରମା ଶକ୍ତି । ଦେହ କନକ ତନୁ କାନ୍ତି ॥
ନିତ୍ୟ ନୂତନ ଯୁବାତନୁ । ଭାବେ ତୋଷିଲା ନନ୍ଦସୁନୁ ॥

ପୁଲକ ଅଙ୍ଗ ଦ୍ରବ୍ୟ ବେଶ । ସାରଙ୍ଗ ରୂପୁ କହି ଦେଶ ॥
ତନୁ ଲଳିତ ରମ୍ଭା ଉରୁ । ବୃହନ୍ନିତମ୍ବ ଭରେ ଗରୁ ॥
ବଚନ ବେଶ ପରଧାନ । ସେ ଶକ୍ତି ଶ୍ରୀହରିଜୀବନ । ୫୪ ॥
ଅଷ୍ଟ କର୍ଣ୍ଣିକ ପଦ୍ମ ମୂଳ । ଲଳିତା ଶକ୍ତି ପୂର୍ବ ଦଳେ ॥
ଶୁଦ୍ଧ ସୁବର୍ଣ୍ଣ ତନୁ ଝଳ । ପୀତ ବସନ ସୁଷ୍ଟୁଶାଳୀ ॥
ପରିଧାପନ ନିଜ ଅଙ୍ଗେ । ଭୂଷଣ ନିତ୍ୟକଳ୍ପ ସଙ୍ଗେ ॥
ପ୍ରମୋଦ ସ୍ମିତାନନ ବାଳୀ । ଭୁଙ୍ଗଯୌବନ ରୂପଶାଳୀ ॥
କରେ କମଳ ମାଳଧରି । ସ୍ଥିତା ସମୁଖେ ବରନାରୀ ॥
ଶ୍ୟାମଳା ସଖୀ ତାର ପାଶେ । ଦକ୍ଷିଣପୂ-ଦଳ ସ୍ୱପ୍ରକାଶେ ॥
ନୀଳେନ୍ଦ୍ର ବର ଦାମକାନ୍ତି । ଶ୍ୟାମଳ ବର୍ଣ୍ଣ ତନୁ ଭାନ୍ତି ॥
ବିସ୍ତାର ବକ୍ଷ ସ୍ତନ ଯୁଗ । ମୁକୁତା ହାର ବଳ ସଙ୍ଗ । ୬୨ ॥
ଭୂଷଣ ନାନା ରତ୍ନ ମାନ । ରଙ୍ଗ ବସନ ପରିଧାନ ॥
ହସ୍ତରେ ପୁଷ୍ପଗୁଚ୍ଛ ଧରି । ସେବଇ କୃଷ୍ଣ ମନୋହାରୀ ॥
ଦକ୍ଷିଣେ ଶୋଭ କମଳାକ୍ଷୀ । ଉଜ୍ଜ୍ୱଳ ତନୁଉପଲକ୍ଷି ॥
କୁଳଜପୁର ପୂର୍ଣ୍ଣ ଚନ୍ଦ୍ର । ଅଙ୍ଗ ଲାବଣ୍ୟ ଅତି ନନ୍ଦ ॥
ନୀଳ ବସନ ଅଙ୍ଗେ ଶୋଭେ । ରାସ ରସିକ ମନ ମୋହେ ॥
ରଙ୍ଗ କମଳ ନନ୍ଦେ ନେତ୍ର । ହସ୍ତରେ ମଧୁ ପୂର୍ଣ୍ଣ ପାତ୍ର ॥
ନୈଋତ କୋଣରେ ଶ୍ରୀମଣି । ବିମଳ ପଦ୍ମରାଗ ଗାଣି ॥
ରତ୍ନ ଅଙ୍ଗଦ କାଞ୍ଚି ହାର । ଭୂଷଣ ରତ୍ନ ମନୋହର । ୭୦ ॥
ପୃଥୁ କଠିଣ କୁଚଭର । ଅଳସ ଗମନ ମନ୍ଥର ॥
ସଙ୍ଗୀତ ଗାନ ତାନ ରସେ । କୃଷ୍ଣ ବଲ୍ଲଭ ମନ ତୋଷେ ॥
ପଶ୍ଚିମେ ହର ପ୍ରିୟାନାମ । ବର କର୍ଣ୍ଣିମା ଅନୁପାମ ॥
ଶୁଦ୍ଧ ସୁବର୍ଣ୍ଣ ତନୁ ପ୍ରଭା । କନକ କୁମ୍ଭ କୁଚ ଆଭା ॥
କଣ୍ଠ ଭୂଷଣ ମୋତିଦାମ । କ୍ଷୀଣ କଟନ ଅଭିରାମ ॥

ହରଷେ କରେ କୃଷ୍ଣ ସ୍ତୁତି । ଭାବେ ତୋଷିଲ ରାଧାପତି ॥
ବିଶାଖା ସଖୀ ତାର ପାଶେ । ଲାବଣ୍ୟ ତନୁ ସ୍ୱର୍ଣ୍ଣ ଭାସେ ॥
ବିବାଧ ରସ ବିନୋଦିନୀ । ଜଗ ମୋହନ ସମୋହିନୀ ॥
ଶୃଙ୍ଗାର ରସ ବିଦ୍ୟା ହୋଇ । ଜାଣଇ କୃଷ୍ଣ ଭାବ ମତି ॥
ରସ ବଚନ ପ୍ରିୟ ଗୀତ । ଗାଇଁ ମନ ହରେ କୃଷ୍ଣ ଚିତ୍ତ ॥
ମଦନୋତ୍ସବ ପ୍ରାଣସଖୀ । ଉତ୍ତର ଦଳେ ଅଛି ରହି ॥
ବଦନପୂର୍ଣ୍ଣ ଚନ୍ଦ୍ର କାନ୍ତି । କୁନ୍ଦ କର୍ପୂର ତନୁ ଭାନ୍ତି ॥
ରତ୍ନ ନିର୍ମିତ ଅଳଙ୍କାର । ଭୂଷଣ ସୁନ୍ଦର ଶରୀର ॥
ହସ୍ତେ କୁସୁମ ଧନୁ ଧରି । କୁସୁମ ସର ସଜ କରି ॥
କୁସୁମ ବାଣ ପ୍ରାପ୍ତେ ସନ୍ଧି । ଭାବେ ଶ୍ରୀକୃଷ୍ଣ ମନରୁନ୍ଧି ॥
ଐଶାନ୍ୟେ ପଦ୍ମା ସଖୀ ରହେ । କୃଷ୍ଣ ବଦନ ଭାବେ ଚାହେଁ ॥
ପଙ୍କଜ ହସ୍ତେ ପଦ୍ମ ଘେନ । କନକ ଭୂଷଣ କାମିନୀ । ୮୬ ।
ସୂକ୍ଷ୍ମ ବସନ ପରିଧାନ । ମୋହଇ କୃଷ୍ଣ କାନ୍ତା ମନ ॥
ଯେ ଅଷ୍ଟଦଳେ ଅଷ୍ଟ ସଖୀ । ଭାବେ ସେବନ୍ତି ଚନ୍ଦ୍ର ମୁଖୀ ॥
ବିମଳା ଯୋଗ ପୀଠେଶ୍ୱରୀ । ପଶ୍ଚିମ ଦଳ ଶିରେ ଧରି ॥
ନିର୍ମଳ ନିମ୍ବ ନବ ଜ୍ୟୋତି । ଶ୍ରୀକୃଷ୍ଣ ଧ୍ୟାନେ ଲୟ ମତି ॥
ଉତ୍କର୍ଷଣୀ ମହାଦେବୀ । ବାୟବ୍ୟ ଦଳ ଶିରେ ସେବୀ ॥
କୃତ ଅଞ୍ଜଳି ହୋଇ ଉଭା । ନୀଳ ଅମ୍ବୁଜ ସମପ୍ରଭା ॥
ଯେ ଜ୍ଞାନଦେବୀ ମହାଶକ୍ତି । କ୍ରିୟା ପୀଠରେ ଅଧିଷ୍ଠାତ୍ରୀ ॥
ଉତ୍ତର ଦଳ ଶିରେ ଶୋଭା । ଦାଡ଼ିମ୍ବ ପୁଷ୍ପ ତନୁ ପ୍ରଭା ॥
ଈଶାନ୍ୟ ଦଳ ଧରି ଉଭା । ସୁତନୁ ପଦ୍ମ ରାଗ ଆଭା ।୯୬।
ଶ୍ୱେତ କର୍ଣ୍ଣିକା ପୂର୍ବଦଳେ । ବହିଛି ମସ୍ତକ ମଣ୍ଡଳେ ॥
ଆଗ୍ନେୟ ଦଳେ ତପ୍ତହେମା । ଦକ୍ଷିଣ ଦଳ ଧରେ ଶ୍ୟାମା ॥
ସତ୍ୟା ନୈଋତ ଦଳ ଧରେ । ବିଦ୍ୟୁତ ପ୍ରଭା କଳେବରେ ॥

ଇଶାନ୍ୟ ମଧ୍ୟ ନାଳ ପରେ । ଷଠ କର୍ଣ୍ଣିକା ଅଭ୍ୟାନ୍ତରେ ॥
ଯେ ନବଶକ୍ତି ରାଧା ଅଂଶେ । ପ୍ରକୃତ ପୁରୁଷ ପ୍ରକାଶେ ॥
ଯେବନ୍ତ କିଶୋର କିଶୋରୀ । ଯେ ଯଥା ସ୍ଥାନେ ଅଧିକାରୀ ॥
ଅପରେ ସଖୀ ବୃନ୍ଦ ଯେତେ । ବଚନେ କହିବ ମୁଁ କେତେ ॥
ମଧ୍ୟେ ଭଜଯେ ଭାନୁସୁତା । ଶ୍ରୀ ବୃନ୍ଦାବନେ ଚନ୍ଦ୍ର କାନ୍ତା ॥
କେଶ କୁସୁମ ଦାମ ଶୋଭା । ନବ ଜଳଦେ ବିଦ୍ୟୁପ୍ରଭା ।୧୦୪।
ସିନ୍ଦୂର ବିନ୍ଦୁ ଭାଲ ପଟେ । ହୀରା କୁଣ୍ଡଳ କର୍ଣ୍ଣପୁଟେ ॥
ନୟନ କମଳେ ଅଞ୍ଜନ । ଭ୍ରୂ ଲତା କାମ ଶରାସନ ॥
ନାସେ ମୁକୁତା ଶୋଭାବନ । ରୋହିଣୀ ଚନ୍ଦ୍ର ଆଲିଙ୍ଗନ ॥
କଣ୍ଠେ ପଦକ ରତ୍ନହାର । କିଙ୍କିଣୀ ସ୍ୱନ ମନୋହର ॥
ବାହୁ ମୂଳରେ ତାଡ଼ ଯୋଡ଼ । କମଳ କରେ ରତ୍ନ ଚୂଡ଼ ॥
ପୟରେ ନୂପୁର ବିରାଜେ । ବ୍ରହ୍ମାଣ୍ଡ ସୁନ୍ଦରତା ତେଜେ ।୧୧୧।
ରତ୍ନ ଭୂଷଣ ଅଳଙ୍କାର । ଶରୀରେ ଦଶନ୍ତ ସୁନ୍ଦର ॥
କ୍ଷଣକେ ଅନ୍ୟଅନ୍ୟ ମୂର୍ତ୍ତି । ଧରନ୍ତ ଶ୍ରୀକୃଷ୍ଣ ଯୁବତି ॥
ଶିଖେ ଶିଖଣ୍ଡି ପୁଚ୍ଛ ଶୋଭା । ହୃଦେ କୌସ୍ତୁଭ ରତ୍ନପ୍ରଭା ॥
ଆଜାନୁ ଲମ୍ବେ ବନମାଳ । ମୋହନ ବଂଶୀ କରତଳ ॥
ମକରା କୃତ କୁଣ୍ଡଳମ୍ମା । ପିତ ବସନ ପରିଧାମ୍ମା ॥
କ୍ଷଣକେ ହୋଯେ ଦିବ୍ୟରୂପ । ପ୍ରେମ ଆନନ୍ଦର ସ୍ୱରୂପ ॥
ଦେଖି ନାରଦ ମହାମୁନି । ଅବଶେ ଢଳିଲେ ଅବନୀ ॥
କାଷ୍ଠ ପିତୁଳା ପ୍ରାଯେ ହୋଇ । ବଦନୁ ବାକ୍ୟ ନସ୍ଫୁରଇ ।୧୧୯।
ଆନନ୍ଦ ସାଗରେ ମଜ୍ଜିଲେ । ବାସନା ଶେଷରେ ରହିଲେ ॥
ଲବଣ ଜଳେ ଯେହ୍ନେ ଲୀନ । ନାରଦ ପ୍ରେମରେ ସେ ମଗ୍ନ ॥
ମନ ଇନ୍ଦ୍ରିୟ ବସ୍ତୁଗଲା । ସକଳ ପ୍ରାଯେ ବହିଗଲା ॥
ତା ଦେଖି ବୃଷଭାନୁ ସୁତେ । ମାୟା ନାଶିଲା କୃପାଚିତ୍ତେ ॥

କରୁଣା ନୟନେ ଗୃହ୍ମିଂଲେ । ନାରଦ ସ୍ୱ ଦେହ ଲଭିଲେ ॥
କ୍ଷଣକେ ପାଇ ଦିବ୍ୟଗ୍ୟାନ । ସଭୟେ ବୁଜିଲେ ନୟନ ॥
ତଦନ୍ତେ କମ୍ପେ ମୁନିକାୟେ । ପରମାନନ୍ଦେ କମ୍ପଲୟେ ॥
ଆନନ୍ଦେ ଦଶ ଦିଗେ ଗୃହ୍ନିଂ । ଦେଖିଲ୍ଲ ଅନ୍ୟକେହ୍ବନାହିଂ।୧୨୭।
କୁମାରୀ ପଲଙ୍କ ଉପରେ । ପ୍ରେମ ଆନନ୍ଦ ରସଭରେ ॥
ବଚନେ ଅମିୟ ବରଷେ । କରୁଣା କଟାକ୍ଷ ପ୍ରକାଶେ ॥
ଶବଦ ଶୁଣି କର୍ଣ୍ଣଦ୍ୱାରେ । ଖେଳଇ ବାଳକ ପ୍ରକାରେ ॥
ହରଷେ କରେ ବାଳ ଧ୍ୟାନ । ଦେଖି ସନ୍ତୋଷ ମହାମୁନୀ ॥
ଆନନ୍ଦେ ଶିରେ ଦେଇ କର । ପ୍ରଣାମ କରେ ଟେତବାର ॥
ସୁଜନେ ଶୁଣ କୃଷ୍ଣରସ । ଅଖିଳ ଭବ ଭୟ ନାଶ ॥
ରାଧା ଚରଣେ ମନଦେଇ । ବ୍ରାହ୍ମଣ ଜଗନ୍ନାଥ ଗାଇ ।୧୩୪।

ଇତି ଶ୍ରୀମଦ୍ ପରମରହସ୍ୟେ ଶୈବାଗମେ ଶ୍ରୀରାଧା ନିତ୍ୟଲୀଳା ବିଭୂତି ଦର୍ଶନେ ନାରଦସ୍ତୁତିବନ୍ଦନେ ନାମ ତ୍ରୟୋଦଶ ଅଧ୍ୟାୟଃ ।

— ※ —

## ଚତୁର୍ଦ୍ଦଶ ଅଧ୍ୟାୟ

### ପାର୍ବତୀ ଉବାଚ

ପାର୍ବତୀ ଶୁଣି ମନ ତୋଷେ । ରୁଦ୍ରଙ୍କୁ ପଚ୍ଛରେ ହରଷେ ।୧।
ହେ ଦେବ ଚନ୍ଦ୍ର ଚୂଡ଼ାମଣି । ଗୋଟେ ବଚନୟେ ବେନୁପାଣି ॥
ଗୋପୀ ଜନଙ୍କ ଆଶାପୂର୍ଣ୍ଣ । କରିବେ ପ୍ରଭୁ ଭଗବାନ ॥
କୋଟି ବ୍ରହ୍ମାଣ୍ଡ ଠାକୁରାଣୀ । ଶ୍ରୀବୃଷଭାନୁର ଦୁଲ୍ଲଣୀ ॥
ମତ୍ତେ କୁମାରୀ ରୂପ ଧରି । ଭାନୁ ମନ୍ଦିରେ ଅବତରି ॥
ଅନ୍ଧ ବଧିର ଜଡ଼ ମତେ । କମ୍ପାଇଂ ରହିଲେ ଗୁପତେ ॥
ନାରଦ ବାକ୍ୟେ ଜଡ଼ ମତ । ଗୁଡ଼ିଲେ ଶ୍ରୀକୃଷ୍ଣ ସୁବର୍ତ୍ତ ॥

କ ହେତୁ କ ଭାବ ପ୍ରକାଶ । ବିସ୍ତାର କହ ବ୍ୟୋମକେଶ ।୮ ॥
ତା ଶୁଣି ଦେବ ଶୂଳପାଣି । କହନ୍ତି ସୁଧାସମ ବାଣୀ ॥

ଈଶ୍ୱର ଉବାଚ

ଶ୍ରୀକୃଷ୍ଣ ଚନ୍ଦ୍ର ପ୍ରିୟବନ୍ଧ । ଗୋପାଳ ବଂଶେ ଉତ ପନ୍ତି ॥
ସଦାକେ କୃଷ୍ଣ ଧ୍ୟାନେ ମନ । କଥା ନ କହନ୍ତି ମଉନ ॥
କୃଷ୍ଣ ଶବଦବିନ ଆନ । କର୍ଣ୍ଣଇ ନ ଶୁଣି ସେ କର୍ଣ୍ଣ ॥
ଶ୍ରୀକୃଷ୍ଣ ବଦନ ନ ଦେଖି । ହିଚ୍ଛେଦେ ବୁଜିଥିଲେ ଆଖି ॥
ସେତେବେ ନାରଦ ବାକ୍ୟ ଶୁଣି । ଶ୍ରୀକୃଷ୍ଣ ଜନ୍ମ ପରମାଣି ॥
କରୁଣା କଲେ ନାରଦଙ୍କୁ । ବିଭୂତି ଦେଖାଇ ତାହାଙ୍କୁ ।୧୫॥
ବାଳକୁମାରୀ ରୂପ ଧରି । ସ୍ତମ୍ଭିଂଲେ ନୟନ ବିସ୍ତାରି ॥
ସୁଧା ମଧୁର ମନ୍ଦ ହାସେ । ଶବଦ ଶୁଣେ ଶ୍ରୁତି ଦେଶେ ॥
ବାଳ ଚଞ୍ଚଳ ଭାବଲୀଳା । ଯେସନ୍ତେ ଗଗନେ ଚନ୍ଦ୍ର କଳା ॥
ଖେଳଇ ବାହୁଯୁଗ ତୋଳି । କରଣେ ଶୋଭାମୟ ଆଳି ॥
ଅତି ଆନନ୍ଦେ ବ୍ରହ୍ମାଶିଷ । ଭାନୁକୁ ହକାରିଲେ ପାଶ ॥

ନାରଦ ଉବାଚ

ହରଷେ ବୋଲନ୍ତି ବଚନ । ଧନ୍ୟ ଗୋପାଳ ତୋ ଜୀବନ ୨୧॥
ନିର୍ମଳ ତନୁ ସୁକୁମାରୀ । ଅଶେଷ ବ୍ରହ୍ମାଣ୍ଡ ସୁନ୍ଦରୀ ॥
ଯେହାର ଯେତେ ଗୁଣ ଯଶ । ବଚନେ ନୁହଇ ପ୍ରକାଶ ॥
ଦୁହିତା ରୂପେ ପ୍ରତି ପାଳ । ଅନ୍ତେ ଲଭିବୁ ବିଷ୍ଣୁ ସ୍ଥଳ ॥
ଧର୍ମାର୍ଥ କାମ ମୋକ୍ଷ ବିଧି । ଯେ ଅଷ୍ଟାଦଶ ମହାସିଦ୍ଧି ॥
ଯେ କନ୍ୟା ପାଦେ ସେବାକରି । ମହିମା ଜଗତେ ବିସ୍ତାରି ॥
ବ୍ରହ୍ମା ଶଙ୍କର ଯୋଗୀ ଜନେ । ଯେହାଙ୍କୁ ନ ପାବନ୍ତି ଧ୍ୟାନେ ॥
ଯେ ତୋର ଘରେ ଅବତରି । ବାଳ କନ୍ୟକା ରୂପ ଧରି ॥
ସାମାନ୍ୟ ପ୍ରାୟେକ ନମଣ । ତୋତେ ପ୍ରଶନ୍ନ ନାରାୟଣ ॥

ନାରଦ ବଚନେ ଗୋପାଳ । ଆନନ୍ଦ ରସେ ମହାଭୋଳ ॥
ଦୁହିତା ରୂପ ଗୁଣ ଦେଖି । ପିଙ୍ଗୁଡ ନ ପାରଇଂ ଆଖି ॥
ଡୋଳାରେ ଦେଖି ସୁକୁମାଖି । ଆନନ୍ଦେ ବହେ ପ୍ରେମ ବାର ॥
ଅଙ୍ଗ ପୁଲକ ମହା ଶୋଭା । କଦମ୍ବ କୁସୁମର ପ୍ରଭା ॥

ବ୍ରହ୍ମା ନନ୍ଦନ ବେନି ପାଦେ । ପ୍ରଣାମ କରଇ ଆନନ୍ଦେ ।୩୪ ॥
ଭାନୁକ୍ କହି ପ୍ରିୟବାଣୀ । ଗମନ କଲେ ମୁନି ମଣି ॥
ନନ୍ଦ ଗୋକୁଳେ ପରବେଶ । ଯହିଁ ବସନ୍ତେ ପୀତବାସ ॥
ଏକାନ୍ତ ସ୍ଥାନେ ଦେବଋଷି । ଭେଟିଲେ ଦେବ ବ୍ରହ୍ମରାଶି ॥

ଆନନ୍ଦେ ପାଦ ତଳେ ପଡ଼ି । କର ପଲ୍ଲବ ଶିରେ ଯୋଡ଼ି ॥
ନୟନୁ ଅଶ୍ରୁ ଜଳ ଗଳେ । ସ୍ତୁତି କରନ୍ତି ରସ ଭୋଳେ ॥
ଜୟତୁ ଶ୍ରୀ ନନ୍ଦ ନନ୍ଦନ । ଜୟତୁ କମଳ ଲୋଚନ ॥
ଜୟତୁ ବୃନ୍ଦାବନ ଚନ୍ଦ୍ର । ଜୟତୁ ଗୋକୁଳ ନରେନ୍ଦ୍ର ॥

ତୁ ଦେବ କେବଳ କଳା ରସେ । ପରମାନନ୍ଦ ସ୍ୱପ୍ରକାଶେ । ୪୨ ।
ଭୋଳ ହୋଇଲୁ ଦେବ ରାୟେ । ତୁ ସେ ପରମ ବ୍ରହ୍ମକାୟେ ॥
ଜୟତୁ ନୀଳ ଘନଶ୍ୟାମ । ଭୂଷଣ କଦମ୍ବର ଦାମ ॥
ବଂଶୀ ବଦନ ମନ୍ଦ ହାସେ । କରୁଣା ନୟନ ପ୍ରକାଶେ ॥

ହେଲେ ମୋହିଲୁ ଚରାଚର । ମୋର ଅପ୍ରାଧ କ୍ଷେମାକର ।୪୬।
ଶରଣ ବତ୍ସଳ ତୋ ବାନା । ଆରତ୍ତ ଜନ ବଜ ସେହ୍ନା ॥
ମହିମା ନୋହଇ ଗୋଚର । ତୁ ଦେବ କରୁଣା ସାଗର ॥
ତୋର ପ୍ରସାଦେ ଭଗବାନ । ସୁଫଳ କଲଇଂ ଜୀବନ ॥

ଗୋପ କାମିନୀ ଜନ ଦେଖି । ନିର୍ମଳ କଲ ଚର୍ମ ଆଖି ॥
ଗୋପୀଙ୍କି କେତେ ଦୟାବନ୍ତୁ । ମୋତେ କହିବ ମହାବାହୁ ।
କରୁଣା ତତ୍ତ୍ୱ ବେଣୁଧର । ବୋଲନ୍ତି ଶୁଣ ମୁନିବର ॥

## ଶ୍ରୀକୃଷ୍ଣ ଉବାଚ

ବ୍ରହ୍ମା ଶଙ୍କର ଆଦିକରି । ସାବିତ୍ରୀ କମଳା ଗଉରୀ ।୫୩।
ଯେତେ ବା ଦାସ ଦାସୀଜନ । ଗୋପିଙ୍କି ନୋହନ୍ତି ସମାନ ॥
ଗୋପ କାମେଣୀ ଜନ ଯେତେ । ଆତ୍ମାରୁ ଅଧିକ ସେ ମୋତେ ॥
ଅଶେଷ ମୁନି ବୃନ୍ଦ ଯେତେ । ଇନ୍ଦ୍ରାଦି ଦେବତା ସର୍ବତେ ॥
ଭଗତ ଯେତେ ଛନ୍ତି ସର୍ବ୍ବ । ମୋ ତତ୍ତ୍ୱ ନ ଜାଣନ୍ତି କେହି ॥
ତତ୍ତ୍ୱ ଜାଣନ୍ତି ଗୋପବାଳୀ । ମୋ ଯଶ ଗୁଣ କର୍ମଶାଳୀ ॥
ତପସ୍ୟା ଯଜ୍ଞ ଦାନ ଧର୍ମ । ବିଦ୍ୟା ସାଧନ ଜ୍ଞାନକର୍ମ ॥
ବ୍ରତ ନିୟମ ଯୋଗରସ । ଯେଉଁଭାବେ ମୁହିଁ ମୁଁ ବଶ ॥
କେବଳ ଗୋପୀ ପ୍ରେମ ରସେ । ତୋଷ ହୋଇଲି ଭାବ ବଶେ ।୬୧।
ଅଶେଷ ଭକ୍ତ ଜନ ଯେତେ । ଯେ ଗୀନ୍ଦ୍ର ବୈକୁଣ୍ଠ ସହିତେ ॥
କାହିଁ ନ ରହେ ମୋର ଚିତ୍ତ । ଗୋପୀକା ପ୍ରେମାନୁ ସନ୍ଧିତ ॥
ମୋର ମହିମା ଲୀଳା ଗତି । ସମର୍ପି ଶ୍ରଦ୍ଧାଭକ୍ତି ମତି ॥
ସବୁ ଜାଣନ୍ତି ଗୋପିଜନ । ସେ ମୋର ପଞ୍ଚ ପ୍ରାଣ ମନ ॥
ବେଦ ପୁରାଣ ଇତିହାସ । ବିଦ୍ୟା ଆଗମ ଶ୍ରୁତି ରସା ॥
ଶାସ୍ତ୍ର ଗାୟନ ଗୀତା ଶ୍ରୁତି । ଶ୍ରବଣେ ନାହିଁ ମୋର ମତି ॥
ଗର୍ବିତ ମନେ ଗୋପୀଜନ । ବୋଲନ୍ତି ଭର୍ତ୍ସନା ବଚନ ॥
ଶ୍ରବଣେ ଶୁଣି ପ୍ରୀତି ପାଇ । ଗୋପୀଜନଙ୍କ ଭାବ ଧ୍ୟାୟୀ ।୬୯।
ଭବ ବିରଞ୍ଚି ସୁନାଶିର । ସିଦ୍ଧ ଗନ୍ଧର୍ବ ବିଦ୍ୟାଧର ॥
ମୋ ଅନୁଗ୍ରହେ କଲେ ଆଶ । ମୋ ଭାବେ ଆନନ୍ଦ ତ୍ରିଦଶ ॥
ସେ ଗୋପୀ ଅନୁଗ୍ରହ ଶତେ । ଦୟା କରିବେ ଯେବେ ମୋତେ ॥
ତେବେ ଜୀବନ ମୋର ସାଧୁ । ସେ ମୋର ଇଷ୍ଟମିତ୍ର ବନ୍ଧୁ ॥
କୁଳ ଆଶ୍ରୟ ସୁଖଭୋଗ । ସ୍ୱର୍ଗ ସମ୍ପଦ ମୋକ୍ଷ ଯୋଗ ॥
ବନ୍ଧୁ ସୁହୃଦ ଇଷ୍ଟଗଣ । ଗୁରୁ ଗୌରବ ବିଭୂରଣ ॥

ତେଜିଲେ ତୃଣ ପ୍ରାୟେ କରି । ମୋ ଅର୍ଥେ ଗୋକୁଳ କୁମାରୀ ॥
ଯେ ମୋର ମାୟା ରଜ୍ଜୁପଟେ । ଅଶେଷ ବନ୍ଧନ ଟଙ୍କଟେ ।୭୨।
ମୁଁ ଗୋପୀଜନ ପ୍ରେମ ପାଶେ । ବନ୍ଧନ ହୋଇ ଭାବବଶେ ॥
ତାହାଙ୍କ ଅନୁଗ୍ରହ ଚିତ୍ତେ । ବାଞ୍ଛା କରଇ ଅନ୍ତରତେ ॥
ସେ ଗୋପୀ ମୋହର ଜୀବନ । ଅଖିଳ ସମ୍ପଦ ନିଧାନ ॥
ଗୋପୀଜନଙ୍କ ବିନୁ ଆନ । ଭଗତ ନାହିଁ ତ୍ରିଭୁବନ ॥
ଯେଗୋପୀଭାବେ ମୋତେଭଜେ । ସେ ଆତ୍ମା ଅଭିରଞ୍ଜେ ॥
ତାହାଙ୍କେ ହୁଅଇ ମୁଁ ବଶ । ଶେଷେ ଲଭଇ ପ୍ରେମରସ ।
ଗୋପୀକା ପ୍ରେମ ଭାବତେଜି । ଯେ ଅନ୍ୟ ଭାବେ ମୋତେଭଜି ॥
ସେ କାହିଁଲଭିବେ ମୋ ପ୍ରେମ । ଅଖଣ୍ଡ ପ୍ରେମ ରସ ଧାମ ।୮୪।
ସତ୍ୟ କହିଲି ତୋ ଅଗ୍ରତେ । ଭାବେ କିଣିଲେ ଗୋପୀମୋତେ ॥
ତୁ ମୋର ଆତ୍ମାରୁ ଅଧିକ । ଭଗତ ବିଶ୍ୱାସ ବିବେକ ॥
ଯେ ଭାବ କହିଲି ମୁଁ ତୋତେ । ନିର୍ମଳ ଅନୁଗ୍ରହ ଚିତ୍ତେ ॥
ଶୁଣି ନାରଦ ମହାମୁନି । ହରଷେ କଲେ ଜୟଧ୍ୱନି ॥
କୃଷ୍ଣ ଚରଣେ ନମସ୍କାର । ଆନନ୍ଦେ କଲେ ଶତେବାର ॥
ଗମନ କଲେ ମନ ତୋଷେ । ରୁଦ୍ର କହନ୍ତି ଉମା ପାଶେ ॥
ପାର୍ବତୀ ପଚାରିଲେ ଯେତେ । ରୁଦ୍ର କହିଲେ ସର୍ବ ମତେ ॥
ସେ ରସ ନ ଜାଣନ୍ତି କେହି । ବିଶ୍ୱ ସଂସାରେ ଦେହ ବହି ।୯୩।
ଥୋକାଏ ଜାଣନ୍ତି ନାରଦ । ଗୋପୀ ଜନଙ୍କ ପ୍ରେମ ସ୍ୱାଦ ॥
ଅପରେ ଜାଣିଥାନ୍ତି ଯେବେ । ଗ୍ରନ୍ଥ କହନ୍ତେ ନାନା ଭାବେ ॥
ତାହୁଂ କହିବେ ଅପ୍ରମୟେ । ସମୁଦ୍ର କଳିତ କି ହୋୟେ ॥
ଦେଶ ଭାଷାରେ ଗୀତ ରଚେ । ବାଳକ ପ୍ରକୃତି ସାହାସେ ॥
ଯାହା ମୁଁ କହିଲି ନ ଜାଣି । ଅପ୍ରାଧ କଲି ଚକ୍ର ପାଣି ॥
ମୁଁ ତୋର ସର୍ବଦା କିଙ୍କର । ତୁ ନାଥ କରୁଣା ସାଗର ॥

ଭାସିଲି ମାୟା ମୋହ ଜଳେ । ଉଦ୍ଧର ରଖ ମୋତେ କୂଳେ ॥
ଅତି ଅଧମ ମହାପାପୀ । ଘେନ ପତିତ ମିଥ୍ୟାଳାପି ।୧୦୧।
ମୋହନୁ ଅଛି କେ ସଂସାର । ତୁ କି ନ ଜାଣୁ ଚକ୍ରଧର ॥
ତୁ ଦେବ କମଳା ବିଳାସ । ନୀଳାଦ୍ରି ଶିଖରେ ତୋ ବାସ ॥
କରୁଣା ନୟନ ପ୍ରକାଶେ । ମୋତେ ରଖିବୁ ନିଜ ପାଶେ ॥
ମୁଂ ଘୋର କୋଟିକେ ଅନ୍ତର । ଖଳ ପାପିଷ୍ଟ ଦୁରାଚାର ॥
ତୋ ବିନୁ ନାହିଁ ଅନ୍ୟ ଗତି । ଉଦ୍ଧାର ଧର ଲକ୍ଷ୍ମୀପତି ।୧୦୨।
ତୁ ଯେବେ କରୁ ଅନୁଗ୍ରହ । ତେବେ ତୁଟିବ ମାୟା ମୋହ ॥
ଅନ୍ୟ ଉପାୟ ମୋର ନାହିଁ । କରୁଣା କର ଭବଗ୍ରାହୀ ॥
ମହିମା ଅତି ଅଗୋଚର । ଲେଶ ନ ଜାଣେ ବେଦବର ॥
ସୁଜନେ ଶୁଣ ତୋଷ ମନେ । ଗୋପୀଭଜନ କୃଷ୍ଣ ଧ୍ୟାନେ ॥
ଭଜିବ ଶ୍ରୀକୃଷ୍ଣ ଚରଣେ । ଭୟ ନଥିବ ଭବବଣେ ॥
ଦେଖ ସଂସାରେ ଅଂଶୁମାଳି । କାମନ୍ଧ କରଣେ ପ୍ରଜ୍ୱଳି ॥
ବିଷୟ ବାଲୁକା ସଙ୍କୁଳେ । ଆତ୍ମାକୁ ଦହେ ଅବହେଳେ ॥
ଦେହ ହୋଇବ ଯେଣେଥିର । କହଇ ଶୁଣ ସାଧୁନର ।୧୧୪।
ଶ୍ରୀକୃଷ୍ଣ ପଦ୍ମ ପାଦଦୁଇ । ଛତ୍ର ପଗପେ ଶୋଭା ପାଇ ॥
ଅମୃତ ରସ ବୃଷ୍ଟି କରେ । ଶୀତଳ ଛାୟା ସୁବିସ୍ତାରେ ॥
ସେ ଛାୟାତଳେ ଭକ୍ତେ ରହ । ନବାଧୁ ତାପତ୍ରୟ ମୋହ ॥
ସେ ପାଦତଳେ ଲକ୍ଷ୍ମୀ ଦେବୀ । ସର୍ବଦା ଦାସୀ ପଣେ ସେବି ॥
ଯାହା ଭାବନ୍ତି ଯୋଗୀ ଜନେ । ଶେଷ ଅଶେଷ ସୁରମାନେ ॥
ସେ ପାଦ କମଳରେ ଚିତ୍ତ । ନକେଶି ବିପ୍ର ଜଗନ୍ନାଥ ॥
କହଇ ଦେଶ ଭାଷା ବାଣୀ । ଶ୍ରବଣେ ଶୁଣ ପୁଣ୍ୟ ପ୍ରାଣୀ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ଗୋପୀକା ପ୍ରେମାମୃତ ବର୍ଣ୍ଣନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶ ଅଧ୍ୟାୟ

ଜୟନ୍ତୁ ଦେବ ଦେବଦତ୍ତ । ଶରଣ ରକ୍ଷଣ ମୁରାରି ।୧।
ଭୈନାଥ କମଳ ଲୋଚନ । ଭବ କଲ୍ମଷ ବିମୋଚନ ॥
ପତିତ ପାବନ ତୋ ନାମ । ଅଶେଷ ଆତ୍ମା ତୋ ବିଶ୍ରାମ ॥
ଅନନ୍ତ କୋଟି ବ୍ରହ୍ମାଣ୍ଡରେ । ଅଖିଳ ବାହ୍ୟ ଅଭ୍ୟନ୍ତରେ ॥
ପ୍ରଧାନ ପୁରୁଷ ଈଶ୍ୱର । ତୁ ପ୍ରଭୁ କରୁଣା ସାଗର ॥
ହୃଦୟ କମଳେ ମୋହରି । କି ଜୟେ କର ଚକ୍ରଧାରି ॥
ଗୋପୀଜନଙ୍କ ପ୍ରେମ ଗୁଣ । ପ୍ରକାଶ କଲ ନାରାୟଣ ॥
ମୋର ବିନୟ ବାକ୍ୟ ଶୁଣି । ଆତ୍ମା ପୁରୁଷ ଚକ୍ରପାଣି ।୮।
ହୃଦୟେ ଅନ୍ତର୍ଯାମୀ ରୂପେ । ପ୍ରକାଶ କରିବ ସଂକ୍ଷେପେ ॥
କହିବି ଦେଶ ଭାଷାମାନ । ସୁଜନେ ଶୁଣ ସୁଖ ଚିତ୍ତେ ॥
ଶଙ୍କର ଅଗ୍ରତେ ଗଉରୀ । ବୋଲନ୍ତି ନମସ୍କାର କରି ।୧୧।

### ପାର୍ବତୀ ଉବାଚ

ଗୋପୀଜନଙ୍କ ପ୍ରେମଭାବ । ବିସ୍ତାରି କହ ସଦାଶିବ ॥

### ଈଶ୍ୱର ଉବାଚ

ରୁଦ୍ର ବୋଲନ୍ତି ପ୍ରିୟବାଣୀ । ଶୁଣଗୋ ପ୍ରାଣ ସଙ୍ଗାତୁଣୀ ॥
ଭାନୁ ନନ୍ଦନୀ ଯେକ ଦିନେ । ଚଳିଲେ କାଳନ୍ଦୀ ପୁଳିନେ ॥
ବହୁତ ଗୋପାଳ କୁମାରୀ । ସଙ୍ଗତେ ଯେନ ବିଜେ କରି ॥
ଲଳିତା କରେ ଦେଇ ପାଣି । ଆସନ୍ତି ଭାନୁର ଦୁଲଣୀ ॥
ବିରଜେ ଦଶଦିଗେ ପ୍ରଭା । ବୃନ୍ଦା କାନନ ଦିଶେ ଶୋଭା ॥
ଅବନୀ ଦିଶଇ ସୁନ୍ଦର । ଆକାଶେ ଦେଖନ୍ତି ଅମର ॥
ଯେକ ଆରକେ ଦେବ ବୃନ୍ଦେ । ବଚନ ବୋଲନ୍ତି ଆନନ୍ଦେ ॥
ଦେଖ ଶ୍ରୀବୃନ୍ଦା କାନନରେ । କାଳନ୍ଦି ନଦୀ ପୁଳିନରେ ॥

ଗୋପ ନନ୍ଦଙ୍କ ଗୃହପାଶେ । ଯାକୁ ନନ୍ଦଙ୍କ ମଧ୍ୟେ ଆସେ ॥
ଅଙ୍ଗଲାବଣ୍ୟ ତେଜ ରାଶି । ଅଶେଷ ଭୁବନେ ପ୍ରକାଶି ॥
ବୈକୁଣ୍ଠ ପୁର ନାସ୍ତେ କାଣୀ । ଶ୍ରୀକୃଷ୍ଣ ଚନ୍ଦ୍ର ପାଟରାଣୀ ॥
ଦେଖି ଆନନ୍ଦ ଚରାଚରେ । ବ୍ରହ୍ମାଣ୍ଡ ଦଶାଇ ସୁନ୍ଦର ।୨୪।
ଧନ୍ୟ ହୋଇଲୁ ଯେତେ ଜନେ । ଯାନୁ ନନ୍ଦଙ୍କ ଦରଶନେ ॥
ଯେଦ୍ଧାର ପତି ନନ୍ଦସୁତ । ଯେସେ ଜଗତ ଜନ ମାତ ॥
କ୍ରୀଡ଼ା କରଇ ବାଲ୍ୟରଙ୍ଗେ । ଉତ୍ତରୀ ବସ୍ତ୍ର ନାହିଁ ଅଙ୍ଗେ ।
ଦେଖ ଯେଦ୍ଧାର ବାଳରୂପ । ନୟନା ନନ୍ଦରସ କୂପ ॥
ଯେତେ ଅବ୍ରି ସ୍ୱର୍ଗବାସୀ । ପ୍ରେମ ସାଗରେ ମନ ଭାସି ॥
କରନ୍ତି ଜୟ ଜୟ ଧ୍ୱନି । ଆନନ୍ଦେ ସୁରସିଦ୍ଧ ମୁନି ॥
ଗୋପ ସୁତଙ୍କ ସଙ୍ଗେ ହରି । ବୃନ୍ଦାକାନନେ ବିଜେ କରି ॥
ବାଳକ ପ୍ରକୃତି ଚଞ୍ଚଳେ । ମିଳନ୍ତେ କାଳନ୍ଦୀର କୂଳେ ।୩୨।
ଖେଳ ଖେଳନ୍ତି ନାନା ରଙ୍ଗେ । ଗୋପାଳ ସୁତବୃନ୍ଦ ସଙ୍ଗେ ॥
ଦାମ ସୁଦାମ ବସୁଦାମ । ଶ୍ରୀଦାମ କଙ୍କିଣୀ ସୁଷମ ॥
ସୁବଳ ବଳଭଦ୍ରସେନ । ବିକଟ ବରୁଥ ମଣ୍ଡନ ॥
ସୁକେଶ ସ୍ତୋକ କୃଷ୍ଣ ବାଦ । ସୁଭଗ ଦେବ ପ୍ରସ୍ଥ ଆଦ ॥
ଯେହ୍ୱାଙ୍କ ମଧ୍ୟେ ନନ୍ଦସୁତ । ଅପରେ ଅଛନ୍ତି ବହୁତ ॥
ଯମୁନା ତଟେ ଗୋପବାଳୀ । ଆନନ୍ଦେ ଧୂଳି ଖେଳ ଖେଳି ॥
ଖେଳନ୍ତି ବାଳ ଘର ତୋଳି । ସୁସ୍ୱରେ ଦ୍ୟନ୍ତି ହୁଳ ହୁଳି ॥
ଶବଦ ଶୁଣି ଦେବ ହରି । ହରଷେ ଗଲେ ବାଜେକରି ।୪୦।
ପ୍ରବେଶ ହୋଇଲେ ପୁଳିନେ । ଆନନ୍ଦେ ଦେଖିଲେ ନୟନେ ॥
ରାଧିକା ଚନ୍ଦ୍ରବାଳୀ ଶ୍ୟାମା । ପ୍ରେମ-ବଲ୍ଲଭା ଅଭିରାମା ॥
ଭଦ୍ରା ମଞ୍ଜୁଳା ବିମ୍ବମୁଖୀ । ଲଳିତା ଆଦ ଅଷ୍ଟସଖୀ ॥
ଯେ ନିତ୍ୟ ରୂପା ଗୋପବାଳୀ । ସମସ୍ତେ ହୋଇ ଏକ ମେଳି ॥

କରନ୍ତି ବିବିଧ ବିଳାସ । ଗଗନେ ଦେଖନ୍ତି ବିବୁଧ ॥
ମେଳଆ ଭାବେ ଦେବ ହରି । ବ୍ରଜ ବାଳକ ସଙ୍ଗ କରି ॥
ଭାଙ୍ଗିଲେ ଧୂଳି ଖେଳ ଘର । ଦ୍ରବ୍ୟ ମାନନ୍ତ କଲେ ଜୁର ॥
ତା ଦେଖି ରାଧା ରୋଷଭରେ । କୃଷ୍ଣଙ୍କୁ ବୋଲନ୍ତି ଉତ୍ତରେ ॥

ଶ୍ରୀରାଧା ଉବାଚ

କମ୍ପା ଭାଙ୍ଗିଲ ଖେଳଘର । ଯେ ତୁମ୍ଭ କେବଣ ବେଭାର ।୪୯।

ଶ୍ରୀକୃଷ୍ଣ ଉବାଚ

କୃଷ୍ଣ ବୋଲନ୍ତି ଆମ୍ଭ ବନେ । କମ୍ପା ଅଇଲ ତୁମ୍ଭେ ମାନେ ॥
ଖେଳ ଖେଳିବ ଘରଦ୍ୱାରେ । ତୁମ୍ଭର କି କାର୍ଯ୍ୟ ବନରେ ॥
କୃଷ୍ଣ ବଦନୁ ରୋଷବାଣୀ । ଶ୍ରବଣେ ଭାନୁ ସୁତା ଶୁଣି ॥

ଶ୍ରୀରାଧା ଉବାଚ

ବୋଇଲେ ସ୍ୱେହା କମ୍ପା କହ । କି ବଡ଼ ପଣେ ଗର୍ବ ବହ ।୫୦।
ନଚେତ୍ୟଦ୍ୱେଂ ଆସିବୁ ବନକୁ । କମ୍ପାଇଂ ଡରିବୁ ତୁମ୍ଭଙ୍କୁ ॥
ସ୍ୱେ ବନ ନୋହଇ କାହାର । ତୁମ୍ଭେ ଯେ ଚରାଅ ବାଛୁରି ॥
ଗୋପାଳ ପୋସ୍ୱେ ଥାନ୍ତି ସଙ୍ଗେ । ଖେଳ୍ପ ଯେ ଥାଅ ନାନା ରଙ୍ଗେ ॥
ତୁମ୍ଭଙ୍କୁ କେ କିସ ବୋଲଇ । ଆମ୍ଭେ ଯେ ଅଛୁଁ ଗାଧୋଇ ॥
ଖେଳ ଖେଳିଲୁଁ ଯେ ସାହାରେ । କି ଦୋଷ କରୁଛୁ ତୁମ୍ଭରେ ॥
କଲ ଯେ ଦୁଷ୍ଟ ଆଚରଣ । ସ୍ୱେବେ ଦେଖାଅ ବଡ଼ପଣ ॥
ଘରକୁ ଯାଅ ଯା ବାହୁଡ଼ି । ନୋହିଲେ ଦେବୁଟି ଘଉଡ଼ି ॥
ରାଧା ବଚନେ କୃଷ୍ଣ ହସି । ବୋଲନ୍ତି ପ୍ରଭୁ ବ୍ରହ୍ମ ରାଶି ।୭୧।

ଶ୍ରୀକୃଷ୍ଣ ଉବାଚ

ଯେତେକ କହିଲ ନଜାଣି । ପଳାଇ ଯାଅ ସ୍ୱେହିକ୍ଷଣି ॥
ବନ ଭୂମିରେ ଆମ୍ଭେ ରଜା । ପିତା ମାତାଙ୍କୁ କହ ଯାଇ ॥
କଳି ହୋଇଲ କହୁ କହୁ । ରାଧା ଧଇଲେ କୃଷ୍ଣ ବାହୁ ॥

କାନ ଫଣନ୍ତେ ହସ୍ତ ବାନ୍ଧ । ଗୋପଚନ୍ଦ୍ରଙ୍କୁ କରି ବନ୍ଦୀ ॥
ଲଳିତା ଆଦି ସଖୀ ଯେତେ । ବେତ୍ର ପକାଇ ନନ୍ଦ ସୁତେ ॥
ଭାନୁ ପୁରକୁ ବେଳେ ଧରି । ନଅନ୍ତେ ଦେବ ବେଣୁଧାରୀ ॥
ସୁଦାମା ଆଦି ଗୋପ ସୁତେ । ହକାଳେ ଗୋଡ଼ାନ୍ତି ସମସ୍ତେ ।୭୮।
ବୋଲନ୍ତି ବିନୟ ବଚନ । ନ ନିଅ ଶ୍ରୀନନ୍ଦ ନନ୍ଦନ ॥
ଛୋଳ ଗୋ ଦେବୁ ବାଲି ଘର । ଇଚ୍ଛା ସୁଖରେ କ୍ରୀଡ଼ା କର ॥
ଶୁଣି ସନ୍ତୋଷ ଭାନୁବାଳୀ । ଲେଉଟି ବାଲି ଘର ଛୋଳି ॥
କ୍ରୀଡ଼ା କରନ୍ତି ବାଳ ରଙ୍ଗେ । ହରଷେ ବନଭୂମି ଦେଶେ ॥
କାଣ୍ଡଂ ରଚଲେ ଗୋପପୁର । ଭାନୁ ନଗର ନନ୍ଦ ଘର ।୭୯।
ଗୋପ ନନ୍ଦନ ଗୋପବାଳୀ । ବିଚାର କଲେ ମନେ ଭଲି ॥
ଭାନୁ ନନ୍ଦନୀ ରୂପବନ୍ତ । ସୁନ୍ଦର ବର ନନ୍ଦ ସୁତ ॥
ଯେ ବେନ କରାଇବା ବିଭା । ଦିଶିବେ ବର କନ୍ୟା ଶୋଭା ॥
ଯେମନ୍ତ ଭାଳ ଯେକ ଚିତ୍ତେ । ବିବାହ ଉଚ୍ଛବ ନିମନ୍ତେ ॥
ଥୋକାଏ କନ୍ୟାକୁ ଆବୋରି । ବେଭାର କରନ୍ତି ବିଚାରି ॥
ଥୋକେ ହୋଇଲେ ବରଯାତ୍ର । ନନ୍ଦ ଗୋପାଳ ଯଶୋବନ୍ତୀ ॥
କୃଷ୍ଣଙ୍କୁ କଲେ ବରବେଶ । ରାଧିକା ହୋଇଲେ ସୁବେଶ ॥
ସମସ୍ତ ଜାଣି ଦେବ ଋଷି । ଅଇଲେ ବେଦ ବାକ୍ୟ ଘୋଷି ॥
ଦେବେ କରନ୍ତି ଜୟେ ଜୟେ । ନାରଦ ବୃନ୍ଦାବନେ ହୋଏ ॥
ଦେଖି ବୋଲନ୍ତି ବାଳବୃନ୍ଦ । ସୁଖ ବିକାଶେ ପୂର୍ଣ୍ଣଚନ୍ଦ୍ର ।୮୦।
ବ୍ରହ୍ମାନନ୍ଦନ ପାଦ ଧରି । ବୋଲନ୍ତି ଶୁଣ ବ୍ରହ୍ମାଚାରୀ ॥
ଆମ୍ଭେ କରିଛୁ ଖେଳଘର । ରାଧାକୃଷ୍ଣଙ୍କୁ ବିଭା କର ॥
ଆନନ୍ଦ ମନେ ଦେବ ଋଷି । ବାଲିକା ବେଦୀ ପରେ ବସି ॥
ରାଧାକୃଷ୍ଣଙ୍କୁ ବସାଇଲେ । ବରଣ ବିଧି ତତ୍ତ୍ୱଂ କଲେ ॥
ଉଚ୍ଚାର ବେଦ କାଳବାଣୀ । ଷଡ଼ର୍ଘ୍ୟ ପୂଜା ପରିମାଣି ॥

ଆସନେ ବସାଇଲେ ବର । ନାରଦ କହନ୍ତି ପ୍ରବର ॥
ଉତ୍ତମ ଲଗ୍ନବେଳ ଜାଣି । ବନ୍ଧନ କଲେ ବେନପାଣି ॥
ପଞ୍ଚ କାହାଳୀ ବେଣୁ ଗୀତ । ଗୋପ ବାଳକେ କଲେ ନୃତ୍ୟ ॥
ଆନନ୍ଦେ ଦ୍ୟନ୍ତି ହୁଳ ହୁଳ । ଭବେ ବାଜନ୍ତି କରତାଳ ॥
ପାଣି ଗ୍ରହଣ ବିଧି ସାରି । ଅନଳ ମୁଖେ ହୋମ କରି ॥
ରାଧାଙ୍କୁ କୋଳାଗ୍ରତ କରି । ଜୟ ହୋଇଲେ ଦେବହରି ॥
ଶ୍ୟାମ ଲାବଣ୍ୟ ରୂପରାଶି । ଅଶେଷ ଭୁବନେ ପ୍ରକାଶି ॥
ଶ୍ୟାମ ରଶ୍ମିରେ ରାଧାଙ୍କର । ଶ୍ୟାମ ଦିଶଇ ବୃନ୍ଦାବନ ॥
ଯେତେ ଗୋପାଳ ଗୋପବାଳୀ । ଦିଶନ୍ତି ଶ୍ୟାମ ତନୁ ଶାଳୀ ॥
କାଳନ୍ଦୀ ନଦୀ ଜଳ ଶ୍ୟାମ । ଆକାଶେ ପୂରେ ଶ୍ୟାମ ଧାମ ॥
ବ୍ରହ୍ମାଦି ସକଳ ଅମର । ଗଗନେ କରନ୍ତି ବିହାର ।୯୯।
ଦେଖି ଶ୍ରୀକୃଷ୍ଣ ଅଙ୍ଗ ତେଜେ । ବ୍ରହ୍ମାଣ୍ଡ ଧାମ ଅଭରଞ୍ଜେ ॥
ଜୟ ଶବଦେ କଲେ ସ୍ତୁତି । ଦିବ୍ୟ କୁସୁମ ବରଷନ୍ତି ॥
ଶ୍ରୀବୃଷଭାନୁ ଗୋପସୁତା । ଥିଲେ ଯେ କୃଷ୍ଣ କୋଳାଗତା ॥
ବସିଲେ ପ୍ରେକାସନ ହୋଇ । ସପତ ପଦୀ କର୍ମ ପାଇଁ ॥
ଦକ୍ଷ ଚରଣ ବଢ଼ାଇଲେ । ନାରଦ ବାକ୍ୟ ଉଚ୍ଚାରିଲେ ॥
ଶ୍ରୀକୃଷ୍ଣ ଧଇଲେ ଶ୍ରୀକରେ । ରଖନ୍ତି କୁଶ ଗ୍ରନ୍ଥି ପରେ ॥
ଶ୍ରୀହସ୍ତେ ଦେବ ବନମାଳୀ । ରାଧା ଚରଣ ପଦ୍ମ ତୋଳି ॥
ଯାବେ ବସାନ୍ତି କୁଶାସନେ । ନାରଦ ମୁନୀଙ୍କ ବଚନେ ॥
ପ୍ରେମନ୍ତ କଲେ ସାତବାର । ସପତ ପଦୀ କର୍ମସାର ॥
ଶ୍ରୀକୃଷ୍ଣ ପ୍ରଭୁ ଯେତେବେଳେ । ରାଧା ଚରଣ ଅବଲମ୍ବେଲେ ॥
ଧଇଲେ ଚରଣ ଅଙ୍ଗୁଳି । ଲଜ୍ଜିତ ହୋଇଲେ ଭାନୁବାଳୀ ॥
ଚରଣ ନଖ ଚନ୍ଦ୍ର କାନ୍ତି । ତେଜେ ପୂରିଲା ବସୁମତୀ ॥
ଗମ୍ଭୀର ଦିଶେ ବୃନ୍ଦାବନ । ଗମ୍ଭୀର କାଳନ୍ଦୀ ପୁଳିନ ॥
ଭୃଙ୍ଗ କୋକିଳ ମୃଗ ପନ୍ତି । ଗଭୀର ବର୍ଣ୍ଣେ ସେ ଦିଶନ୍ତି ॥

ତମାଳ ବର୍ଣ୍ଣ ଗୌର ବଶେ । ଚନ୍ଦ୍ରମା କିରଣ ପ୍ରକାଶେ ॥
ଶ୍ରୀକୃଷ୍ଣ ହଶେ ଗୌର ତନୁ । ଗୋପ ନନ୍ଦନ ଗୋପସୁନୁ ।୧୧୫।
ସଚରାଚରେ ଗୌର ପ୍ରଭା । ତିନ ଭୁବନ ହଶେ ଶୋଭା ॥
କିଅବା କ୍ଷୀର ସିନ୍ଧୁ ଜଳ । ଘୋଟିଲା ଅବନୀ ମଣ୍ଡଳ ॥
ସମ୍ପୂର୍ଣ୍ଣ ଚନ୍ଦ୍ର କୋଟି କୋଟି । ଶୂନ୍ୟ ମଣ୍ଡଳ କିବା ଘୋଟି ॥
କୁନ୍ଦ କର୍ପୂର ସୁଧା ରସେ । ପ୍ରଭା ପୂରିଲା ଦଶ ଦିଶେ ॥
କି ଅବା ଅମୀୟ ଲହରୀ । ରସେ ଧୋଇଲା ତିନ ପୁରୀ ॥
ଦେଖି ଆନନ୍ଦ ସୁରଗଣ । କୃଷ୍ଣରେ ପଶିଲେ ଶରଣ ।୧୨୧।
ପ୍ରେମଚନ୍ଦ୍ର ବିଭା ବିଧି ସାରି । ନାରଦ ଗଲେ ସ୍ୱର୍ଗପୁରୀ ॥
ଗୋପ କାମିନୀ ସଙ୍ଗ କରି । ରାଧା ଚଳିଲେ ଭାନୁପୁରୀ ॥
ପ୍ରବେଶ ନିଜ ସଦନରେ । ଦେଖନ୍ତି ଜନନୀ ପିଅରେ ॥
ସାନନ୍ଦ କେ ପାରିବ କହି । ବିଜୟେ କୃଷ୍ଣକାନ୍ତା ସହି ॥
କୃଷ୍ଣହିଁ ଗଲେ ନିଜ ପୁରି । ସଙ୍ଗତେ ଗୋପାଳ କୁମରି ॥
ପ୍ରବେଶ ହୋଇଲେ ମନ୍ଦିରେ । ଗୋପାଳେ ଗଲେ ଯେଝାଘରେ ॥
କୃଷ୍ଣ ଉଚ୍ଛବ ମହାରସ । ବଚନେ କେ କରିବ ଶେଷ ॥
ସୁଜନେ ଶୁଣ ତୋଷ ହୋଇ । କୃଷ୍ଣ ଚରଣେ ମନ ଦେଇ ॥
ଦୁଷ୍କୃତୁଂ ହୋଇବ ମୁକତ । କୃପା କରିବେ ରାଧାକାନ୍ତ ॥
କୃଷ୍ଣ ମଙ୍ଗଳ ରସଗୀତ । କହଇ ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମ ଶ୍ରୀରାଧାକୃଷ୍ଣ ବିବାହ-ବର୍ଣ୍ଣନେ ନାମ ପଞ୍ଚଦଶୋଽଧ୍ୟାୟଃ ।

## ଷୋଡ଼ଶ ଅଧ୍ୟାୟ

### ଈଶ୍ୱର ଉବାଚ

ସୁଜନେ ଶୁଣ ତୋଷ ହୋଇ । କୃଷ୍ଣ ଚରଣେ ମନ ଦେଇ ।୧।
ପ୍ରେମନେ ଗଲା କେତେ ଦିନ । ଭାନୁ ବିଚାର କଲେ ମନ ॥

ଗୋପାଳ ନାମ ଚନ୍ଦ୍ରସେନ । ବରପଣକୁ ସେ ଭଜନ ॥
ତାହାକୁ ଦେବଇଂ ନନ୍ଦନୀ । କୁଳ ବେଭାର ଧର୍ମ ମାନି ॥
ଯେତେ ବିଗୂର ଭାନୁରାୟେ । ବିଭା ଉଚ୍ଛବ ବିଧିକୟେ ॥
ବନ୍ଧୁ କୁଟୁମ୍ବ ସଙ୍ଗ କରି । ଚନ୍ଦ୍ରଶେନକୁ ବର ବରି ॥
ନିଜ ମନ୍ଦିରକୁ ଆଣିଲେ । ତକ୍ଷଣେ ପୁର ଶୋଭା କଲେ ।୭।
ତାହା ଜାଣିଲେ କୃଷ୍ଣକାନ୍ତ । ହୃଦୟ ମଧ୍ୟେ କଲେ ଚିନ୍ତା ॥
ଦେବାଧି ଦେବ ବେଣୁଧାରୀ । ସେ ମୋର ପ୍ରାଣ ଅଧିକାରୀ ॥
ହୋଇଲେ ବୃନ୍ଦାବନେ ବିଭା । ଆଜ ନୋହିବ ମୁହିଂ ବିଭା ॥
ତାହା ନ ଜାଣି ମୋ ପିଅର । ଚନ୍ଦ୍ରଶେନକୁ କଲା ବର ॥
ଯେତେ ବିଗ୍ରହ ସ୍ୱ ପ୍ରକାଶେ । କନ୍ୟାୟେ ସୃଜ ମାୟା ଅଂଶେ ॥
ଗୋପ୍ୟ ହୋଇଲେ ଠାକୁରାଣୀ । ହୃଦେ ଭାବନ୍ତି ବେନୁପାଣି ॥
ଯାହାର ମହାମାୟା ଦାସୀ । ଯେ ନିତ୍ୟ ଧାମ ଅଭିଳାଷୀ ॥
ଶ୍ରୀକୃଷ୍ଣ ଶରୀର ଧାରଣୀ । ବୃନ୍ଦା କାନନ ବିହାରିଣୀ ।୧୫।
ମନ ବଚନେ ଯା ମହିମା । ଅନନ୍ତେ କରି ପାରେ ସୀମା ॥
ସେ ବୃଷଭାନୁ ଗୋପରାୟେ । ମାୟା କନ୍ୟାକୁ ବିଭା କୟେ ॥
ସଂସାର ରସେ ତାର ମନ । ମାୟା ବଳରେ ଅଚେତନ ॥
ଦୁହିତା ପ୍ରାୟେ ତାକୁ ମଣି । ବିଭାୟେ ଦେଲା ଗୋପମଣି ॥
ସେ ଚନ୍ଦ୍ରଶେନ ଗୋପବର । ମାୟା କନ୍ୟାକୁ ନେଲା ଘର ॥

ଦେବ୍ୟୁବାଚ

ଶୁଣି ବୋଲନ୍ତି ମାହେଶ୍ୱରୀ । ହେ ପ୍ରାଣନାଥ ଶୂଳଧାରୀ ॥
ବିଚିତ୍ର କହିଲ ମହିମା । ଶ୍ରୀବୃଷଭାନୁ ରାୟେ ଜେମା ॥
ମାୟା କନ୍ୟାକୁ ଜାତ କରି । ଚନ୍ଦ୍ରଶେନକୁ କମ୍ପା କରି ।୨୩।
କାନନେ କୃଷ୍ଣ ହସ୍ତଧରି । ଆମ୍ଭାକୁ କମ୍ପା ଗୋପ୍ୟ କରି ॥
ସନ୍ଦେହ ଜାତ ମୋର ମନେ । ହେ ନାଥ କୁହ ସାବଧାନେ ॥

ଶ୍ରୀଈଶ୍ୱରୋବାଚ

ହସି ବୋଲନ୍ତି ଶୂଳପାଣି । ନିତ୍ୟ ନାୟକ ଶିଖାମଣି ॥
ବୈକୁଣ୍ଠ ପୁରେ ସ୍ନେହ ଭବନେ । ରାଧା ସଙ୍ଗତେ ସୁଖମନେ । ୧୭॥
ବ୍ରଜସ୍ତ୍ରୀ ଦେବ ବ୍ରହ୍ମରାଣି । ଲଳିତା ଆଦି ସର୍ବ ଦାସୀ ॥
କରନ୍ତି ନୃତ୍ୟ ଗୀତ ରସ । ପ୍ରଶନ୍ନ ଚିତ୍ତ ପୀତ ବାସ ॥
ରାଧା ହସ୍ତରେ ହସ୍ତ ଦେଇ । ନୃତ୍ୟ ଦେଖନ୍ତି ସୁଖ ପାଇ ॥
ହାସ୍ୟ ବଚନ ପ୍ରିୟ କରି । ରାଧାଙ୍କୁ ବୋଲନ୍ତି ଶ୍ରୀହରି ॥

ଶ୍ରୀଭଗବାନୋବାଚ

ତୋ ତନୁ ଅବତାର ଯେତେ । ମୋ ଅଂଶେ ହୋଅନ୍ତି ଜଗତେ ॥
କାର୍ଯ୍ୟ କାରଣେ ଜାତ ହୋଇ । ପୃଥିବୀ ଭାର ଉଶ୍ୱାସଇ ॥
ପୂର୍ବେ ଗୋ ବ୍ରହ୍ମଋଷି ମାନେ । ମୋତେ ଭଜିଲେ ବ୍ରହ୍ମଧ୍ୟାନେ ॥
କାମେଶ୍ୱରୀ ରୂପେ ତପୋବନ୍ତ । ଭବେ ହୋଇଲେ ଗୋପଜାତ ॥
ତାହାଙ୍କ ଆଶା ପୂର୍ଣ୍ଣ କରି । ଭାନୁ ମନ୍ଦିରେ ଅବତରି ॥
ତୁ ମୋତେ ହୁଅ ପର ନାରୀ । ଗୋପୀ ଜନଙ୍କୁ ସଙ୍ଗକରି ॥
ବିହାର କରି ବୃନ୍ଦାବନେ । ଚିତ୍ତ ହରିବ ବେଣୁସ୍ୱନେ ॥
ଶୁଣି ବୋଲନ୍ତି ସର୍ବେଶ୍ୱରୀ । ସ୍ନେହମନ୍ତ ଆସ୍ୟାଂ ବେଣୁଧାରୀ ॥
କଥା କହିଲ ମୋ ଅଗ୍ରତେ । ମୁଂ କମା ପର ନାରୀ ତୋତେ ॥
ହୋଇବ ଭାନୁପୁରେ ଜାତ । ତୋପାଦେ ଥିବ ମୋରଚିତ୍ତ ।୪୧।
ତୋ ତନୁ ଆନ କର ବର । ଜୀବନ ନପାରିବ ଧରି ॥
ସ୍ନେହମନ୍ତ ଭାବ ପାଦତଳେ । ପ୍ରଣାମ କରନ୍ତି ବିକଳେ ॥

ଶ୍ରୀଭଗବାନୁବାଚ

କୃଷ୍ଣ ବୋଲନ୍ତି ଶୁଣପ୍ରିୟେ । ମନେ ନ କର କିଛି ଭୟେ ॥
ବାଳକ କାଳେ ବୃନ୍ଦାବନେ । ମୋତେ ତୁ ଦେଖିବୁ ନୟନେ ॥
କ୍ରୀଡ଼ାରେ ହୋଇବୁ ତୁ ବଶ । ଭୁବନ ପୂରିବ ତୋ ପ୍ରଶଂ ॥

ପିତା ତୋହର ଯଥା କାଳେ । ଦାନ କରିବ ସେତେବେଳେ ॥
ଗୋପ ନଗରେ ଚନ୍ଦ୍ରସେନ । ମୋହର ଅଂଶେ ବିଦ୍ୟମାନ ୪୮।
ପ୍ରଦାନ କରି ପିତା ଦେବ । ଗୋପ ପୁରକୁ ଘେନି ଯିବ ॥
ତୋର ସଙ୍ଗତେ ଗୋପୀଗଣେ । ମୋତେ ଭେଟିବେ ବୃନ୍ଦାବନେ ॥
ତୋହନୁ ପ୍ରେମ ରସ ରଙ୍ଗେ । ବିହାର କରିବେ ମୋ ସଙ୍ଗେ ॥
ନାର ପୁରୁଷ ଭାବେ ଭାବ । ମୋହରେ ହୋଇବେ ବଲ୍ଲଭୀ ॥

ଶ୍ରୀରାଧାଉବାଚ

ଶୁଣି ବୋଲନ୍ତି ଠାକୁରାଣୀ । ଯାହା କହିଲ ବେଣୁପାଣି ॥
ସେ ଗୋପୀ ଜନେ ବ୍ରହ୍ମଋଷି । ତୋତେ ଭଜିଲେ ହିତାକାଂଶି ॥
କାମିନୀ ରୂପେ ଜାତ ଗୋପେ । ତୋତେ ବରିଲେ ପୂର୍ବତପେ ୫୫।
ସଂସାର କର୍ମ ଫଳ ତେଜି । ଯାରଭାବରେ ତୋତେ ଭଜି ॥
ଲଭିବେ ତୋ ନିତ୍ୟ ସଦନ । ତୁ ତ ଅନାଦି ନିରଞ୍ଜନ ॥
ବେଦ ବହିତ କର୍ମଥାନ । କ୍ଷମା କରିବ ଭଗବାନ ॥

ଶ୍ରୀଭଗବାନୁବାଚ

ହସି ବୋଲନ୍ତି ବେଣୁ ହସ୍ତ । ଯାହା କହିଲ ମୋ ଅଗ୍ରତ ॥
ପୂର୍ବେ ଶ୍ରୀରାମ ରୂପେ ମୁଇଂ । ରାବଣ ଅର୍ଥେ ଜାତ ହୋଇ ॥
ତୋହୋର ଅଂଶେ ଜାତ ସୀତା । ସେ ମୋର ହୋଇଲା ବନିତା ॥
ତାହାକୁ ସଙ୍ଗେ ଘେନି ମୁଇଂ । ଦଣ୍ଡକା ଅରଣ୍ୟେ ଭ୍ରମଇ ॥
ସେମନ୍ତେ ବ୍ରହ୍ମଋଷିମାନେ । ଅଇଲେ ମୋର ଦରଶନେ ॥
ମୋର ମଧୁର ରୂପକାନ୍ତ । ନୟନେ ଦେଖି ମୋହଯାନ୍ତି ॥
ବୃକ୍ଷେ ଆଉଜି କାମ ଭରେ । ବିଚାର କରନ୍ତି ମନରେ ॥
ଧନ୍ୟ ସେ ଜନକ ନନ୍ଦିନୀ । ଯାହାକୁ ଲଭ୍ୟେ ସୁରମୁନି ॥
ସେ ପ୍ରଭୁ ସଙ୍ଗତେ ବିହରେ । ମଦନ ବାଧା ଅପହରେ ॥
ଯୁବତୀ ହୋଇ ଥାନ୍ତୁ ଯେବେ । ସମ୍ଭୋଗ କରନ୍ତୁ ନା ତେବେ ॥

ଯେମନ୍ତ ଭାଳି ମୁନିବର । ସାତ୍ତ୍ୱିକ୍ୟ ଜାତ କଳେବର ।୭୯।
ବଦନୁ ନିଷ୍ଟୁରେ ବଚନ । ଲଜ୍ଜିତ ସମାକୁଳ ମନ ॥
ସେ ତ ଅଛନ୍ତି ମହାପତି । ଜାର ପୁରୁଷେ କଲେ ମତି ॥
ସେ କଥା ନୋହଇ ଗୋ ଆନ । ଜାର ପୁରୁଷ ଭାବେ ମନ ॥
ପ୍ରବେଶ କରିବେ ମୋ ଦେହେ । ସଂସାରେ ଥିବେ ମାୟାମୋହେ ॥
ତାଙ୍କ ସଙ୍ଗତେ ତୁମ୍ଭେ ଥିବ । ଆବେଶ ମାୟା ମୋହ ଭାବ ॥
ମୋର ସଙ୍ଗତେ ବନ ଦେଶେ । ବିଳାସ କରି ରାସରସେ ॥
ପୂର୍ଣ୍ଣ କରିବେ ସର୍ବକାମ । ସଂସାରେ ଥିବ ତୁମ୍ଭ କର୍ମ ॥
ଶ୍ରବଣେ ଶ୍ରୀକୃଷ୍ଣ ବଚନ । ଶୁଣି ସନ୍ତୋଷ ରାଧାମନ ।୭୭।

ହରଷେ ବୃଷଭନୁ ଘରେ । ଜାତ ହୋଇଲେ ତଦନ୍ତରେ ॥
ବର ବରିଲେ ଦେବ ହରି । ଶ୍ରୀ ବୃନ୍ଦା କାନନେ ବିହରି ॥
ମାୟା କନ୍ୟାକୁ କଲେ ଜାତ । ମୋହିଲେ ବୃଷଭାନୁ ଚିତ୍ତ ॥
ସେ ମାୟା କନ୍ୟା ଗୋପପୁରେ । ରହିଲ ଚନ୍ଦ୍ରସେନ ଘରେ ॥
ସଖୀଙ୍କ ସଙ୍ଗତେ ବିହରେ । ଭାବେ ଗୋପାଳ ମନହରେ ॥
ରାଧା ରହିଲେ ଅନ୍ତର୍ଲୀନେ । କୃଷ୍ଣ ଚରଣ ପଦ୍ମଧ୍ୟାନେ ॥
ବଚନେ କୃଷ୍ଣ ନାମ କହେ । ଲୋଚନେ କୃଷ୍ଣ ରୂପ ଗୃହେଁ ॥
ଶ୍ରୀକୃଷ୍ଣ ଭାବ ବିନୁ ଆନ । ବିଷୟେ ନ ରୁଚଇ ମନ ॥
ସହଜେ କୃଷ୍ଣ ପ୍ରାଣେଶ୍ୱରୀ । ଭାବେ ଶ୍ରୀକୃଷ୍ଣ ଚିନ୍ତାକରି । ୮୬ ॥
ଅଚିନ୍ତ୍ୟା ସୁଖେ କୃଷ୍ଣ ରସେ । ଭାନୁ ନନ୍ଦିନୀ ମନ ତୋଷେ ॥
ବିଷୟ ବେଭାର କାରଣେ । ଗୃହସ୍ଥ ଧର୍ମ ଆଚରଣେ ॥
ସଂସାର ଭାବେ ଉଦାସିନୀ । ପ୍ରବର୍ତ୍ତି ଥାଇ ମାୟା ଦାସୀ ॥
ଯେମନ୍ତ ଗଲା କେତେଦିନ । ଗୋକୁଳ ପତି ଭଗବାନ ॥
ବ୍ରଜ ବାଳକ ସଙ୍ଗକରି । ଅରଣ୍ୟେ ଚରାନ୍ତି ବାଛୁରି ॥
ଦିବସ ଶେଷେ ଗୃହେ ଆସେ । ସଙ୍ଗତେ ଥାନ୍ତି ଗୋପଶିଶେ ॥

ଅଳକା ବୃତ ସିନ୍ଦୁର ରଙ୍ଗେ । ବଙ୍କିମା ଚକ୍ଷୁହାଣି ଅପାଙ୍ଗେ ।
ହେଲେ ଗଞ୍ଜାଇ କୋଟି କାମ । ଲାବଣ୍ୟ ତନୁ ଘନଶ୍ୟାମ । ୯୪ ।
ଗଳ ଉପରେ ଗୁଞ୍ଜମାଳ । ଶିରେ ମୟୂରଶ ପୁଷ୍ପ ଚୂଳ ॥
କର୍ଣ୍ଣେ କୁଣ୍ଡଳ ବେନି ଶୋହେ ॥ ଅଶେଷ ଜନ ମନ ମୋହେ ॥
ହୃଦେ ଶୋଭିତ ବନମାଳ । କଙ୍କଣ ବେନି ବାହୁମୂଳ ॥
ପୀତ ବସନ କଟି ଦେଶେ । ବିଜୁଳି ତେଜ କି ପ୍ରକାଶେ ॥
ଚରଣେ ମଞ୍ଜୀର ସୁନ୍ଦର । ମଧୁର ବଂଶୀ ମନୋହର ॥
ଗୋବତ୍ସା ବୃନ୍ଦ ଧେନୁ ସଙ୍ଗେ । ବ୍ରଜପୁରେ ବାଳ ଲୀଳାରଙ୍ଗେ ॥
ପଞ୍ଚ କାହାଳୀ ବେଣୁ ନାଦ । ଗୋପୀଏ ଶୁଣିଲେ ଶବଦ ॥
ଘରୁ ବାହାର ହୋଇ ନାରୀ । ଦେଖନ୍ତି ପ୍ରଭୁ ବେଣୁଧାରୀ ।୧୦୨।
ସେ ଗୋପୀ ଜନେ ଯେତେବେଳେ । କୃଷ୍ଣ ଦେଖନ୍ତି ଯେତେବେଳେ ॥
ଖଣ୍ଡନ୍ତି ଭବ ଭୟ ଦୁଃଖ । ହେଲେ ଲଭନ୍ତି ସର୍ବ ସୁଖ ॥
ସେ ସର୍ବ ସୁଖ ପ୍ରଦ ହରି । ତାଙ୍କ ଚରଣେ ମନେ ଧରି ॥
କହଇ ବିପ୍ର ଜଗନ୍ନାଥ । ସୁଜନେ ଭଜ ଗୋପୀନାଥ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ଚନ୍ଦ୍ରଶେନ ବ୍ରଜପୁରେ ନାମ ଷୋଡ଼ଶୋଽଧ୍ୟାୟଃ ।

## ସପ୍ତଦଶ ଅଧ୍ୟାୟ

### ଈଶ୍ୱରଉବାଚ

ସୁଜନେ ଶୁଣ ତୋଷ ଚିତ୍ତେ । ଶିବ କହନ୍ତି ଶିବାପ୍ରତେ ।୧।
ଭକତେ ପ୍ରଭୁ ବନମାଳୀ । କରନ୍ତି ବୃନ୍ଦାବନେ କେଳି ॥
ଗୋପ ତନୟ ଧେନୁ ସଙ୍ଗେ । ବିହାର କଲେ ନାନାରଙ୍ଗେ ॥
ନବ ଜଳଦ ତନୁ ଶ୍ୟାମ । ବରହା ପୁଚ୍ଛ ଅଭିରାମ ॥
କର୍ଣ୍ଣେ ଭୂଷଣ କର୍ଣ୍ଣିକାର । ଯେସନେ ଶୋଭା ନଟବର ॥

କନକ ପିଶଙ୍ଗ ବସନ । କଟି ମେଖଳା ପରିଧାନ ॥
ବଇଜୟନ୍ତୀ କଣ୍ଠ ତଟେ । ମୁରଲୀ ବିମ୍ବାଧର ପୁଟେ ॥
ପଞ୍ଚମ ସ୍ୱନେ ବଂଶୀ ଧ୍ୱନ । କରନ୍ତି ବୃନ୍ଦାରକ ମଣି ॥
ଶ୍ରବଣେ ଶୁଣି ବେଣୁ ଗୀତ । ଗୋପ କାମେମ୍ନି ମୋହଗତ ॥
ସମସ୍ତେ ହୋଇ ଯେକ ମେଳ । ବସି ଭଳନ୍ତି ଗୋପବାଳୀ ॥
ଯେକ ଆରକେ ପ୍ରିଅବାଣୀ । ବୋଲନ୍ତି ଶୁଣ ସଂଗାକ୍ରୁଣୀ ॥
ଗୋପ ନନ୍ଦନ ସଙ୍ଗେ ହରି । ବୃନ୍ଦା କାନନେ ବନେ କରି ॥
ବାଦନ୍ତି ମଧୁର ମୁରଲୀ । ଦେଖି ଆନନ୍ଦ ମନ୍ତ୍ରିଆଳୀ ॥
ପବନ ବହେ ମନ୍ଦ ମନ୍ଦ । ସମ ଶୀତଳ ସୁରୁଗନ୍ଧ ॥
ବିଗ ବିଟଇ ପରିମାଳ । ଆନନ୍ଦ ତ୍ରିଭୁବଣ ସକଳ ॥
ଦେଖ କାଳନ୍ଦୀ ନନ୍ଦୀକୂଳେ । ସୁନ୍ଦର କଦମ୍ବର ମୂଳେ ।୧୬।
ନବ କିଶୋର ଶ୍ୟାମବ୍ୟେ । ବେଢ଼ି ଯେଥିବେଗୋପପୋ ଯେ
ଆନନ୍ଦ ଲବଣ୍ୟ ଜଳଧି । ଯେ ଅଚ୍ୟ ପୂର୍ଣ୍ଣ କଳାନିଧି ॥
ଉଦୟେ ବୃନ୍ଦାବନ ଦେଶେ । ମନ ଚକୋର ପୂର୍ଣ୍ଣ ଆଶେ ॥
ନୟନ ପରମ ମଙ୍ଗଳ । କାରଣ ଫଳ ନନ୍ଦବାଳ ॥
କୋଟି ସମ୍ପୂର୍ଣ୍ଣ ଚନ୍ଦ୍ରାନନେ । ମଧୁର ମୂରଲୀ ଚୁମ୍ବନେ ॥
ପଞ୍ଚମ ରସ ଧୂନ କରେ । ଶବଦ ଶୁଭେ ତ୍ରିପୁରେ ॥
କୁଶଳ କର୍ମ କଲି ବେଣୁ । କୃଷ୍ଣ ବଦନ ଚୁମ୍ବେ ତେଣୁ ॥
ଅଧର ସୁଧା କରେ ପାନ । ବଗୃର କରଇ ଗୋମନା।୨୪।
ମୋ ସପତ୍ନୀ ଗୋପୀଜନେ । ଚୁମ୍ବନ ଦେବେ କୃଷ୍ଣାନନେ ॥
ଆଜ ଦଶଵ ଗୋପୀବୃନ୍ଦ । ଚୁମ୍ବିବ ମୁଖ ଅରବିନ୍ଦ ॥
ଗୋପୀଙ୍କି କ୍ରୋଧ ମନେଧରି । ଅଧର ମୃତ ପାନକରି ॥
ଆମ୍ଭଙ୍କୁ ନ ରଖିବ କିଛି । ବିଶେଷ ଆମ୍ଭାକୁ ଦହୁଛି ॥
ଶୁଣି ବୋଲନ୍ତି ପ୍ରିୟସଖୀ । ବିସ୍ମୟ ହୋଇ ଚନ୍ଦ୍ରମୁଖୀ ॥

କହଇଂ ମରଳର ଗୁଣ । ନିଶ୍ଚଳ ମନେ ସଖୀ ଶୁଣ ॥
ପୂର୍ବେ ଯେ ଅରଣ୍ୟ କନ୍ଦରେ । ବଂଶ ବିଟପୀ ସମୂହରେ ॥
ମଧରେ ଥିଲି ଦ୍ରୁମ ରୂପେ । କାଷ୍ଠ ଘଷଣ ମହାକୋପେ ॥
ଅଙ୍ଗୁ ଅନଳ କଲି ଜାତ । ଆପଣା ବଂଶ କଲି ହତ ॥
ଦର ଦଗଧ ତନୁ ବହି । ପଡ଼ି ଯେ ଥିଲି ସହିଂ ରହିଂ ॥
ସ୍ୱବଂଶ ଦହି ଅଛି ପୂର୍ବେ । ଆମ୍ଭଙ୍କୁ ଦହିବଟେ ଯେବେ ॥
କି ଅବା ଗରଳ ଲହରି । ଅଙ୍ଗେ ଧାରଇ ସହ ସରି ॥
ଗୋପୀଏ ବୋଲଇ ଗୋ ମିତ । କମ୍ପାଇ କହିଲୁ ଯେମନ୍ତ ॥
ଦେଖ ଯେ ବଂଶୀର ମହିମା । କୃଷ୍ଣ ବଦନ ମଧୁରିମା ।୩୮।
ଉଦ୍‌ଗାରେ ସୁଧା ରସଧାର । ମନେ ଆନନ୍ଦ ଚରାଚର ॥
ଦ୍ରୁମ ସଙ୍କୁଳ ବୃନ୍ଦାବନେ । ହରଷେ ବଢ଼ିଲେ ମନେ ॥
ଆମ୍ଭ ବଂଶରେ ବଂଶୀ ଜାତ । ପିଇବ କୃଷ୍ଣ ମୁଖାମୃତ ॥
ଆନନ୍ଦେ ଦ୍ରୁମ ନିକୁରମ୍ଭ । କାନନେ ହୋଇଲେ ପଲ୍ଲବ ॥
ପୁଲକ ବୃନ୍ଦ ଅଙ୍କୁରିତ । ଆନନ୍ଦେ ଅଶ୍ରୁ ବିଗଳିତ ।
କୁସୁମ ଗଳେ ମକରନ୍ଦ । ସୁଜନ ପରାୟେ ଆନନ୍ଦ ॥
ଦେଖ ପଲ୍ଲବ ତରୁବରେ । ମନ୍ଦ ପବନ ବହେ ଧୀରେ ॥
ନମିତ ହୋଇ ଭୂମି ତଳେ । ଶ୍ରୀକୃଷ୍ଣ ଚରଣ କମଳେ ॥
ଫଳ କୁସୁମ ଉପହାର । ଘେନି କରନ୍ତି ନମସ୍କାର ॥
କି ଅବା ଦେବ ଋଷିମାନେ । ବୃକ୍ଷହୋଇଲେ ବୃନ୍ଦାବନେ ॥
ପୂଜନ୍ତି ଶ୍ରୀକୃଷ୍ଣ ପଯ୍ୟର । ଶୋଭା ବହନ୍ତି ତରୁବର ।୪୯।
ଦେଖ ଗୋ ଗୋବର୍ଦ୍ଧନ ଗିରି । ପୂର୍ବେ ବହୁତ ତପ କରି ॥
ହୋଇଲା ଶ୍ରୀକୃଷ୍ଣ ସେବକ । ମହତ ମର୍ଯ୍ୟାଦା ବଢ଼େବେକ ॥
ଶ୍ରୀକୃଷ୍ଣ ପ୍ରୀତି ଅନୁସରି । ଗୋପ ଗୋବତ୍ସ ଆଦରି ॥
ସେବଇଂ କୃଷ୍ଣ ପାଦ ତଳେ । ଫଳ ପଲ୍ଲବ ତରୁ ମୂଳେ ॥

ନିର୍ଝର ସ୍ୱାଦୁ ଜଳ ପାନେ । ଗୋବତ୍ସ ବୃନ୍ଦ ତୃଣ ଦାନେ ॥
ସୁନ୍ଦର ପାଷାଣ ଆସନେ । କୃଷ୍ଣ ବସନ୍ତି ତୋଷ ମନେ ॥
ଛତ୍ରଙ୍କ ପ୍ରାୟେ ବୃକ୍ଷ ଗୁଳ୍ମ । ଆତପ ବାଧା ନିବାରଇ ॥
ଶୟନ କରନ୍ତି କନ୍ଦରେ । ଯେହ୍ନେ ମନ୍ଦିରଅଭ୍ୟନ୍ତରେ ॥
ଯେତେ ପର୍ବତ ମହୀତଳେ । ଇନ୍ଦ୍ର ତାହାଙ୍କୁ କୋପାନଳେ ॥
ବଜ୍ରେ କାଟିଲା ପକ୍ଷୀମାଳ । ସେ ହିନୁ ହୋଇଲେ ଅଚଳ ॥
ସେ କଥା ଜାଣି ଗୋବର୍ଦ୍ଧନ । ସ୍ତବେ ସେବିଲା ଜନାର୍ଦ୍ଦନ ॥
ସପତ ଦିନ ମଧ୍ୟ ହାଶ । ଅଭୟ ହସ୍ତ ପଦ୍ମେ ଧରି ॥
ଭଙ୍ଗ ପରାଏ ଗିରିବର । ବାଦେ ଜିଣିଲା ପୁରନ୍ଦର ॥
ଜଢରି ବଂଶ ଅଭିମାନ । କଥା ରଖିଲା ତ୍ରିଭୁବନ ॥
ସୁନାମ ଗୋବର୍ଦ୍ଧନ ବହି । ସୁନ୍ଦର ଦିଶେ ସର୍ବମହୀ ॥
ଦେଖ ସଙ୍ଗାତ ବୃନ୍ଦାବନେ । ପୁଲକ ବୃନ୍ଦ ବଂଶୀ ସ୍ୱନେ
ପ୍ରମତ୍ତ ହୋଇ କୃଷ୍ଣ ରସେ । ଭ୍ରମି ଆସନ୍ତି ବନ ଦେଶେ ॥
ନୟନୁ ବହେ ଅଶ୍ରୁଧାର । ପୁଲକ ଗଜ କଳେବର ॥
ଅବଶେ ବୃକ୍ଷ ତଳେ ରହି । ଆନନ୍ଦ କେ ପାରିବ କହି ॥
ଦେଖନ୍ତି ତୃଣ ଭୂମି ଦେଶେ । କୃଷ୍ଣ ଚରଣ ଗନ୍ଧବାସେ ॥
ସହଜେ ଶ୍ରୀକୃଷ୍ଣ ଚରଣ । କମଳା ହୃଦୟ ଭୂଷଣ ।୭୦।
କୁଚ କୁଙ୍କୁମ ଲଗିଥିଲା । ତୃଣ ଭୂମିରେ ସେ ରହିଲା ॥
ଶବରୀ ନାରୀ ତା ଆନନ୍ଦେ । ତୋଳି ଲଗାନ୍ତି ନିଜ ହୃଦେ ॥
ବଦନେ ଲଗାନ୍ତି ଥୋକାଏ । ହେଲେ ଜିଣିଲେ ସର୍ବଭୟେ ॥
ଅରଣ୍ୟ ଖଗ ମୃଗବୃନ୍ଦ । ଶୁଣିଲେ ମୁରଲୀ ଶବଦ ।୭୫।
ଆନନ୍ଦେ ଯୂଥ ଯୂଥ ହୋଇ । ଚିତ୍ର ପ୍ରତିମା ପ୍ରାୟେ ରହି ॥
ଧନ୍ୟସେ ବନ ଜୀବମାନେ । ସୁଜନେ ଯେହ୍ନେ କୃଷ୍ଣଧ୍ୟାନେ ॥
ଶ୍ରୀକୃଷ୍ଣ ମଧୁର ମୂରତି । ନୟନେ ଦେଖିତୋଷ ହୋନ୍ତି ॥

ସାମ ଗାୟନେ ମୁନୀଶ୍ବର । ଯେତେକ ଭକ୍ତ ବେଣୁଧର ।
ଭୃଙ୍ଗ କୋକିଳ ଧ୍ୱନିକରେ । ପଞ୍ଚମ ରସେ ମନ ହରେ ॥
ଉଗତ ବୃନ୍ଦ ଭାବମତେ । ନୃତ୍ୟ କରନ୍ତି ଶିଖିବ୍ରାତେ ॥
ହରିଣୀ ପୁଅ କୃଷ୍ଣ ଆଗେ । ମନ ଲୋଚନ ଯୁକ୍ତ ସଙ୍ଗେ ॥
ଆନନ୍ଦେ ରହିଲେ ନିଶ୍ଚଳେ । ଯୋଗୀ ଯେସନେ ଯୋଗବଳେ ॥
ଗୋଧନେ ଚରୁଥିଲେ ବନ । ଚକିତ ଶୁଣି ବଂଶୀ ସ୍ୱନ ।୮୩।
କବଳ ଥିଲି ମୁଖ ପୁଟେ । ତା ଗ୍ରାସ ନକଲେ ଉଚ୍ଛାଟେ ॥
ଶ୍ରବଣ ଟେକି ଊର୍ଦ୍ଧ୍ୱ ମୁଖେ । ଉଦ୍ଦାମ ପୁଚ୍ଛ ମହାସୁଖେ ॥
ଦେଖନ୍ତି ଶ୍ରୀକୃଷ୍ଣ ମୂରତି । ଗୋରୁ ଯେ ତୃଣ ନ ଚରନ୍ତି ॥
ବଦନେ ଧରି ମାତୃ ସ୍ତନ । ବତ୍ସା ନକରେ କ୍ଷୀରପାନ ॥
ଦେଖନ୍ତେ କାଳନ୍ଦୀ ଆନନ୍ଦ । ଅକାଳ ଜଳେ ଅରବିନ୍ଦ ॥
ଊର୍ମି ଭୁଜରେ ତାହା ତୋଳି । କୃଷ୍ଣଙ୍କୁ କରେ ନିଜାଞ୍ଜଳି ॥
ବୃନ୍ଦା କାନନ ଭୂମି ଦେଶେ । ପରମ ମଙ୍ଗଳ ପ୍ରକାଶେ ।୯୦।
ପୁଲକ କୂଳ ପ୍ରାୟେ ହୋଇ । ତୃଣ ବରୁଧ ଶୋଭାପାଇ ॥
ପାଷାଣ ଦ୍ରବ ହୋଏ ଜଳ । ପଲ୍ଲବେ ଶୁଷ୍କ ଦ୍ରୁମକୁଳ ॥
ଆକାଶେ ଅମର କାମିନୀ । ଅମର ବୃନ୍ଦ ସଙ୍ଗେ ଯେଣି ॥
ଶ୍ରବଣେ ଶୁଣି ବେଣୁଗୀତ । କାମେ ହୋଇଲେ ମୋହଗତ ॥
ଅଷ୍ଟାଙ୍ଗ ଯୋଗେ ଯୋଗୀଜନେ । ମନ ନିବେଶି ବ୍ରହ୍ମଗ୍ୟାନେ ॥
ବସି ଯେ ଥିଲେ ଦୃଢ଼ାସନେ । ମୁରଲୀ ଶୁଣିଲେ ଶ୍ରବଣେ ॥
ମୁଗ୍ଧ ହୋଇଲେ ରଣ ଭଣ । ଅନଙ୍ଗ ଭେଦିଲା ପଞ୍ଚଗଣ ॥
ସଚରାଚର ବଂଶୀ ରସେ । ଅଖଣ୍ଡ ପ୍ରେମ ରସେ ଭାସେ ।୯୮।
ଦେଖ ସଜଳ ମେଘମାଳ । ଉଦୟେ ଗଗନେ ମଣ୍ଡଳ ॥
ଶୀତଳ କାୟା ବିସ୍ତାରିଲ । ଆକାଶ ସୁନ୍ଦର ଦିଶିଲ ॥
ପ୍ରଚଣ୍ଡ କିରଣ ଆତପ । ନିବାରେ ପ୍ରାଣୀଙ୍କ ସନ୍ତାପ ॥

ଶୀତଳ ଜଳ ଧରଂମଧ୍ୟା । କୃଷ୍ଣ ସେବାର ପୁଣ୍ୟେ ରହି ॥
ଶୁଣି ମୁରଲୀ ସୁଧାରସ । ଆନନ୍ଦେ ଲୋକ ଚତୁର୍ଦ୍ଦଶ ॥
ଯେତେକ ଆରତେ ପ୍ରୀୟବାଣୀ । କହନ୍ତି ଗୋକୁଳ ରମଣୀ ॥
ଭାବନ୍ତ ଶ୍ରୀକୃଷ୍ଣ ଚରିତ । ମୁରଲୀ ସ୍ୱନେ ଦେଇଚିତ୍ତ ॥
ସେ ରସ ମାଧୁର୍ଯ୍ୟ ବିସ୍ତାର । ଶୁଣିଲେ ଦେବା ଗାକାମ୍ୟେସ୍ୱ ।୧୦୭।
ସୁଜନେ ଶୁଣ ମନତୋଷେ । ଶ୍ରୀକୃଷ୍ଣ ଚରଣେ ବିଶ୍ୱାସେ ॥
ବିଷୟ ଦୋଷ ଭୟଙ୍କରେ । ନବୁଡ ସଂସାର ସାଗରେ ॥
ବ୍ରାହ୍ମଣ ଜଗନ୍ନାଥ ବାଣୀ । ସଂସାର ସାଗର ତରଣୀ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ଶ୍ରୀକୃଷ୍ଣ ମୁରଲୀ ରସାସ୍ୱାଦନେ ନାମ ସପ୍ତଦଶୋଽଧ୍ୟାୟଃ ।

## ଅଷ୍ଟାଦଶ ଅଧ୍ୟାୟ

ଶ୍ରୀଈଶ୍ୱରୋବାଚ

ଉମା ଅଗ୍ରତେ ରୁଦ୍ର ଭଣି । ଶୁଣଗୋ ପ୍ରାଣ ସଙ୍ଗାଭୂଣୀ । ୧ ॥
ଗୋପ ଯୁବତୀ ଦିନ ଶେଷେ । ମନ ନଦେକଣି କୃଷ୍ଣରସେ ॥
ଯେତେକ ଆରତେ ଭାବମତେ । ଶ୍ରୀକୃଷ୍ଣ ପ୍ରେମ ଉତ୍କଣ୍ଠିତେ ॥
ରାଧା ବୋଲନ୍ତି ସଙ୍ଗାଭୂଣୀ । କୃଷ୍ଣ ଆସିବେ ଯେବେକ୍ଷଣି ॥
ପଡ଼ ଭାହାଳୀ ବେଣୁଧ୍ୱନି । ଶବଦେ ଆନନ୍ଦ ଅବନୀ ॥
ଗୋପ ଗୋବତ୍ସା ବୃନ୍ଦ ସଙ୍ଗେ । ଆସୁଥିବେ ବ୍ରଜମାର୍ଗେ ॥
ବରହୀ ପୁଚ୍ଛ ରଙ୍ଗ ଚୂଳ । ବନ କୁସୁମ ପରିମଳ ॥
ଅଳକାବୃତ ସ୍ମିତ ମୁଖ । କର୍ଣ୍ଣେ କୁଣ୍ଡଳ ବେନି ଦେଖ ।୮॥
କଦମ୍ବ କୁସୁମର ମାଳ । ଶୋଭା ଦିଶଇ ବକ୍ଷସ୍ଥଳ ॥
ପୀତ ବସନ ରୂପରାଶି । ତାଳ ବୃନ୍ଦାଂଇ ଅଳ୍ପ ହସି ॥
ନୟନେ ଦେଖି ନୟନରିବା । ଅଶେଷ ଦୁଃଖ ଉପେକ୍ଷିବା ॥
ଶୁଣି ବୋଲନ୍ତି ଭଦ୍ରାସଖୀ । ଇନ୍ଦୁକ ନୋହ ଚନ୍ଦ୍ର ମୁଖୀ ॥

ଗୋଧୂଳି ସମୟେ ସୁନ୍ଦର । ଗଗନେ ହଣେ ଧୂମଧାର ॥
କୀଟକ ରନ୍ଧ୍ରେ ମଧ୍ୟେ ପୂରି । ପ୍ରବଳ ପବନ ସଞ୍ଚରି ॥
ସେ ନୋହେ ମୁରଲୀ କୂଜନ । ଅରୁଣ ନୋହେ ଅସ୍ତଗତ ॥
କମ୍ପା ଚଞ୍ଚଳ କରୁ ମନ । ଅଗ୍ରତେ ଛନ୍ତି ଗୁରୁଜନ ॥
ଶୁଣି ବୋଲନ୍ତି ଚନ୍ଦ୍ରାବଳୀ । ତୁ ଯାହା କହିଲୁ ଗୁଆଳି ॥
ଯମୁନା ତଟ ଧୂତ କଥା । କର୍ଣ୍ଣେ ନ ଶୁଣିଲ ସର୍ବଥା ॥
ମୁଂ କମ୍ପା ପିବି ତାର ପାଶ । ଦେଖିଣ ନଟବର ବେଶ ॥
କଠିଣ ହୃଦୟ ମୋହର । ଜାଣନ୍ତି ଗୋପ ପୁର ନର ॥
ତୁ ମୋତେ କୃଷ୍ଣବାଦ ଦେଉ । ତା କଥା ମୋର ଆଗେ କହୁ ॥
ଶୁଣି ବୋଲଇ ଚନ୍ଦ୍ରମୁଖୀ । ଯାହା କହିଲୁ ପ୍ରାଣ ସଖୀ ॥
ଗୁପତ କରି କୃଷ୍ଣ ତୁଲେ । ପୀରତି ବଢ଼ାଇଲୁ ଭଲେ ॥
ତୋ ପ୍ରେମ ଭାବ ଅନୁମାନେ । ତାହା ଜାଣିଲେ ସଖୀ ଜନେ ॥
କୁସୁମ ଲତା ବୃତ ହୋଇ । ପଲ୍ଲବ ଗହନେ ଲୁଚଇ ॥
ଫୁଟଇ କେହି ନ ଦେଖଇ । ସୁଗନ୍ଧ ପ୍ରକଟି ବାସଇ ॥
ବୋଲନ୍ତି ପୁଷ୍ପ ଅଛି ଫୁଟି । ତା ଯେହ୍ନେ ଜାଣନ୍ତି ଷଟ୍ପଦି ॥
ତୋ ଅନୁରାଗ କୃଷ୍ଣ ପାଦେ । ଲୋକେ ଜାଣିଲେ ଅପ୍ରମାଦେ ॥
ଶ୍ରୀକୃଷ୍ଣ କଥା ପର ସଙ୍ଗେ । ପ୍ରେମ ପୁଲକ ତୋର ଅଙ୍ଗେ ॥
ଶୁଣି ବୋଲନ୍ତି ଚନ୍ଦ୍ରାନନା । ତୁ ଯାହା କହିଲୁ ସଜନୀ ॥
ଯେବେ ଶୁଭିଲ ଲୋକବାଦ । କୃଷ୍ଣ ମୋ ଜୀବନ ସମ୍ପଦ ।
କପାଳେ ଅର୍ଜି ଅଛି ଯାହା । ଅନ୍ୟଥା କେ କରିବ ତାହା ।୩୨॥
ପ୍ରେମ ଉଦ୍‌ଗମୋ ଶରୀରେ । ତୁ ବୋଲୁ ଶ୍ରୀକୃଷ୍ଣ ବିକାରେ ॥
ଶୀତଳ ବହଇ ସମୀର । ଶୀତେ କମ୍ପଇ କଳେବର ॥
ସେଥିକୁ କୃଷ୍ଣ ବାଦ ଦେଲୁ । ଅଘଟ ଘଟାଇ କହିଲୁ ॥
କଥା ହୋଅନ୍ତି ସଖୀ ବେନି । ମିଳିଲେ ବଞ୍ଚିତ ସଜନୀ ॥

ଦୁରୁହୁଂ ଦେଖିଲେ ରାଧିକା । ଆସଇ ବକୁଳ ମାଳିକା ॥
ସାବଣୀ ସତ୍ୟାବଶ୍ୟ ନନ୍ଦ । ଦୁତୀ ସେବତୀ ବୃନ୍ଦାକୁନ୍ଦା ॥
ସୁମେଧା ଶ୍ରଦ୍ଧା ଶାନ୍ତ ମତ୍ତ । ଅନେକ ଗୋକୁଳ ଯୁବତୀ ॥
ମିଳିଲେ ରାଧାଭଦ୍ରା ପାଶେ । ଯେସନେ ତାରକା ଆକାଶେ୪୦॥
ପୂର୍ଣ୍ଣ ଚନ୍ଦ୍ରକୁ ବେଢ଼ି ଶୋଭା । ନିର୍ମଳ ରାଧା ଅଙ୍ଗ ପ୍ରଭା ॥
ଲଳିତା ରାଧା ମୁଖ ବିମ୍ବ । ହସି ବୋଲଇ ପ୍ରାଣ ସହ୍ୟା ॥
ତନୁ ଲାବଣ୍ୟ ମାଧୁରିମା । ସହଜେ ଦିଶଇ ପାଣ୍ଡିମା ।
ଧୂସର ବର୍ଣ୍ଣ ଗଣ୍ଡସ୍ଥଳ । ଶ୍ୱାସ ପବନ ସମୀ କୂଳ ॥
ଭାବେ ଜାଣିଲା ପ୍ରିୟସଖୀ । ନନ୍ଦ ନନ୍ଦନ ତନୁ ଦେଖି ॥
ଚଞ୍ଚଳ କରୁ ସ୍ଥିର ମତି । ଅଙ୍ଗେ ଭେଦିଲା ରତିପତି ॥
ରାଧିକା ସଙ୍କୁଚିତ ହୋଇ । ପ୍ରୀତି ବଚନ ପଚାରଇ ॥
କେସଖୀ କୃଷ୍ଣ ମୁଖ ଚନ୍ଦ୍ରେ । ପବନ ପୂରି ବଂଶୀ ରନ୍ଧ୍ରେ ॥
କରଇ ମଧୁର ଶବଦ । ଅଖିଳ ହୁଅଇ ଆନନ୍ଦ ।୪୯।
କେବଳ ନିତମ୍ବିନୀ ଗଣ । କୋପେ ଦଇବ ପଞ୍ଚବାଣ ॥
ଶ୍ରୀକୃଷ୍ଣ ଭାବେ ରାଧା ମନ । ଆନନ୍ଦ ରସେ ଅଚେତନ ।
ନବ ମାଳିକା ନାମେ ସଖୀ । କୌତୁକ ମନେ ଚନ୍ଦ୍ରମୁଖୀ ॥
ପଚ୍ଛେ ପଚ୍ଛିଲା ଭାବ ମତେ । ରାଧାନୟନ ବେନି ହସ୍ତେ ॥
ବୁଜିଲା ପ୍ରେମ ରସଭରେ । ରାଧିକା ଶ୍ରୀକୃଷ୍ଣ ବିକାରେ ॥
ସମ୍ଭ୍ରମେ କହେ ପ୍ରେମ ବାଣୀ । ହେ ନନ୍ଦ ସୁତ ବେନୁପାଣି ॥
କିମ୍ପା ବୁଜିଲ ମୋ ନୟନ । ରତି ଲମ୍ପଟ ଭ୍ରମୁ ମନ ॥
ତୋ ପାଦ ପଦ୍ମ ସେବା ଅର୍ଥେ । ଭ୍ରମନ୍ତି କରି ରଖ ମୋତେ ॥
ରାଧା ବଚନେ ସହଚରୀ । କର କମଳେ ଓଷ୍ଠ ଧରି ।୫୯।
ହସି ବୋଲଇ ପ୍ରାଣମିତ । ଧନ୍ୟ ଭ୍ରମର ପତି ବ୍ରତ ॥
ସଲଜ ଚିତ୍ତେ ରାଧା କହେ । ସଂଭ୍ରମ ଜାତ ମୋର ଦେହେ ॥

କହିଲା ବାଉଳ ବଚନ । ତୁମ୍ଭେ ତ ଜାଣ ଆମ୍ଭ ମନ ॥
ହସି ବୋଲଇ ସହଚରୀ । ହେ କୃଷ୍ଣଚନ୍ଦ୍ର ପ୍ରାଣେଶ୍ୱରୀ ॥
କମ୍ପ ସଂଭ୍ରମ କଥା କହ । ତୁମ୍ଭେ ଶ୍ରୀକୃଷ୍ଣ ଭିନ୍ନ ନୋହ ॥
ଶୁଣି ବୋଲଇ ଘନୁବାଳୀ । ନନ୍ଦନନ୍ଦନ ବନମାଳୀ ॥
କୋଟି ମଦନ ସ୍ୱରୁ ବେଶ । ବରହା ପୁଚ୍ଛ ଶୋଭେ କେଶ ॥
ଶ୍ରବଣେ ମକର କୁଣ୍ଡଳ । କଣ୍ଠେ ଲମ୍ବଇ ରତ୍ନମାଳ ।୭୭।
ପୀତ ବସନ କଟି ଦେଶେ । ଘଟନ ତଡ଼ିତ ପ୍ରଭା କି ସେ ॥
ପୟରେ କନକ ନୂପୁର । ଦିଶଇ ପରମ ସୁନ୍ଦର ॥
ଜୀବନୁ କୋଟି ଗୁଣେ ମୋର । ପୀରତି ଯଶୋଦା କୁମର ॥
ନବ ମାଳକା ବୋଲେ ହସି । ଯାହା କହିଲୁ ଶୁଭ୍ରକେଶୀ ॥
ସବୁର ପ୍ରୀତି ଦେବସ୍ୱୟେ । କେହି ନୋହନ୍ତି ତୋର ପ୍ରାୟେ ॥
ନର୍ମଳ କୁଳ ସାଧୁ ନାରୀ । ବଚନେ ନୋହନ୍ତି ଫ୍ରକାରୀ ॥
ତୁମ୍ଭେ ସେ କହ୍ଲ ପାର ସୈକା । ବହୁତ ଅଛନ୍ତି ନାୟିକା ॥
ସବୁର କୃଷ୍ଣ ପ୍ରାଣପତି । ବଚନେ କେହି ନ କହନ୍ତି ॥
ସଲଜ ଚିତ୍ତେ ରାଧାରହେ । ଉଚିତ ପ୍ରେମ କଳା କହେ ॥
ଶୁଣ ଗୋ ସଖୀ ନବମାଳା । ତୁମ୍ଭ ପ୍ରସ୍ୱୟେ ଅନର୍ଗଳା ॥
ଦେଖିଲୁ ନାହିଂ ଆନ ଜଣେ । କେତେ କହିବ ବଡ଼ପଣେ ॥
କୃଷ୍ଣ ମୁରଲୀ ଗୀତ ଧ୍ୱନି । ଶ୍ରବଣେ ଗୁଣ ପୁରଞ୍ଜନ ॥
ଆନନ୍ଦେ ହୋଅନ୍ତି ଅଚେତ । କାମ ସଂଭ୍ରମେ ମୋହଗତ ।୭୮।
ଯୁବତୀ ମାତ୍ର କେତେ ଧୀର । ଶୁଣିଲେ ନୋହିବେ କାତର ॥
ଗୁରୁ ଗୌରବ ଧର୍ମ ମତ । କୁଳ ବେଭାର ଭବମୀତ ॥
ରକ୍ଷା କରନ୍ତା କେହି ନାହିଂ । ସଂସାର ମଧ୍ୟେ ଦେହ ବହି ॥
କାଷ୍ଠ ପାଷାଣେ ଦବିହୋନ୍ତି । ଯୋଗୀନ୍ଦ୍ର ଜନେ ମୋହଯାନ୍ତି ॥
ତୁ କ ସଂସାର ମଧ୍ୟେ ନାହିଂ । କୃଷ୍ଣ ବିଷୟେ ଭବ ବହି ॥

ନବ ମାଳକା ପ୍ରେମ କଳା । ବାଦ ବଚନେ ଭାନୁ ବାଳା ॥
ବୋଲନ୍ତି ଉତ୍କଣ୍ଠ ବଚନ । ଶୁଣ ସଜନୀ ଗୋପୀଜନ ॥
ସଂକୋଚ କଲି ମୁହିଂ ଦୂର । କୃଷ୍ଣ ମୋ ଜୀବନ ଠାକୁର ।୮୭।
ନିନ୍ଦା କରନ୍ତୁ ପ୍ରିୟଜନ । ବୋଲନ୍ତୁ ଭଞ୍ଜନା ବଚନ ॥
ଯେବେ ଗଞ୍ଜିବେ ଗୁରୁଜନେ । କିଅବା ତେଜିବେ ଅଗ୍ୟାଂନେ ॥
ତାହାଂକ ନାହିଂ ମୋ ବିଚାର । ପ୍ରାଣ ପୁରୁଷ ବେଣୁଧର ॥
ଦୁର୍ବାଦ ଶୁଭିବ ଜଗତେ । ରାଧା ଜୀବନ ନନ୍ଦ ସୁତେ ॥
ବଂଶରେ ଲାଗିବ କଳଙ୍କ । ତଥାପି ହୃଦୟ ନିଶଙ୍କ ॥
ମୋ ମନ ରହୁ କୃଷ୍ଣ ପାଦେ । କି କାର୍ଯ୍ୟ ଅଛି ଲୋକବାଦେ ॥
ସତେତେହେଂ ନନ୍ଦ ସୁତ ହରି । ସେ ମୋତେ ଥିବେ ଦୟାକରି ॥
ଶ୍ରୀ ପାଦପଦ୍ମେ ହେବି ଦାସୀ । ସେବା କରିବି ଦିବା ନିଶି ॥
ନାହିଂ ମୋ ଘରବରେ ଆଶ । ଏ ଦେହ କରିବି ବିନାଶ ।୯୭।
ଧ୍ୟାନେ ତା ପାଦ ପଦ୍ମ ଚିନ୍ତି । ଲଭିବି ନନ୍ଦ ସୁତ ପତି ॥
ଏ ମୋର ସତ୍ୟବ୍ରତ ବାଣୀ । ତୁମ୍ଭେ ସମସ୍ତେ ଥାଅ ଜାଣି ॥
ରାଧା ବଚନେ ଗୋପୀବୃନ୍ଦ । ହୋଇଲେ ପରମ ଅନନ୍ଦ ॥
ବୋଲନ୍ତି ଶୁଣ ଠାକୁରାଣୀ । ଯାହା କହିଲ ସତ୍ୟବାଣୀ ॥
ଏ କଥା ତୁମ୍ଭର ପ୍ରମାଣ । ଆମ୍ଭେ ସକଳ ଗୋପୀଗଣ ॥
ତୁମ୍ଭ ଚରଣେ ଦାସୀ ପଣେ । ସେବା କରିବୁ ଅନୁକ୍ଷଣେ ॥
ଏ ସତ୍ୟ ବଚନ ଆମ୍ଭର । ମନେ କରିଛୁ କୃଷ୍ଣବର ॥
ବିବୁଧ ବୃନ୍ଦ ଚୂଡ଼ାମଣି । ଆମ୍ଭ ହୃଦୟ କଥା ଜାଣି ।୧୦୪।
ଯେମନ୍ତେ କରେ ଅନୁଗ୍ରହ । ଉପାୟେ ଜାଣି ଥିଲେ କହ ॥
ଗୋପୀଜନଙ୍କ ପ୍ରେମ ବାଣୀ । ଆନନ୍ଦେ ଭାନୁସୁତା ଶୁଣି ॥
ବୋଲନ୍ତି ମଧୁର ବଚନ । ଛତିଶ କର୍ମା ଭଗବାନ ॥
ପଦ୍ମଚରଣ ମନେ ଧରି । ନିର୍ମଳ ଭାବେ ସେବା କରି ॥

ଅବଶ୍ୟ ଲଭିବ ତା ପ୍ରେମ । ମୋ ସର୍ବ ଭୂତେ ଆତ୍ମାରାମ ॥
ଦୟା ସାଗର ବେନୁପାଣି । ଆମ୍ଭ ଆକୁଳ ମନଜାଣି ॥
ଦୟା କରିବ ଆମ୍ଭ ସଙ୍ଗେ । କ୍ରୀଡ଼ା କରିବେ ନାନା ରଙ୍ଗେ ॥
ରାଧା ବଚନେ ଗୋପବାଳୀ । ନାରଦ ବାକ୍ୟ ମନେ ଭାଳି ॥
ପୂର୍ବ ବାସନା ମସ୍ତ ଚିତ୍ତେ । ଶ୍ରୀକୃଷ୍ଣ ପ୍ରେମ ଉତ୍କଣ୍ଠିତେ ॥
ଚିତ୍ତେ ଚିନ୍ତନ୍ତି ବେଣୁଧର । ଆନନ୍ଦ କେ କରୁ ଗୋଚର ॥
ସେମନ୍ତେ ରବି ଅସ୍ତକାଳେ । ଗୋପ ଗୋବତ୍ସା ସଙ୍ଗ ମେଳେ ॥
ବୃନ୍ଦା କାନନୁ ଦେବ ରାସେ । ଗୋପ ନଗରକୁ ବିଜୟେ ॥
ପଞ୍ଚ କାହାଳୀ ବେଣୁ ଗୀତ । ଶବଦେ ଆନନ୍ଦ ଜଗତ ॥
ବିଗ ଦିଶଇ ପରିମଳ । ସୁଗନ୍ଧ ବହଇ ଅନଳ ॥
ଗୋପୀ ଧାଇଂଲେସେକେସେ । ଶ୍ରୀକୃଷ୍ଣ ଦର୍ଶନ ଇଚ୍ଛେ ।୧୧।
ଦେଖନ୍ତି ମଧୁର ମୂରତି । ନବ ଜଳଦ ଶ୍ୟାମ କାନ୍ତି ॥
ବୋଲନ୍ତି ଶୁଣ ଗୋ ସିଙ୍ଗଣୀ । ଦେଖ ଗୋକୁଳ ଚନ୍ଦ୍ରମଣି ॥
ଚରଣେ ନୂପୁର ବିରାଜେ । ପୀତ ବସନ କଟି ମାଝେ ॥
ହୃଦପ୍ସ କୁଙ୍କୁମେ ପଙ୍କିଳ । ମୋହନ ବଂଶୀ କରତଳ ॥
କଣ୍ଠେ ଲମ୍ବଇ ରତ୍ନହାର । କର୍ଣ୍ଣେ ଭୂଷଣେ କର୍ଣ୍ଣିକାର ॥
ଶିରେ କୁସୁମ ଚୂଳ ଶୋଭେ । ଅଶେଷ ଜନ ମନ ମୋହେ ॥
କୋଟି ମଦନ ରୂପ ରାଶି । ତାଳ ବ୍ରହ୍ମାଣ୍ଡ ଅଳ୍ପ ହସି ॥
ଲାବଣ୍ୟ ସୁନ୍ଦର ଶ୍ରୀମୁଖ । ଦେଖି ଉପେକ୍ଷ ସର୍ବ ଦୁଃଖ ॥
ବଙ୍କିମ ଅପାଙ୍ଗ ଚାଳିବା । କରୁଣା ନୟନେ ଗୃହିବା ॥
ଅମୀୟ ଅଧରେ ହସିବା । ସଧିରେ ସଧିରେ ଗୃଳିବା ।୧୨।
ଦେଖି ନୟନରେ ସର୍ବଜନେ । ଯୋଗୀ ଚିନ୍ତନ୍ତି ଯାକୁ ଧ୍ୟାନେ ॥
ସେ ବ୍ରହ୍ମ ରୂପବନ୍ତ ହୋଇ । କାନନେ ବାଳୁଷି ଚରାଇ ॥
ସେହାଙ୍କୁ ମୂର୍ଚ୍ଛିବା କେମନ୍ତେ । ନୟନେ ଦେଖି ବାହ୍ୟଗତେ ॥

ଗୋପୀଜନଙ୍କ ମନ ଜାଣି । କରୁଣା ସିନ୍ଧୁ ବେଣୁ ପାଣି ॥
ତାଳ ବୃନ୍ଦାବନ ଅଳ୍ପ ହସି । ମଦନ ତରଙ୍ଗ ପ୍ରକାଶି ॥
ଗୋପୀଙ୍କି ଦେଲେ ସର୍ବ ସୁଖ । ନନ୍ଦ ମନ୍ଦିରେ ପଦ୍ମମୁଖ ।୧୩୬।
ପ୍ରବେଶ ହୋଇଲେ ନିଶାରେ । ଗୋପୀଏ ଗଲେ ଯେ ଯାହାରେ॥
ଲାବଣ୍ୟ ଧାମ ରସକାନ୍ତ । ମନେ ଚିନ୍ତନ୍ତି କୃଷ୍ଣ ମୂର୍ତ୍ତି ॥
ଅଙ୍ଗେ କୁଙ୍କୁମ ବିଲେପନେ । ବାଳକ ତନୟ ରୋଦନେ ॥
ଦୋଳା ଦୋଳଣ ଆବେଦନ । ଉଦକ କୁମ୍ଭ ସଂଗ୍ରହଣେ ॥
ହରିଦ୍ରା ଚୂର୍ଣ୍ଣ ସଂପ୍ରେଷଣେ । ମାର୍ଜନା ଗୃହ ହାଣ୍ଡିଙ୍ଗଣେ ॥
ନୟନେ ଅଞ୍ଜନ ରଞ୍ଜନେ । ଦେବତା ପିତୃ ଆରାଧନେ ॥
ଗୃହେ କାରନ୍ତି ସମାଧାନେ । ଦଧି ମନ୍ଥନେ ଗୋଦୁହନେ ॥
ମଙ୍ଗଳ ଉଚ୍ଛବ ବିଧାନେ । ଅନ୍ନ ବେଞ୍ଜନାଦି ପାଚନେ ॥
ହରଷେ କୃଷ୍ଣ ଗୀତ ଗାନ୍ତି । ଆନନ୍ଦେ ଅଶ୍ରୁ ବରଷନ୍ତି ।୧୪୦।
ଅଙ୍ଗ ପୁଲକ ସମାକୁଳେ । ଉତ୍କଣ୍ଠ ବଚନ ବିହ୍ୱଳେ ॥
ଭାବନ୍ତି ଦେବ ବେଣୁପାଣି । ଧନ୍ୟ ସେ ବ୍ରଜ ରମଣୀ ॥
ସ୍ୱପ୍ନେ ଦେଖନ୍ତି ନରହରି । ଜାଗ୍ରତେ ନାମ ମୁଖେ ଧରି ॥
ସ୍ନେହ ଆରବେ ଭାବମତେ । କୃଷ୍ଣ ଭାବନ୍ତି ଅନୁବ୍ରତେ ॥
ସେ ଗୋପୀଜନଙ୍କ ବିସ୍ତର । ଅଖଣ୍ଡ ପ୍ରେମ ସୁଧା ଧାର ॥
ସେ ମହାରସ ପାନକରି । ସୁଜନେ ତର ଭବ ବାରି ॥
ଗୋପୀଜନଙ୍କ ଭାବ ପଥ । କହଇ ଦାସ ଜଗନ୍ନାଥ ॥

ଇତି ଶ୍ରୀ ପରମ ରହସ୍ୟେ ଶୈବାଗମେ ଗୋପୀକାନଃ ସ୍ତୁତିଃ-
ବର୍ଣ୍ଣନେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

## ଊନବିଂଶ ଅଧ୍ୟାୟ

ସୁଜନେ ଶୁଣ ରସବାଣୀ । ଶିବ ବଚନ ଶିବାଣୁଣି ॥
ରୁଦ୍ର ଚରଣ ତଳେ ପଡ଼ି । ବୋଲନ୍ତି ଶିରେ କର ଯୋଡ଼ି ॥

ପାର୍ବତୀ ଉବାଚ

ହେ ପ୍ରାଣ ନାଥ ଭଗବାନ | ଗୋପୀଜନଙ୍କ ପ୍ରେମରସ ||
ଶ୍ରବଣ ମଙ୍ଗଳ ଉତ୍ସବ | ବିଶେଷେ ସମସ୍ତ କହିବ ||
ଶ୍ରୀକୃଷ୍ଣ ଚିନ୍ତା କରି ମନେ | ପୂଣିକ କଲେ ଗୋପୀଜନେ |୫|

ଈଶ୍ୱରୋବାଚ

ହସି ବୋଲନ୍ତି ଦେବ ଶୂଳୀ | ଶୁଣେ ସକଳ ଗୋପବାଳୀ ||
ହେମନ୍ତ ମାସ ପ୍ରବେଶରେ | ମନ ନିର୍ମଳ ସଦାସ୍ଥରେ ||
ହସ୍ତରେ ଘେନି ଉପାସୂନ | ଗମନ କଲେ ବୃନ୍ଦାବନ ||
ମିଳିଲେ କାଳିନ୍ଦୀ କୂଳରେ | ଗୋପ କାମିନୀର ସଙ୍ଗରେ |୧୬|
ପବିତ୍ର ଜଳେ ସ୍ନାନ କରି | ସୂକ୍ଷ୍ମ ବସନ ପରିଧରି ||
ତିଳକ ଘେନିଲେ କପାଳେ | ନମିଲେ ଧର୍ମ ପାଦତଳେ ||
ସମସ୍ତେ ହୋଇ ଶୁଚିବନ୍ତ | ହସ୍ତରେ ଘେନି ଜଳ ପାତ୍ର ||
ଯମୁନା ତଟେ ସର୍ବନାରୀ | ବାଲୁକା ସ୍ଥାପି ପୂଜାକରି ||
ବିବିଧ ତରୁବର ମାନ | ମଧୁର ପ୍ରାପ୍ତେ ଶୋଭାବନ ||
ତଳେ ନିର୍ମଳ ବାଳିକୁଦ | ଭ୍ରମରେ କରନ୍ତି ଶବଦ ||
ଗୋପ କାମିନୀ କୁତୁହଳେ | ଶିବ ମଣ୍ଡଳ ବୃକ୍ଷମୂଳେ ||
ଲେଖିଲେ ମହାରୁଦ୍ର ମୂର୍ତ୍ତି | ସଙ୍ଗତେ ଅଛନ୍ତି ପାର୍ବତୀ |୧୭|
ନନ୍ଦୀ ଭୃକୁଟୀ ବିଘ୍ନରାଜ | ତ୍ରିଶୂଳ ପିନାକୀ ନାଗଜ ||
ବୃଷଭ ଆଦି ରୁଦ୍ରଗଣେ | ଯେ ଯାହା ବାହାନ ଭୂଷଣେ ||
ମଣ୍ଡଳ ମଧ୍ୟରେ ସ୍ଥାପିଲେ | ମନ ଚଞ୍ଚଳ ସ୍ଥିରକଲେ ||
ମଣ୍ଡିଲେ ବନ ଭୂମିଦେଶ | କୁସୁମ ଦାମ ବୃତପାଶ ||
ଉପରେ ବାନ୍ଧିଲେ ବିତାନ | କାଢିଲେ ଉପହାର ମାନ ||
ଷର ଲବଣୀ ଦଧି ଘୃତ | ମଧୁ ପାୟସ ଅପ୍ରମିତ ||
ଗୋଟିକା ଅଧାମ ନିମୂଣ୍ଡି | ଖଣ୍ଡ ସାକର ରମ୍ଭାଗେଣ୍ଡି ||

ବିବିଧ ବର୍ଣ୍ଣେ ଫୁଲ ଫଳ । ବହୁତ ଅଛି କନ୍ଦମୂଳ ।୨୫।
ସୁଗନ୍ଧ କର୍ପୂର ତାମ୍ବୁଳ । ତଣ୍ଡୁଳ ମୁଗ ନାରିକେଳ ॥
ଜାଳିଲେ ଘୃତ ଦୀପାବଳି । ପୂଜନ୍ତି ଶଶାଙ୍କ ମଉଳୀ ॥
ଆସନ ଆବାହନ ଦେଇ । ଅର୍ଘ୍ୟ ଉଦକ ଢାଳେ ଥୋଇ ॥
ରୁଦ୍ର ପ୍ରତିମା କଳେବରେ । ଚନ୍ଦନ ଲେପନ୍ତି ଭାଲରେ ॥
ଧୁସ୍ତୁର ଗଇଣ୍ଠ ବକୁଳ । ଚମ୍ପା କୁସୁମ ନାରିକେଳ ॥
ସବେ ଘେନନ୍ତି ବେନି କରେ । ଦିଅନ୍ତି ଶଙ୍କର ଉପରେ ॥
ବିଶୁଦ୍ଧ ପାତ୍ରେ ଧୂପ ଦୀପ । ଫଳାଳି ଶଙ୍କର ସମୀପ ॥
କର୍ପୂର ଗୁରୁ ରସ ରସେ । ବାସ ପ୍ରକଟ ଦଶ ଦିଶେ ।୩୩।
ବିବିଧ ଉପହାର ମାନ । ରୁଦ୍ରଙ୍କୁ କଲେ ନିବେଦନ ॥
ଈଶାନ ଭଇରବ ମନ୍ତ୍ରେ । ପୂଜନ୍ତି ଶିବ ଶକ୍ତି ଯନ୍ତ୍ରେ ॥
ପାର୍ବତୀ ସଙ୍ଗତେ ଶଙ୍କର । ନନ୍ଦୀ ଭୃକୁଟୀ ଲମ୍ବୋଦର ॥
କୁମାର ବୃଷଭ ସହିତେ । ରୁଦ୍ରଙ୍କଙ୍କର ଗଣ ଯେତେ ॥
ପୂଜିଲେ ଯଥାବିଧି ମତେ । ଉଚିତ ଦ୍ରବ୍ୟ ମନ୍ତ୍ର ଯନ୍ତ୍ରେ ॥
ଆଳତି ଘେନି ବନ୍ଦାପନା । ରୁଦ୍ରଙ୍କୁ କଲେ ଗୋପାଙ୍ଗନା ॥
ହରଷେ କଲେ ନମସ୍କାର । ମାଗନ୍ତି ନନ୍ଦସୁତ ବର ॥
ହେ ଦେବ ରୁଦ୍ର କୃପାକର । ଦେବାଧିଦେବ ମହେଶ୍ୱର ।୪୧।
ହେ ମାତ ଦେବୀ କାତ୍ୟାୟନୀ । ପରମ ସିଦ୍ଧି ମହାଯୋଗିନୀ ॥
ତୋ ପାଦେ କରୁଛୁ ଭଗତି । ନନ୍ଦନନ୍ଦନ ଦିଅ ପତି ॥
ନମୋ କାତ୍ୟାୟନୀ ଯୋଗେଶ୍ୱରୀ । ନମସ୍ତେ ନାଗ ଭୂଷଣଧାରୀ ॥
ନମସ୍ତେ ଦେବୀ ମହାମାୟେ । ନମସ୍ତେ ତ୍ରିଲୋଚନ ପ୍ରିୟେ ॥
ନମସ୍ତେ ଦେବୀ ନାରାୟଣୀ । ଘୋର ସଙ୍କଟ ନିବାରିଣୀ ॥
ଜୟ ମଦନ ପ୍ରାଣ ହର । ଜୟ ତ୍ରିଗୁଣ ପରାପର ॥
ନମସ୍ତେ ସୂକ୍ଷ୍ମ ରୂପଧାରୀ । ନମସ୍ତେ ଶଙ୍କର ଗଉରୀ ॥

ନମସ୍ତେ ଦେବ ବିଶ୍ୱନାଥ । ବନ୍ଦିଲୁ ବିଷ୍ଣୁ ପାଦ ମାଥ ।୪୯।
ତୁ ଦେବ ହରିହର ମୂର୍ତ୍ତି । କୃପାସାଗର ଭୂତପତି ॥
ହେଦେବ ଅନୁଗ୍ରହ କର । ନନ୍ଦନନ୍ଦନ ହୁଅ ବର ॥
ଏମନ୍ତ ବୋଲି ଗୋପବାଳୀ । ନମନ୍ତି ଶିରେ କର ତୋଳି ॥
ସକଳେ ହୋଇଲେ ନିୟମି । ବ୍ରତ ଆଚରି ମନଦମି ॥
କରନ୍ତି ଜୟ ଜୟ ନାଦ । ଗଗନେ ପୂରିଲା ଶବଦ ॥
ଆନନ୍ଦେ ଦ୍ୟନ୍ତି ହୁଳହୁଳି । ସମସ୍ତେ ହୋଇ ଏକମେଳି ॥
ଲେଉଟି ଆସନ୍ତି ସଦନ । ହରଷ କରନ୍ତି ଭୋଜନ ।୫୦।
ମନ୍ଦିରେ ଥାନ୍ତି ଗୁରୁଜନେ । କନ୍ୟାକୁ ଦେଖିଲେ ନୟନେ ।
ଆମ୍ଭାରୁ ଅଧିକ ପାଳନ୍ତି । ଈଶ୍ୱର ସମାନେ ଦେଖନ୍ତି ॥
ଇଚ୍ଛ ବିହାରି ଗୋପବାଳୀ । ଚିନ୍ତା କରନ୍ତି ବନମାଳି ॥
ମନ୍ଦିରେ ହୋଅନ୍ତି ପ୍ରବେଶ । ଧ୍ୟାନ କରନ୍ତି ହୃଷୀକେଶ ॥
ଜାଗ୍ରତେ ରଜନୀ ପୁହାଇ । ସକଳେ ଏକ ରୁଣ୍ଡ ହୋଇ ॥
ପ୍ରଭାତେ ଗମନ୍ତି କାନନେ । ପ୍ରବେଶ ହୁଅନ୍ତି ପୁଳିନେ ॥
ଯମୁନା ଜଳେ ସ୍ନାନ କରି । ଉମାଶଙ୍କର ପୂଜା କରି ।
ମନ୍ଦିରେ ହୁଅନ୍ତି ପ୍ରବେଶ । ଧ୍ୟାନକରନ୍ତି ପୀତବାସ ।୬୪।
ଯଥା ବିଧାନେ ପ୍ରତିଦିନେ । ଶଙ୍କର ପୂଜନ୍ତି ପୁଳିନେ ॥
ଦିନକୁ ଦିନ ଗୋପସୁତ । କୃଷ୍ଣ କରନ୍ତି ମନେ ଚିନ୍ତା ॥
ସେବନ୍ତି ତ୍ରିପୁର ଦହନ । ନିର୍ମଳ ଚିତ୍ତେ ଗୋପୀଜନ ॥
ଏମନ୍ତେ ମାସେ ପର୍ଯ୍ୟନ୍ତେ । ମନ ସଂଯମି ନିତବ୍ରତେ ॥
ହେମନ୍ତ ମାସ ପୂର୍ଣ୍ଣଦିନେ । ସକଳେ ମିଳିଲେ ପୁଳିନେ ॥
କାଳନ୍ଦୀ ଜଳେ କଲେ ସ୍ନାନ । ପୂଜିଲେ ମଦନ ଦହନ ॥
ତାହାଙ୍କ ଭକ୍ତେ ହୋଇ ତୋଷ । ଉମାବଲ୍ଲଭ ବ୍ୟୋମକେଶ ॥
ଶିବା ସହିତେ ସଦାଶିବ । ବୃଷ ବାହାନେ ଆବିର୍ଭାବ ।୭୨।

ଗୋପକାମେନୀ ରୁଦ୍ରଦେଖି । ଉଠିଲେ ଆସନ ଉପେକ୍ଷି ॥
ପ୍ରଣାମ କଲେ ପାଦତଳେ । ଜୟ ଶବଦ କୋଳାହଳେ ॥
ବୋଲନ୍ତି ଗୋକୁଳ ରମଣୀ । ଜୟତୁ ଜୟ ଶୂଳପାଣି ॥
ଜୟ ତ୍ରିପୁର ଅନ୍ତକାଳ । ଜୟତୁ ନାଗ ଭସ୍ମଧାରୀ ॥
ଜୟତୁ ଜୟ ଦିଗାମ୍ବର । ଭସ୍ମ ଭୂଷିତ କଳେବର ॥
ଜୟ ଅଭୟ ବରପ୍ରଦ । ଜୟ ମଦନ ଦର୍ପଭେଦ ॥
କାଳ ଅକାଳ ନିରାକାର । ମହା ପ୍ରଳୟ ରୂପଧର ॥
ଶ୍ରୀଦେବ ଦେବ ବିରୂପାକ୍ଷ । ବୃଷଭ ବାହାନେ ପ୍ରତ୍ୟକ୍ଷ ॥
ଯେବେ ମିଳିଲ ଆମ୍ଭ ଆଗେ । ହେମନ୍ତ ସୁତା ଘେନି ସଙ୍ଗେ ।୮୧।
କରୁଣା କର ତ୍ରିଲୋଚନ । ନନ୍ଦ ନନ୍ଦନ ବରଦାନ ॥
ସନ୍ତୋଷ ମନେ ଆରାଧ୍ୟଂଦେବା । ଯେବେ ଘେନିଲ ଆମ୍ଭ ସେବା ॥

ଈଶ୍ୱର ଉବାଚ

ଆନନ୍ଦେ ଈଶ୍ୱର ବୋଲନ୍ତି । କୃଷ୍ଣ ହୁଅନ୍ତୁ ତୁମ୍ଭ ପତି ॥
ସେବେ କରନ୍ତୁ ଅନୁଗ୍ରହ । ତା ଅର୍ଥେ ହେଉ ତୁମ୍ଭ ଦେହ ॥

ଗୋପ୍ୟୁବାଚ

ଶୁଣି ବୋଲନ୍ତି ଗୋପୀଜନ । ଦେବାଧି ଦେବ ତ୍ରିଲୋଚନ ॥
ପାଇବୁ ନନ୍ଦ ସୁତ ବର । ସେ କଥା ପ୍ରମାଣ ଆମ୍ଭର ।୮୨।
ଅପବାଦ ଦେବେ ସର୍ବଜନେ । କୁଳ ଉଚିତ ଧର୍ମ ହାନେ ॥
ବଂଶକୁ ହୋଇବ ଦୂଷିତ । ପରଲୋକରେ ଭୟଜାତ ॥
ବେଦ ବିହିତ କର୍ମ ତେଜି । କୃଷ୍ଣକୁ ଜାରଭାବେ ଭଜି ॥
ସେ ବବୁ ତା ପଦ୍ମ ଚରଣେ । ଉପାୟ କହ ନିସ୍ତାରଣେ ॥

ଶ୍ରୀଈଶ୍ୱର ଉବାଚ

ଶୁଣି ବୋଲନ୍ତି ସଦାଶିବ । ଶ୍ରୀକୃଷ୍ଣ ତୁମ୍ଭ ଜାରଭାବ ॥
ସଂସାରେ ଶୁଣି ସର୍ବଜନେ । ହରଷେ କହିବେ ବଚନେ ॥

ହେଲେ ତରିବେ ଭବବାରି । ଅନ୍ତେ ଲଭିବେ ବଷ୍ଣୁପୁରୀ ।୯୫।
ତୁମ୍ଭେ ଯେ ବୋଲ ଜାରମତେ । କୃଷ୍ଣଙ୍କୁ ଭଜିବୁ କେମନ୍ତେ ।
ପରମ ପୁରୁଷ ଈଶ୍ୱର । ନନ୍ଦ ମନ୍ଦିରେ ଅବତାର ॥
ଏ ବାଦ ବାଣୀ ତା ସଙ୍ଗତେ । ପାପକୁ ଶୁଭିବ ଜଗତେ ॥
ତା ପୁଣ୍ୟ କେ ପାରିବ ଜାଣି । କରୁଣା ସିନ୍ଧୁ ବେଦବାଣୀ ॥
ଅଶେଷ ଯଜ୍ଞ ତୀର୍ଥ ଫଳ । ଲଭେ ସମାଧି ଯୋଗବଳ ॥
କୋଟିଏ ତପ ବ୍ରହ୍ମଜ୍ଞାନ । ବେଦ ନିୟମ ବ୍ରତଦାନ ॥
ସମ ନୋହନ୍ତି କୋଟି ଅଂଶେ । କୃଷ୍ଣ ଏ ବାଦ ଜାରର ସେ ॥
ଯେବେ ଶ୍ରୀକୃଷ୍ଣ ଅପବାଦ । ଜଗତେ ହୋଇବ ଶବଦ ।୧୦୨।
ତହୁଂ ଅଧିକ ଶ୍ରେଷ୍ଠ ନାହିଂ । ବେଦ ଆଗମେ ଅଛି କହି ॥
ସନ୍ଦେହ ନକର ଗୋ ମନେ । କୃଷ୍ଣଙ୍କୁ ରମ ବୃନ୍ଦାବନେ ॥
ଶୁଣି ଆନନ୍ଦ ଗୋପୀଜନେ । ସଜଳ ଶ୍ରବଇ ନୟନେ ॥
ପୁଲକ ଅଙ୍କୁର ଶରୀରେ । ଚିତ୍ତେ ଉଦ୍ଭବ ରସଭରେ ॥
ଭାସିଲେ କୃଷ୍ଣ ପ୍ରେମ ରସେ । ଶଙ୍କର ଗଲେ କଇଳାସ ।୧୦୭।
ଚନ୍ଦ୍ର କିରଣେ ଚନ୍ଦ୍ରମଣି । ତରଳ ହୋଇ ଯେହ୍ନେ ପାଣି ॥
ଗୋପ କାମିନୀ ଜନ ମନ । ଶ୍ରୀକୃଷ୍ଣ ଜାର ରସେ ମଗ୍ନ ॥
ଆନନ୍ଦେ ଦ୍ୟନ୍ତ ହୁଳ ହୁଳି । ଭାବେ ବଜାନ୍ତି କରତାଳି ॥
କରନ୍ତି ନୃତ୍ୟ ଗୀତ ଧ୍ୱନି । ହରଷେ ବୋଲନ୍ତି କାମିନୀ ।
ରୁଦ୍ର ବଚନ ମହା ଛଳେ । ଇନ୍ଦ୍ରାଦି ଦଶ ଦିଗପାଳେ ॥
ଯକ୍ଷ ଉରଗ ବିନାୟକ । ବ୍ରହ୍ମା ସହିତେ ସର୍ବଲୋକ ॥
କେ ତାହା ଅନସ୍ଥା କରିବ । ସକଳ ପ୍ରଭୁ ସଦାଶିବ ॥
ଦେଖ ଆମ୍ଭର ପୁଣ୍ୟ କର୍ମ । ସାହା ହୋଇବେ ଦେବ ଧର୍ମ ॥
ଈଶ୍ୱର ବଚନ ପ୍ରତକ୍ଷ । ବର ପାଇବୁ କମଳାକ୍ଷ ॥
କୁଳ ଉଚିତ ଧର୍ମ ବିଧି । ବେଦ ବିଧାନେ ଯେ ପ୍ରସିଦ୍ଧି ॥

ଲଙ୍ଘିଲେ ନପାଇବୁ ଦୋଷ । ସଂସାରେ ରହିବ ଗୋ ଯଶ ॥
କମ୍ପା ଉତିବା ଲୋକବାଦେ । ଶଙ୍କର ବରର ପ୍ରସାଦେ ॥
ଆମ୍ଭେ ହୋଇବା ଦୋଷ୍ଟରୁଣୀ । କୁଳ କୁଟୁମ୍ବ ଲୋକ ଶୁଣି ॥
କେ କରି ପାରବେ ଆମ୍ଭଙ୍କୁ । କମ୍ପାଇ ଉଠିବା ତାହାଙ୍କୁ ॥
ରୁଦ୍ର ବଚନ କେ ଲଙ୍ଘିବ । ସଂସାରେ ଦେହ ବହିଥିବ ॥
ସେ ବିନା ବଦୃଶ୍ୟେ ଦୋଷ । ଆମ୍ଭେ ଛେଦିଲୁ ମୋହପାଶ ॥
ସର୍ବ ସମ୍ପଦ ନିରହିତ । ଅନ୍ତର ଆତ୍ମା ଅଧିକାରୀ ॥
ନାରଦ କହିଥିଲେ ପୂର୍ବେ । ଶଙ୍କର ବର ଦେଲେ ଯେବେ ॥
କୃଷ୍ଣ ଚରଣେ ମନ ଦେଇ । ମନ ଆନନ୍ଦେ ସର୍ବ ଗୋଇ ॥
ବିଷୟ କରନ୍ତି ବିକାର । ଯେ ଶାନ୍ତ ଧର୍ମ ସଦାଚାର ॥
ସେ ଗୋପୀଜନଙ୍କ ଚରଣେ । ମନ ନବେଶି ଅନୁକ୍ଷଣେ ॥
ବ୍ରାହ୍ମଣ ଜଗନ୍ନାଥ ଧ୍ୟାଇ । ସୁଜନେ ଶୁଣ ତୋଷ ହୋଇ ॥
ଘୋର ବିଷୟ ଦୁଃଖ ରସେ । ଆତ୍ମା ବନ୍ଧନ କର୍ମ ପାଶେ ॥
ସେ ପାଶ ବେଗେ କର ନାଶ । କୃଷ୍ଣ ଚରଣେ ଦ୍ବିଜ ଦାସ ।୧୩୧।

ଇତି ଶ୍ରୀମତ୍ ପରମହଂସେ ଶୈବାଗମେ ଗୋପୀକା ନତ ବ୍ରତ ବର୍ଣ୍ଣନେ ନାମ ଊନବିଂଶୋଽଧ୍ୟାୟଃ ।

## ବିଂଶ ଅଧ୍ୟାୟ

ଶ୍ରୀପାର୍ବତୀଉବାଚ

ପାର୍ବତୀ ଶୁଣି ତୋଷମନ । ବୋଲନ୍ତି ମଧୁର ବଚନ ।୧॥
ହେ ପ୍ରାଣନାଥ ପଶୁପତି । ଧନ୍ୟ ସେ ଗୋକୁଳ ଯୁବତୀ ॥
କାନନ ମଧ୍ୟେ ଗୋପବାଳୀ । କି କର୍ମ କଲେ ମନେ ଭାଳି ॥
ବର ପାଇଲେ ରୁଦ୍ର ତହିଂ । କି ଭାବ କଲେ ଭାବଗ୍ରାହୀ ॥
ବିଶେଷ କହ ଶୂଳ ହସ୍ତ । କୃତାର୍ଥ କର ମୋ ଶାକ୍ତ ॥

## ଈଶ୍ୱରଉବାଚ

କହନ୍ତି ଦେବ ତ୍ରିପୁରାରି । ସେ ସର୍ବ ଗୋକୁଳ କୁମାରୀ ॥
କୃଷ୍ଣ ଚରଣେ ଦେଇ ଚିତ୍ତ । ଭାବେ କରନ୍ତି ନୃତ୍ୟଗୀତ ॥
ଆନନ୍ଦେ ଲଜ୍ଜା ଉପେକ୍ଷିଲ । ଅଙ୍ଗ ବସନ ଦୂରକଲେ ॥
କେହୁକ ଆରକେ ସର୍ବନାରୀ । କାଳନ୍ଦୀ ଜଳେ ହସ୍ତଧରି ॥
ଭାବେ କରନ୍ତି ଜଳ କେଳି । କର କମଳେ ଜଳ ତୋଳି ॥
କେହୁକ ଆରକେ ପକାବନ୍ତି । ହୁଙ୍କାର ନାଦେ ଗୀତ ଗାନ୍ତି ॥
ଜଳେ ବୁଡ଼ନ୍ତି ମହାସୁଖେ । କେ ପାଣି ପକାବନ୍ତି ମୁଖେ ॥
ହୁଅନ୍ତି ମଣ୍ଡଳି ମଣ୍ଡଳି । ଯେସନେ ଚମ୍ପା ପୁଷ୍ପ ମାଳି ॥
ହସ୍ତକୁ ହସ୍ତ ଅନୁବନ୍ଧେ । କର ଅଙ୍ଗୁଳି ମୁଦ୍ରାଛନ୍ଦେ ॥
ଜଳରେ ତୋଳି ହସ୍ତବନ୍ଧ । ହାମ୍ପୋଠ କରି ମନ୍ଦ ମନ୍ଦ । ୧୫ ॥
ବଦନେ କୃଷ୍ଣଗୀତ ଗାନ୍ତି । ମଣ୍ଡଳି ସଙ୍ଗତେ ଭ୍ରମନ୍ତି ॥
ପଙ୍କଜ ବନେ ଭୃଙ୍ଗ ବୃନ୍ଦ । ଆସ୍ୱାଦୁ ଥିଲେ ମକରନ୍ଦ ॥
ଜଳ କଲ୍ଲୋଳେ ପଦ୍ମ ବୁଡ଼ି । ସଧିରେ ଭୃଙ୍ଗ ଯୂଥ ଉଡ଼ି ॥
ମିଳିଲେ ଗୋପୀଜନ ପାଶେ । ଅଙ୍ଗ ଲାବଣ୍ୟ ଗନ୍ଧବାସେ ॥
ମୁଖ କମଳ ସଉରଭେ । ଭ୍ରମର ଯୂଥ ଗନ୍ଧ ଲୋଭେ ॥
ଧ୍ୱନି କରନ୍ତି ଗୁଣପାଶେ । ବସନ୍ତି କର୍ଣ୍ଣ ଅବତଂସେ ॥
ନାସା ପବନ ରନ୍ଧ୍ରେ ମିଳି । ବଦନ ଗନ୍ଧ ପରିମଳି ॥
ଭୃଙ୍ଗ ନିନାଦ କର୍ଣ୍ଣେ ଶୁଣି । ଗୋପୀ ବୋଲନ୍ତି ରସବାଣୀ ॥
ହେ କୃଷ୍ଣ ଭ୍ରମର ପୁଙ୍ଗବ । ରସା ସ୍ୱାଦନେ ତୋର ଭାବ ॥
ଆମ୍ଭ ବଦନ ପଦ୍ମପାଶେ । ମନ୍ଦ ମଧୁର ଧ୍ୱନି ଘୋଷେ ॥
ସ୍ଫୁଟ ବଚନ ରସ ଭରେ । ଛନପୁ କହୁଛ ଝଙ୍କାରେ । ୧୬ ॥
ମୁଖ ପଙ୍କଜ ମଧୁପାନେ । ଲୋଭ ଜନ୍ମିଲା ଯେବେ ମନେ ॥
ପୁନାଙ୍ଗ ବନେ ଯାଅ ବେଗେ । ପୁଷ୍ପ କାନନେ ନାନା ରଙ୍ଗେ ॥

କ୍ରୀଡ଼ା କରିବ ମନ ତୋଷେ । କି କାର୍ଯ୍ୟ ଅଛୁ ଆମ୍ଭ ପାଶେ ।।
ପ୍ରେମ ବଚନେ ଗୋପନାରୀ । କାଳନ୍ଦୀ ଜଳେ କ୍ରୀଡ଼ା କରି ।।
ରାଧା ଜାଣିଲେ ନରହରି । କଦମ୍ବ ତଳେ ବଜେ କରି ।।
ଦେଖନ୍ତି କାଳନ୍ଦୀ ତୀରରେ । ଗୋପ ତରୁଣୀ ରସ ଭରେ ।
କ୍ରୀଡ଼ା କରନ୍ତି କୁତୁହଳେ । ସନ୍ତୋଷ ମନେ ନନ୍ଦ ବାଳେ ।।
ଗୋପ ସୁତଙ୍କ ମୁଖ ଗୃହ୍ବଂ । ହସି ବୋଲନ୍ତି ଭାବଗ୍ରାହୀ ।୩୪।
ଯେତେ ବସନ ନଘ ତୀରେ । ଦିଶନ୍ତି ବାଲି କୁଦ ପରେ ।।
ସାଉଁଟି ଯେନ ଆସ ତୋଳି । ବୃକ୍ଷ ଉପରେ କର ଦୋଳି ।
କୃଷ୍ଣ ବଚନେ ଗୋପବାଳେ । ବସନ ଆଣିଲେ ସକଳେ ।।
ବାନ୍ଧିଲେ କଦମ୍ବ ଉପରେ । ମଣ୍ଡିଲେ ଚିତ୍ରିତ ପ୍ରକାରେ ।।
ବୃକ୍ଷ ଦିଶଇ ଶୋଭା ବନ । ଯେସନେ ନନ୍ଦ ଘୋଷ ଯାନ ।।
ପଲ୍ଲବ ରଙ୍ଗ ଯେ ପ୍ରବାଳ । ମୁକୁତ ରୁଚି ଶ୍ୟାମ ଦଳ ।।
କୋରକ ଯେହ୍ନେ ଗଜ ମୋତି । ଫଳ କମଳ ସ୍ୱଚ୍ଛ ଜ୍ୟୋତି ।।
ସକଳ ଋତୁଙ୍କ ଆଶ୍ରମ । ଭୃଙ୍ଗ କୋକିଳଙ୍କ ବିଶ୍ରାମ ।।
ଅମ୍ରୀପୃ ଶୀକର ବରଷେ । ଆମୋଦେ ପୁଷ୍ପ ଗନ୍ଧ ବାସେ ।।
ସୁନ୍ଦର ଦିଶେ ଶାଖାବୃନ୍ଦ । ଯେସନ୍ତେ ଆକାଶେ ପୂର୍ଣ୍ଣଚନ୍ଦ୍ର ।।
କାନନ ମଧ୍ୟେ କଳ୍ପ ତରୁ । ଫଳ ଉତ୍କର୍ଗ ସମଗ୍ରରୁ ।।
ବୃକ୍ଷ ଉପରେ ଦେବରାଜେ । ଦିବ୍ୟ ଆସନେ କଲେ ବଜେ ।।
ନବ ଜଳଦ ଦିନୁଶ୍ୟାମ । କୋଟି ମଦନ ଅଭିରାମ ।।
ନବତରୁଣ ତେଜ ପୁଞ୍ଜ । ମଞ୍ଜୁଳ ପ୍ରଭାରେ ନିକୁଞ୍ଜ ।।
ସୁନ୍ଦର ଦିଶେ ରୋମାବଳୀ । ଶ୍ୟାମ ଲାବଣ୍ୟ ତନୁଶାଳୀ ।।
କଦମ୍ବ ଭ୍ରମି ଚ୍ଛିରପାଶେ । ଭୃଙ୍ଗ ରାବନ୍ତି କଳ ଘୋଷେ ।।
ଗୋପ କୁମରେ କୃଷ୍ଣ ପାଶେ । ଅଛନ୍ତି ନଟବର ବେଶେ ।।
ବିଶ୍ୱ ମୋହନ ରୂପ ଦେଖି । ପିଗ୍ଲାଡ଼ ନପାରନ୍ତି ଆଖି ।।

ଚିତ୍ର ପ୍ରତିମା ପ୍ରାୟେ ହୋଇ । ଶ୍ରୀକୃଷ୍ଣ ଅଙ୍ଗେ ମନ ଦେଇ ॥
ବାଳକେ ରହିଲେ ନିଶ୍ଚଳେ । ନୟନ ଆନନ୍ଦ ଭ୍ରମରେ ॥
ବ୍ୟାଘ୍ର ମହିଷ ଶାଖା ମୃଗ । ସିଂହ ବାରଣ ଯେତେକ ସଙ୍ଗ ॥
ଆନନ୍ଦେ ରହି ବନଦେଶେ । ସମ୍ପୂର୍ଣ୍ଣ ବ୍ରହ୍ମାନନ୍ଦ ରସେ ।୫୭।
ମଜ୍ଜିଲେ ବନ ଜନ୍ତୁମାନେ । କୃଷ୍ଣଙ୍କୁ ଦେଖନ୍ତି ନୟନେ ॥
ଗୋପୀଏ କାଳିନ୍ଦୀ ନଦୀରେ । ଥିଲେ ଯେ କ୍ରୀଡ଼ାର ସଭରେ ॥
ପ୍ରେମନେତ୍ରେ କୃଷ୍ଣ ଅଙ୍ଗ ପ୍ରଭା । ଲାଗି କାନନ ମହାଶୋଭା ॥
କୃଷ୍ଣଙ୍କୁ ରହିଂ ବନଜୀବେ । ଚକିତେ ରହି ଧ୍ୟାନଭାବେ ॥
କାଳନ୍ଦୀ ଲହରି ନିଶ୍ଚଳ । ସୁଗନ୍ଧ ବହଇ ଅନିଳ ॥
କୁସୁମ ପଡ଼ୁଛନ୍ତି ଝଡ଼ି । ଭ୍ରମରେ ନପାରନ୍ତି ଉଡ଼ି ॥
ଭାଳି ବୋଲନ୍ତି ଗୋପୀଜନ । ଆନନ୍ଦେ ଦେଖ ସଖୀଗଣ ॥
ନୀରସ ଦ୍ରୁମ ପଲ୍ଲବଇ । ପାଷାଣ କୁଳ ଦ୍ରବ ହୋଇ ॥
ଅକାଳ କାଳନ୍ଦୀ ପ୍ରବାହ । ହୋଅନ୍ତି ବନ ଜନ୍ତୁ ମୋହ ॥
କିବା ଲାବଣ୍ୟ ଯୁବାମଣି । ବନେ ବଜାଏ ବେଣୁ ପାଣି ॥
ଆମ୍ଭେ ଗୋ ଆସି ସବୁଦିନେ । ଏମନ୍ତ ନଦେଖି ଯେ ବନେ ॥
ଏତେ ବୋଲନ୍ତି ଗୋପୀ ଜନେ । ନିରେଖି ରହାନ୍ତି ନୟନେ ॥
ଦେଖିଲେ କଦମ୍ବ ଉପରେ । ଦିବ୍ୟ ଆସନ ମନୋହରେ ॥
ବଜାଏ ଦେବ ବ୍ରହ୍ମବଂଶୀ । କି ରୂପେ ଦଶଦିଗ ଭାସି ॥
ଶ୍ୟାମ ଲାବଣ୍ୟ କଳେବର । ନବ ଜଳଦ ମନୋହର ॥
ନିନ୍ଦଇ ଇନ୍ଦ୍ର-ନୀଳମଣି । ନବ ତମାଳ ଦ୍ରୁମ ଜାଣି ॥
ଶିରେ ସେବତି ପୁଷ୍ପଦାମ । ବରହୀ ପୁଚ୍ଛ ଅଭିରାମ ॥
ଭାଲ ଉପରେ ଗୁଞ୍ଜମାଳ । ମଣ୍ଡି କୁଣ୍ଡଳ କର୍ଣ୍ଣେ ଲୋଳ ॥
କପୋଳେ ଗୋରୋଚନା ଚିତା । ନାସାରେ ନବୀନ ମୁକୁତା ॥
ଅରୁଣ କମଳ ନୟନ । ରଙ୍ଗ ଅଧର ସ୍ମିତାନନେ ॥

ତାଙ୍କ ପ୍ରଭାଗ୍ରୁ ଅନୁଭବି । କରୁଣା ଅମୀୟ ବରଷି ॥
ରତ୍ନ କଙ୍କଣ ବାହୁମୂଳେ । କର୍ଣ୍ଣେ ଲମ୍ବଇ ରତ୍ନମାଳେ ॥
ଅଙ୍ଗୁଳ କମଳ କର୍ଣ୍ଣିକା । ସୁନ୍ଦର ଦିଶଇ ମୁଦ୍ରିକା ।୮୪।
କୌସ୍ତୁଭ ମଣି ହୃଦେ ଶୋହେ । କୋଟିଏ ଅରୁଣ ଉଦୟେ ॥
ପୀତ ବସନ କଟି ତଟେ । ଚରଣେ ନୂପୁର ପ୍ରକଟେ ।୮୧।
ବକ୍ଷ ଦେଶରେ ସିହାବେତ । ମୁରଲୀ ଧରି ଦକ୍ଷ ହସ୍ତ ॥
ବିଜୟେ କଦମ୍ବ ଉପରେ । କୋଟିଏ ମଦନ ସୁନ୍ଦର ॥
ଦେଖି ଚକିତ ଗୋପବାଳୀ । ପିଛଡ଼ା ନପାରନ୍ତି ଭୁଲି ॥
ବୋଲନ୍ତି ଦେଖ ଗୋ ସଜନୀ । ମୋହଇ ଅଶେଷ ଅବନୀ ॥
ନୟନ ପରମ ମଙ୍ଗଳ । କଦମ୍ବ ପରେ ନନ୍ଦବାଳ ॥
ଯେ କୃଷ୍ଣ ଖେଳେ ନନ୍ଦ ଘରେ । ବାଛୁରୀ ରଖଇ ବନରେ ॥
ତା ରୂପ ଦେଖ ଗୋ ନୟନେ । ସୁନ୍ଦର ଅଶେଷ ଭୁବନେ ॥
ଯେ ବସିଥାଇ ନନ୍ଦ କୋଳେ । ସେ ନନ୍ଦେ କୋଟି କାମହେଳେ ॥
ଦେଖ ଗୋ କଦମ୍ବ ପାଦପ । ପୂର୍ବେ ପ୍ରେକଲ କେତେ ତପ ॥
କୃଷ୍ଣଙ୍କୁ ବହିଛି ଉପରେ । ଧନ୍ୟ ହୋଇଲା ବ୍ରଜପୁରେ ।୯୧।
ସୁନ୍ଦର ଦିଶନ୍ତି ଡାଳ । ଯେସନ୍ତେ ଶରଦ ମେଘମାଳ ॥
ସୁନ୍ଦର ଦିଶେ ଶାଖାମାନ । କାହିଁ ଆଣିଲ ସେ ବସନ ॥
ଲୋଡ଼ନ୍ତି କୂଳକୁ ଚାହିଁଲେ । ଥୋଇଲୁ ବସ୍ତ୍ର ନ ଦେଖିଲେ ॥
ବୋଲନ୍ତି ଲଜ୍ଜାଭର ହୋଇ । କି ବୁଦ୍ଧି କରିବା ଗୋ ସହି ॥
ମରଣୁ ବଳିଲା ଗୋ ଲାଜ । ମାୟା ଭଣ୍ଡାର ଦେବରାଜ ॥
ବସ୍ତ୍ର ଆମ୍ଭର ବଟଳ ନେଲ । କଦମ୍ବ ବୃକ୍ଷରେ ମଣ୍ଡିଲ ।୯୬।
ଆନନ୍ଦେ ହୋଇଅଛି ଦୋଳା । ବଂଶୀ ବଜାଇ କର ଖେଳା ॥
ନପୁଣ ନଦିଅଇ ବାସ । ବିଧାତା କଲା ଯେ ଉଦ୍ଭାଷ ॥
କି ବୁଦ୍ଧି କରିବା ସଙ୍ଗାତ । ନାଗର ବର ନନ୍ଦସୁତ ॥

ସେହିହାରେ ପଡ଼ିଲୁ ପଞ୍ଚାଳ । ବସ୍ତ୍ର ମାଗିଲେ ଦେବବାଳ ॥
ବୁଦ୍ଧି ବିଧାନ କରୁ ନାହିଁ । ହସି ବୋଲନ୍ତି ଭଗବାହି ॥

ଶ୍ରୀଭଗବାନୁବାଚ

ସେହି ତୁମ୍ଭେ କେଉଁଣ ବେଭାର । ନଟତ୍ୟ ହେଁ ଆମ୍ଭ ବନଘୋର ॥
ଦେବତା କରୁଥାଅ ପୂଜା । ଲ କେଁ ଚେଜିଲ କୁଳ ଲଜ୍ଜା ॥
ଗୃ୍ୟଂନ କା ହାରିଲ ମକଳେ । ବିବସେ ପଶିଲ ଏସ ଜଳେ ।୧୦୪।
ଜଳ ହୋଇଲା କେହି ନାହିଁ । କମ୍ପାଇଁ ଜଳେ ଅଛ ରହି ॥
ବେଗେ ବାହାର ହୋଇ ଆସ । ଶହ୍ନି ଗୋ ନଅ ତୁମ୍ଭବାସ ॥
ଶ୍ରବଣେ ଶୁଣି କୃଷ୍ଣବାଣୀ । ଲଜ୍ଜିତ ଗୋକୁଳ ରମଣୀ ॥
ମନେ ଭାବନ୍ତି ଆନନ୍ଦନେ । କୃଷ୍ଣ ନଥାନ୍ତି ଏହି କାନନେ ॥
ସଫଳ ହୋଇଲା ଗୋ ଉଷା । ବର ଯେ ଦେଇଲ ଭଗବାସ ॥
ଆମ୍ଭେ ତ ନଗଲୁ ସଙ୍କୋଳ । ତାହା ଇଚ୍ଛାଏହି ବନମାଳୀ ॥
ବସ୍ତ୍ର ଗୋ ନେଲ ପରିହାସେ । ବଚନ କହେ ପ୍ରେମ ଆଶେ ॥
ଏହି କଥା ଭଲଇ ହୋଇଲା । ଏହି ଯେବେ ଏଥିକୁ ଅଇଲା ॥
ଆଜ କରିବ ଅନୁଗ୍ରହ । ମନେ ନ ରଖିବ ସନ୍ଦେହ ॥
କଣ୍ଠ ପ୍ରମାଣ ଜଳେ ରହି । ବୋଲନ୍ତି କୃଷ୍ଣ ମୁଖ ଚାହିଁ ॥

ଗୋପ୍ୟୁବାଚ

ହେ ଶ୍ୟାମ ସୁନ୍ଦର ଶ୍ରୀହରି । ଅମ୍ଭେ ତୋହର ପରଗୃହି ।୧୧୭।
ତୋ ଆଗ୍ୟାଂ ଆମ୍ଭେ ପ୍ରତିପାଳୁ । ତୁ ନାଥ ପରମ ଦୟାଳୁ ॥
ତୁ ଧର୍ମ ପୁରୁଷ ଈଶ୍ୱର । ଆମ୍ଭଙ୍କୁ କର ପ୍ରତିକାର ॥
ବସନ ଦିଅ ଯେ ଯାହାରେ । ଅନ୍ତର ନରଖ ମନରେ ॥
ଯେବେ ନ ଦେବୁ ଆମ୍ଭବାସ । କହିବୁ କଂସ ରାଜାପାଶ ।୧୨୦।
କମ୍ପାଇଁ ଗୋପେ ଥିବୁ ରହି । ତୋ ଦୁଷ୍ଟ ପଣବଇ ସହି ॥

ଶ୍ରୀଭଗବାନୁବାଚ

ହସି ବୋଲନ୍ତି ବନମାଳୀ । ଶୁଣ ସକଳ ଗୋପବାଳୀ ॥
ମୋ ପାଦସେବେ ତୁମ୍ଭେ ଦାସୀ । ମୋ ଆଜ୍ଞାଂ କର ଶୁଭ୍ରକେଶୀ ॥
ଜଳୁ ବାହାର ହୋଇ ଆସ । ନିଅ ଗୋ ଯେ ଯାହାର ବାସ ॥
ନଇଲେ ନ ଦେବି ବସନ । କହ ଯା ରାଜା ସନ୍ନିଧାନ ॥
ତାହାଙ୍କୁ ନାହିଂ ମୋର ଭୟେ । କି କରି ପାରେ କଂସରାୟେ ॥
ପବନ ବଶେ ବସ୍ତ୍ର ଉଡ଼ି । ପୁଲିନ ବନେ ଥିଲ ପଡ଼ି ।୧୨୭।
ସାଙ୍ଗଂହୀ ଅଣାଇଲୁ ଆମ୍ଭେ । ଯାଚିଲେ ଗାଳିଦିଅ ତୁମ୍ଭେ ॥
ତୁମ୍ଭର ନ ବଜୁଇ ଦୋଷ । ଆମ୍ଭଙ୍କୁ କର ମନେ ରୋଷ ॥
ଏମ୍ଭ କାଳେ ଧର୍ମ ନ ବଳୁରି । ଉପକାରି କି ବାଟେ ମାରି ॥
ଏମ୍ଭ କଥା ହୋଇଲା ଆମ୍ଭରେ । ବସ୍ତ୍ର ଯେ ଯାଚିଲୁ ତୁମ୍ଭରେ ॥
ନ ଦେଲେ କି କରିବ ତୁମ୍ଭେ । ଅରଣ୍ୟ ମଧ୍ୟେ ରାଜା ଆମ୍ଭେ ॥
ଶୁଣି ଗୋବିନ୍ଦ ପ୍ରିୟବାଣୀ । ଆନନ୍ଦ ଗୋକୁଳ ରମଣୀ ॥
ଲଜ୍ଜା ଛାଡ଼ିଲେ ରସବଳେ । କାଳନ୍ଦୀ ତଟେ ଏକମେଳେ ॥
ନୀରୁ ବାହାର ହୋଇଲେ । ହସ୍ତରେ ମର୍ମ ଆଚ୍ଛାଦିଲେ ।୧୩୫।
ଏକ ଆରେକ ପଛେ ରହି । କୃଷ୍ଣଙ୍କୁ ନ ପାରନ୍ତି ଚାହିଂ ॥
ହସି ବୋଲନ୍ତି ବେଣୁଧାରୀ । ହୋଇ ଯେ ଥିଲ ବ୍ରତଚାରୀ ॥
ବସ୍ତ୍ର ବିହୁନେ ଜଳେ ପଶି । ପାପ ପାଇଲ ଶୁଭ୍ରକେଶୀ ॥
ଦେବତା କର ନମସ୍କାର । କର ଅଞ୍ଜଳି ଦେଇ ଶିର ॥
ନିର୍ମଳ ହୋଇ ବସ୍ତ୍ର ନିଅ । ମୋ ଆଗେ ସଙ୍କୋଚ ନପାଅ ॥
ଲଜ୍ଜିତ ଚିତ୍ତ ଗୋପବାଳୀ । ଦକ୍ଷିଣ କର ଶିରେ ତୋଳି ॥
ବାମେ ଆଚ୍ଛାଦି ମର୍ମଦ୍ୱାର । କୃଷ୍ଣଙ୍କୁ କଲେ ନମସ୍କାର ।୧୪୨।
ସେ ଗୋପୀଜନଙ୍କ ପ୍ରେମରେ । କୃଷ୍ଣ ବୋଲନ୍ତି ରସଭରେ ॥
ଏମ୍ଭ କଥା ନୁହଇ ଉଚିତ । ଏକ ହସ୍ତରେ ପ୍ରଣମ୍ଭି ତ ॥

କଲେ ବସ୍ତ୍ରତ ଦୋଷ ଯାଇ । ସଂସାରେ ଯେତେ ଜନ୍ମ ହୋଇ ॥
ହସ୍ତ ନଥାଇଣ କୃଶଳ । ବଞ୍ଚିଲ କର୍ମର ଅବଳେ ॥
ଶିରେ ହାବେଣି ଦେବନଗର । ନମିବ ଦେବତା ପସ୍ତୁର ॥
ନାଶିବ କଲା କର୍ମ ଦୋଷ । ହରି ବୋଲନ୍ତି ପୀତବାସ ॥
ଶୁଣି ସକଳ ଗୋପବାଳୀ । ନମିଲେ ବେନି କର ଯୋଳି ॥
ଦେଖି ସନ୍ତୋଷ ନରହରି । ପାଲଟା ବସ୍ତ୍ର କରେ ଧରି ॥
ହରଷେ ଦେଲେ ଯେ ଯାହାରେ । ଗୋପନନ୍ଦନୀ ପ୍ରେମଭରେ ।୧୫୧।
ଘେନିଲେ ଯେ ଯାହା ବସନ । ଆନନ୍ଦେ କଲେ ପରିଧାନ ॥

ଗୋପ୍ୟୁବାଚ

ବୋଲନ୍ତି ବିନୟ ବଚନ । ହେ ନାଥ ଶ୍ରୀନନ୍ଦନନ୍ଦନ ॥
ତୁମ୍ଭ ଚରଣ ପଦ୍ମତଳେ । ସେବା କରିବୁ ସବୁ କାଳେ ॥
ତୁ ଦେବ ଶରଣ ସୋଦର । ଦାସ ବତ୍ସଳ ଦୟାପର ॥
ଆମ୍ଭେ ତୋହର ପରିଗୃହୀ । ତୁ ଆମ୍ଭ ପ୍ରାଣ ଅଧିକାରୀ ॥
ତୋ ପାଦପଦ୍ମେ ହୋଇ ଦାସୀ । ସେବା କରିବୁ ଦିବାନିଶି ॥
କରୁଣା କର ଭାବଗ୍ରାହୀ । ଭଗତ ନସ୍ତାରେ ତୋ ଦେହୀ ॥
ଗୋପୀଜନଙ୍କ ଶୁଦ୍ଧଭାବ । ଅନ୍ତରେ ଜାଣିଲେ ମାଧବ ॥
ସନ୍ତୋଷ ଅନୁଗ୍ରହ ଚିତ୍ତେ । ବୋଲନ୍ତି ପ୍ରଭୁ ନନ୍ଦସୁତେ ॥

ଶ୍ରୀଭଗବାନୁବାଚ

ତୁମ୍ଭେ ସକଳ ଗୋପୀଗଣ । ମୋ ପାଦେ ପଶିଲ ଶରଣ ॥
ମୋ ଅର୍ଥେ କଲ ନତବ୍ରତ । ହେବ ଜାଣିଲି ତୁମ୍ଭ ଚିତ୍ତ ॥
ଯେ ମୋତେ ଅନୁକ୍ଷଣେ ଚିନ୍ତେ । ମୋ ପାଦ ଲଭନ୍ତି ସେ ଅନ୍ତେ ॥
ଯେ ମୋ ଚରଣେ କରେ ଆଶ । ତାର ନରହେ କର୍ମ ପାଶ ॥
ବିଷୟ ବାଧା ନବାରଇ । ଜନ୍ମ ମରଣ ସେ ଜିଣଇ ।୧୬୫।
ଯେସନେ ଅନଳ ସଂଜାଳେ । ଧାନ୍ୟ ସିଝନ୍ତି ହଣ୍ଡିଜଳେ ॥

ଯେସନେ ଯେସନ୍ତେ ହୋଏ ସାଙ୍ଗନାଶ । ମୋ ଭାବ ନାଶେ କାଳପାଶ ॥
ତୁମ୍ଭ ବାଞ୍ଛିତ ମନ କଥା । ଅନ୍ୟଥା ନୋହାଇ ସର୍ବଥା ।
ଅବଧି ଶରଦ ଋତୁରେ । ବୃନ୍ଦାକାନନ ଅଭ୍ୟନ୍ତରେ ॥
ତୁମ୍ଭ ସଙ୍ଗତେ ରାସରସେ । ଲୀଳା ବିସ୍ତାରି ସ୍ୱ ପ୍ରକାଶେ ॥
ତୋଷ କରିବି ତୁମ୍ଭମନ । କହିଲି ସତ୍ୟ ବଚନ ॥
ତୁମ୍ଭେ ଯାଅ ଯା ନିଜ ଘରେ । ମନ ନିବେଶି ମୋ ପୟରେ ॥
ଶୁଣି ସକଳ ଗୋପୀବୃନ୍ଦ । ମନରେ ପରମ ଆନନ୍ଦ ॥
କୁମୁଦ ବେଢ଼ିଲା କି ଭୃଙ୍ଗ । ଅରୁଣ ଉଦେ ଅରବିନ୍ଦ ॥
ନିଦାଘ ଆତପେ ସଫରୀ । ପଙ୍କିଳ ସଲିଳେ ସଞ୍ଚରି ।୧୭୭।
ଅତିପତାପ ଉଷ୍ଣ ଜଳେ । ଆକୁଳ ଆତ୍ମାର ବିକଳେ ॥
ସେ ଯେସନ୍ତେ ନବ ଘନ ନୀରେ । ସଲିଳ ସମ୍ପୂର୍ଣ୍ଣ ଆଧାରେ ॥
ଆନନ୍ଦ ହୋଇ ବିହରଇ । ଅଶେଷ ଭୟ ନିବାରଇ ॥
କୃଷ୍ଣ ବଚନେ ସର୍ବସଖୀ । ଆନନ୍ଦ କେହୁ ପାରିବ ଲେଖି ॥
ଚାତକ ଯେସନ୍ତେ ଘନାଗମେ । କୋକିଳ ବସନ୍ତ ଆଗମେ ॥
ମଧୁପ ମାଳତୀ କୁସୁମେ । ଯୋଗୀନ୍ଦ୍ର ଯେସନ୍ତେ ଆତ୍ମାରାମେ ॥
ଦରିଦ୍ର ପାଇଲା କି ଧନ । ଅନ୍ଧ କି ଲଭିଲା ନୟନ ॥
ନପଡ଼ି ପଲକେ ଚକ୍ଷୁ ଜାଣି । ଶ୍ରବଣେ ଶୁଣି କୃଷ୍ଣବାଣୀ ।୧୮୩।
ଆନନ୍ଦ ସାଗରେ ମଜ୍ଜିଲେ । ଶ୍ରୀକୃଷ୍ଣ ଚରଣେ ନମିଲେ ॥
ହୋଇଲେ ସର୍ବାଙ୍ଗ ପୁଲକ । ନୟନୁ ବହଇ ନୀରକ ॥
ଶ୍ରୀକୃଷ୍ଣ ଅଗ୍ରେ ଧରି ଶିରେ । ଚଳନ୍ତି ଆସନ୍ତ ମନ୍ଦିରେ ॥
ନେତ୍ରକ ଆରକ୍ତେ ହସ୍ତଧରି । ଆନନ୍ଦେ କୋଳାଗ୍ରତ କରି ॥
ଅବଶେ ବସନ୍ତ କାମିନୀ । ହୋଇଲେ ଜୟ ଜୟ ଧ୍ୱନି ॥
ଶ୍ରୀକୃଷ୍ଣ ପ୍ରେମ ରସରଙ୍ଗେ । ନୟନ କମଳ ତରଙ୍ଗେ ॥
ଅଧର ସୁଧାମନ୍ଦ ହାସେ । ବିନୋଦ ନୃତ୍ୟ ଗୀତ ରସେ ॥

ସକଳ ଗୋପୀ ମନ ତୋଷେ । ପ୍ରବେଶ ହୋଇ ନିଜବାସେ ।୯୧।
ମନେ ଶ୍ରୀକୃଷ୍ଣ ଧ୍ୟାନକରି । ଆନନ୍ଦ ବରଜ କୁମାରୀ ॥
ସେ ଗୋପୀ ଜନଙ୍କ ଚରଣେ । ଶିର ନବେଶି ଅନୁକ୍ଷଣେ ॥
ଆନନ୍ଦେ ବିପ୍ର ଜଗନ୍ନାଥ । ବର୍ଣ୍ଣିଲ କୃଷ୍ଣ ଉପଗୀତ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବ ଗମେ ଶ୍ରୀକୃଷ୍ଣ ପ୍ରେମାନୁଗ୍ରହୋ ନାମ ବିଂଶତିତମୋଽଧ୍ୟାୟଃ ।

## ଏକବିଂଶ ଅଧ୍ୟାୟ

ଶୁଣ ସୁଜନେ ତୋଷ ହୋଇ । ଶ୍ରୀକୃଷ୍ଣ ପାଦେ ଚିତ୍ତଦେଇ ।୧।
ପଢନ୍ତୁ ପଦ ସୁଧାରସ । ଶ୍ରୀକୃଷ୍ଣ ପ୍ରେମ ଗୁଣ ଯଶ ॥
ଯେବେ ରସ ସର୍ବସୁଖ ମୟ । ଶ୍ରବଣେ ଖଣ୍ଡେ ସର୍ବଭୟ ॥
ଚନ୍ଦ୍ରଶେଖର ସ୍ୱାମୀପାଶେ । ଉମା ପଚାରେ ମନ ତୋଷେ ॥

ପାର୍ବତ୍ୟୁବାଚ

ହେ ନାଥ ଶଶାଙ୍କ ମଣ୍ଡଳ । କୃଷ୍ଣ ବଚନ ଗୋପବାଳୀ ॥
ସନ୍ତୋଷେ ଗଲେ ଗୋପପୁରେ । କିଭବ କଲେ ଚଦନ୍ତରେ ॥
ଉମା ବଚନେ ହୀପୁରାରି । ବୋଲନ୍ତି ଶୁଣ ମାହେଶ୍ୱରୀ ॥

ଶ୍ରୀଈଶ୍ୱରୋବାଚ

ଶ୍ରୀକୃଷ୍ଣ ବଚନେ କୁମାରୀ । ମନ ସନ୍ଦେହ ଦୂରକରି ॥
ଆନନ୍ଦେ ଗଲେ ନିଜପୁରେ । ଶ୍ରୀକୃଷ୍ଣ ଭାବନ୍ତି ଅନ୍ତରେ ।୮।
ହେମ ଶିଶିର ମଧୁମାସ । ଗ୍ରୀଷ୍ମ ବରଷା କଲେ ଶେଷ ॥
ଶରଦ ଋତୁ ଚିନ୍ତା କରି । କୃଷ୍ଣ ଚରଣ ମନେଧରି ॥
ବ୍ରଜନନ୍ଦନ ଗୋପ ଗ୍ରାମେ । ଶରଦ ଋତୁ ସମାଗମେ ॥
ଆନନ୍ଦ କେ ପାଇବ କହି । ଚିନ୍ତା କରନ୍ତି ଭାବଗ୍ରାହୀ ॥
ତାହାଙ୍କ ଲୀଳା ଗୁଣଭାବ । ମନ ବଚନେ ଅସମ୍ଭବ ॥

ପ୍ରବେଶୋ ଶୁକ ମହାମୁନି । ଶ୍ରୀଭାଗବତ ଧର୍ମ ଶ୍ୟାଂନୀ ॥
ଯାହା କହିଲେ ଭାଗବତେ । ରାଜା ପରୀକ୍ଷିତ ଅଗ୍ରତେ ॥
ଗୋପୀ ଜନଙ୍କ ରାସରସ । ତୋ ଆଗେ କରିବି ପ୍ରକାଶ ।୧୭।
ସେରାଜା ବ୍ରହ୍ମ ଶାପପାଇ । ରହିଲ ଗଙ୍ଗା ତଟେ ଯାଇ ॥
ଅଶେଷ ବ୍ରହ୍ମ ଋଷିମାନେ । ଅଇଲେ ରାଜାର ଦର୍ଶନେ ॥
ମୁନିଙ୍କ ଆଗମନ ଜାଣି । ପାଣ୍ଡବ ବଂଶ ଚୂଡ଼ାମଣି ॥
ଆନନ୍ଦେ ନମସ୍କାର କରି । ବିନମ୍ର ହୋଇ ଦଣ୍ଡଧାରୀ ॥
ବୋଲନ୍ତି ମଧୁର ବଚନେ । ହେମୁନି ଶୁଣ ସାବଧାନେ ॥

ପରୀକ୍ଷିତୋବାଚ

ମୁଂସେ ଅଗ୍ୟାଂନ ପାପରାଶି । ବ୍ରାହ୍ମଣ ଶାପେ ଧର୍ମ ନାଶି ॥
ଜନମ କଲି ଅକାରଣ । ନିକଟ ହୋଇଲା ମରଣ ।୧୮।
କେମନ୍ତେ ଲଭିବଇଂ ଗତି । କରୁଣା କହ ସର୍ବଜତି ॥
ରାଜା ବଚନେ ମୁନିବୃନ୍ଦ । ବିସ୍ତାର କଲେ ମହାବାଦ ॥
ପ୍ରେତ୍ୟକ ଅରକେ ମୁନିବର । ରାଜାକୁ ବୋଲନ୍ତି ଉତ୍ତର ॥

ନାରଦ ଉବାଚ

ନାରଦ ବୋଲେ ନୃପ୍ରପତି । କମଳାପତିରେ ଧ୍ୟାନେ ରତି ॥
ହୋଇବୁ ଭବ ଜଳ୍ପ ପାର । ଅନ୍ୟଥା ନାହିଂ ପ୍ରତିକାର ॥

ଅଙ୍ଗିରୋବାଚ

ଅଙ୍ଗିର ବୋଲେ ପ୍ରିୟବାଣୀ । ଶଙ୍କର ସେବ ନୃପମଣି ।୩୦।
ଶିବ ମଣ୍ଡଳେ ନିଜବାସ । ଅନ୍ତେ ଲଭିବୁ ନରଈଶ ॥

ଭୃଗୁରୁବାଚ

ଭୃଗୁ ବୋଇଲେ ସୂର୍ଯ୍ୟରୂପ । ଚିତ୍ତନିବେଶି କର ତପ ॥
ସୂର୍ଯ୍ୟ ମଣ୍ଡଳ ଭେଦ ଯିବୁ । ସ୍ୱ ଲୋକ ଗତି ତୁ ଲଭିବୁ ॥

ଚୈତ୍ୟବନୋବାଚ

ଚୈତ୍ୟବନ ବୋଲନ୍ତି ତା ଶୁଣି । କାଳର ପ୍ରଭାବ ନ ଜାଣି ॥
ହୃଦୟେ କରିଛ ସନ୍ଦେହ । କାଳନ୍ତି କରଇ ସଂଗ୍ରହ ॥
ଅନ୍ତରେ ଶାନ୍ତ କାଳବଳ । ଏ ଟି ପରମ ତପ ଫଳ ।୩୬।

ପରାଶରୋବାଚ

ବୋଲନ୍ତି ପରାଶର ମୁନି । ସ୍ୱଭାବ ପ୍ରକୃତିକ ଘେନି ।୨୭।
ଜୀବ ହୋଇନ୍ତି ଆତଜାତ । କାଳ ସ୍ୱଭାବ ବଳେ ଗ୍ରସ୍ତ ॥
ସ୍ୱଭାବ ବଳ ଧ୍ୟାନ ଯୋଗେ । ମନ ନବେଶି ଗ୍ୟାଂନ ମାର୍ଗେ ॥
ଆମ୍ଭାକୁ କର ଉପାରାମ । ଖଣ୍ଡି ଅଖିଳ ମାୟାଭ୍ରମ ॥

ବ୍ୟାସଉବାଚ

ବ୍ୟାସେ ବୋଲନ୍ତି କର୍ମମୂଳ । କର୍ମ ବାସନା କର ସ୍ଥୂଳ ॥
ଯେ ଜୀବ କର୍ମପାଶେ ବନ୍ଦୀ । ବିଷୟ ରସେ ଆତ୍ମାରୁନ୍ଧି ॥
କର୍ମ ବ ସନା ଦୂର କର । ଆମ୍ଭାକୁ ସଙ୍କଟୁ ଉଦ୍ଧର ॥
ଯେମନ୍ତେ ବିବାଦ ବଚନ । ଯେତେ କହିଲେ ମୁନିଜନ ॥
ଶ୍ରବଣେ ଶୁଣି ମହୀପାଳ । ଆତ୍ମାରେ ହୋଇଲେ ବିକଳ ॥
ମଉନ ବ୍ରତେ ମହାଶୟେ । ମନେ ବିଚାରଇ ସଂଶୟେ ।୪୬।
ବ୍ରହ୍ମ ବଚନ କୋପାନଳ । ନିକଟେ ହୋଇଲା ମୋ କାଳ ॥
ଆମ୍ଭାକୁ କେମନ୍ତେ ତାରିବ । ଘୋର ସଙ୍କଟୁଂ ନସ୍ତରିବ ॥
ପୂର୍ବ ସଞ୍ଚିତ ପୁଣ୍ୟ ବଳେ । ବ୍ୟାସ ନନ୍ଦନ ଶୁକ ଭେଳେ ॥
ଆସନ୍ତି ରାଜା ସନ୍ନିଧାନେ । ମନ ନବେଶି କୃଷ୍ଣ ଧ୍ୟାନେ ॥
ପରମ ଅବଧୂତ ବେଶ । ଶିରେ ଶୋଭିନ୍ତି ଜଟାକେଶ ॥
ପ୍ରକୀର୍ଣ୍ଣ କନ୍ଥା ପରିଧରି । କଣ୍ଠେ ପବିତ୍ର ନାମ ଧରି ॥
ସୁନ୍ଦର ସର୍ବାଙ୍ଗ ପୁଲକ । ଆନନ୍ଦେ ବହଇ ଲୋତକ ।୫୩।
ଗମନ କରନ୍ତି ସଧିରେ । ଅବଶ କୃଷ୍ଣ ରସଭରେ ॥

ନମିଷେ ରହନ୍ତ ନଷ୍ଟଳେ । ବ୍ରହ୍ମା ଆନନ୍ଦ ରସ ଭୋଳେ ॥
ପୃଥିବୀଂ କରନ୍ତ ଗମନ । ବାଉଳ ପ୍ରାୟେ ଅଚେତନ ॥
ଶ୍ରୀକୃଷ୍ଣ ରସେ ହୋଇ ମତ୍ତ । ଛଳପଡ଼ନ୍ତ ମସ୍ତଗତ ॥
ତୃଣ ପଙ୍କ ଜ ପଥ ରଜ । ଧୂସର ଅଙ୍ଗ ଅଭିରଞ୍ଜି ॥
ତାଳି ବଜାଇ ବାଳ ପୋପେ । ଗୋଡ଼ାଇ ଆସନ୍ତ ଥୋକାୟେ ॥
ହାସେ ପଳାନ୍ତ ପଶୁବୃନ୍ଦ । ଶ୍ୱାନ କରନ୍ତ ଘୋର ନାଦ ॥
ଶୁକ ଆସନ୍ତ ମହାସୁଖେ । ନୃପତ୍ତି ଥିଲା ମନ ଦୁଃଖେ ।୬୧।
ଦେଖିଲା ଶୁକ ଆଗମନ । ଆନନ୍ଦ ହକାଶିଲା ମନ ॥
ହରଷେ ଉଠି ମହାରାୟେ । ମୁନି ଚରଣେ ପୂଜାକଲେ ॥
ଅମୂଲ୍ୟ ଆସନେ ବସାଇ । ଶ୍ରୀହରି ଧ୍ୟାୟେ ପୂଜଇ ॥
ବିନୟ ହୋଇ ପାଦେ ପଡ଼ି । ଉଠିଲା କର ପଟ ଯୋଡ଼ି ॥

ପରିକ୍ଷୀତ ଉବାଚ

ହେ ମୁନି ଶୁଣ ମୋ ଉତ୍ତର । ଧନ୍ୟ ଜୀବନ ଆଜ ମୋର ॥
ତୁମ୍ଭକୁ ଦେଖି ଚର୍ମ ଡୋଳେ । ଆନନ୍ଦ ମହାରସ ଜଳେ ॥
ମନ ଭାସିଲା ସୁଖ ପାଇଂ । କୃତାର୍ଥ କର ତପସାଇଂ ।୬୮।
ଦେଖ ମୋହୋର କାଳ ବଳେ । ଆତ୍ମା ନାଶିବ ମହୀତଳେ ॥
ତକ୍ଷକ ବିଷେ ନାହିଂ ଭୟେ । ଅଗ୍ୟାଂନ ପାପ ବାଧାକଲେ ॥
ସହଜେ ଅନିତ୍ୟ ସଂସାର । ନିକଟେ ଦେଖ ମୃତ୍ୟୁ ମୋର ॥
ନିର୍ମଳ ଗ୍ୟାଂନେ ମନ ଧରି । ଜନ୍ମ ମରଣ ଭୟ ହରି ।୭୨।
ଆତ୍ମାକୁ କରିବ ନିସ୍ତାର । ଉପାୟେ କର ମୁନିବର ॥
କେ ମୋତେ କରି ପାରେ ପାର୍ଥି । ଚରଣ ପବିତ୍ର ମୁଂ କାହିଂ ॥
କେ ମୋର ଆତ୍ମା ଦଇବତ । କୃତାର୍ଥ କରିବ ଜୀବତ ॥
ଯେଣେ ଯାଇବ ଦିବ୍ୟଗତି । ହିଗୁଣ କହ ବ୍ରହ୍ମପତି ॥
ଦେଖ ଅଶେଷ ଋଷିମାନେ । ଅଛନ୍ତ ମୋର ସନ୍ନିଧାନେ ॥

ଯେହ୍ବାଙ୍କ ମଧ୍ୟେ ଯେବେ ପର | ମୋର ସନ୍ଦେହ ଅପହର ||
ଯେମାନେ ବୋଲିବେ ପ୍ରମାଣ | ଜୀବନ କରିବ କାରଣ |୭୪|
ତୋ ବିନୁ ନାହିଁ ଅନ୍ୟ ଗତି | ନିର୍ମଳ ଜ୍ଞାନ କହଯତି ||
ନୃପତି ବିନୟ ବଚନ | ଶୁଣି ସନ୍ତୋଷ ଶୁକ ମନ ||
ବିସ୍ମିତ କରନ୍ତି ଅନ୍ତରେ | ଧନ୍ୟ ପରୀକ୍ଷ ନୃପ ବରେ ||
ପୂର୍ବେ ଯେହ୍ବାଙ୍କୁ ଚକ୍ରଧାରୀ | ଗର୍ଭ ଭିତରେ ରକ୍ଷାକରି ||
ଯେବେ ଯେହ୍ବାର କାଳ ଆସି | ନିକଟେ ବସିଅଛି ଗ୍ରାସି ||
ମରଣେ ନ କରଇ ଭୟ | ପଚ୍ଛରେ ଜ୍ଞାନ ରସମୟ ||
ଯେତ ନିର୍ମଳ ସାଧୁ ରାଜା | ସଭାର ମଧ୍ୟେ କଲି ପୂଜା ||
କହିବା କୃଷ୍ଣ ଜ୍ଞାନ ରସ | ମୁନି ହୋଇବେ ଶୁଣିତୋଷ |୮୭|
ଯେତେ ବିଗ୍ରହ ମହାଋଷି | କରୁଣା କଟାକ୍ଷ ପ୍ରକାଶି ||
ଚାହିଁଲେ ମୁନିଙ୍କ ବଦନ | ପ୍ରସନ୍ନ ଚିତ୍ତେ ତପୋଧନ ||
ଜ୍ଞାନ ଅର୍ଣ୍ଣବ ସୁଧାରସେ | ମୁନି ଜନଙ୍କ ମନ ଭାସେ ||
ବାଦ ବଚନ ଅପହରି | ଶୁକ ବଚନ ଚିତ୍ତେ ଧରି ||
ଋହିଲେ ପରମ ସନ୍ତୋଷେ | ରାଜାକୁ ଶୁକ ମୁନି ଭାଷେ ||

ଶୁକ ଉବାଚ

ହେ ନୃପବୃନ୍ଦ ଶିଖାମଣି | ଯାହା କହିଲୁ ରସବାଣୀ ||
ଅଶେଷ ମୁନିଙ୍କ ଅଗ୍ରତେ | କହଇ ଶୁଣ ଯେକ ଚିତ୍ତେ ||
ଅନନ୍ତ ଗୁଣ ଅଭିରାମ | ଯେ ନିତ୍ୟାନନ୍ଦ ସର୍ବକାମ ||
ଆଶା ବିଶ୍ରାମ ଯାର ନାମ | ଯେ ହରି ସର୍ବ ସୁଖ ଧାମ |୯୬|
ତାହାଙ୍କୁ ଭଜ ନିରନ୍ତରେ | ଶରଣ ଯାଅ ତା ପୟରେ ||
ସେ ଯେ ଅଭୟ ସୁଖ ଦାତା | ଅଖିଳ ଆତ୍ମା ନିସ୍ତାରନ୍ତା ||
ଶେଷ ଅଶେଷ ବେଦଫଳ | ଜାଣନ୍ତି ସର୍ବ ତପଶୀଳ ||
ଯେ ଯେ ଅଛନ୍ତି ଋଷିବୃନ୍ଦ | ଜ୍ଞାନ ଜଳଧି ପୂର୍ଣ୍ଣଚନ୍ଦ ||

ଜାଣନ୍ତି କୃଷ୍ଣ ଗମ୍ୟଂନ ରସ । ଯେବ୍ହାଙ୍କୁ ହୁଅ ତୁ ବିଶ୍ୱାସ ॥
ଶ୍ରୀକୃଷ୍ଣ ଗମ୍ୟଂନ ବିନୁ ଯେତେ । ଘୋଷା କରନ୍ତି ନାନା ମତେ ॥
ସେ ସବୁଭାବ ଦୂରେତେଜ । ଯେବ୍ହାନ୍ତ ଭାବେ କୃଷ୍ଣଭଜ ॥
ଶୁଣି ସନ୍ତୋଷ ମହୀପତି । ଆନନ୍ଦେ ବୋଲଇ ଭାରତି ॥

ଶ୍ରୀପରୀକ୍ଷିତ ଉବାଚ

ଶୁଣ ସକଳ ମୁନିଜନ । ସକଳ ଲୋକ ପ୍ରଜାମାନ ।୧୦୫।
ତୁମ୍ଭେ ସକଳେ ଜାଣିଥାଅ । ତକ୍ଷକ ଦଂଶୁ ମୋର ଦେହ ॥
କୃଷ୍ଣରେ ପଶିଲ ଶରଣ । ସମସ୍ତେ ବୋଲ ନାରାୟଣ ॥
ଏହି ଗଙ୍ଗା ଦେବୀ ତୁମ୍ଭେ ସାକ୍ଷୀ । ମୋର ଶରଣ ପଦ୍ମଆଖି ॥
ଆନନ୍ଦେ କରେ ହରିଧ୍ୱନି । ଦେଖନ୍ତି ସୁରସିଦ୍ଧ ମୁନି ॥
ସେ ରାଜା ଅଗ୍ରତେ ସକଳ । କହିଲେ ବ୍ୟାସସୁତ ବାଳ ॥
ସେ ରାସଲୀଳା ତୋ ଅଗ୍ରତେ । କହଇ ଶୁଣ ଯେବ୍ହକଚିତ୍ତେ ।୧୧୧।
ଶରଦ ପୂର୍ଣ୍ଣିମୀର ଦିନ । ଶ୍ରୀକୃଷ୍ଣ ବିଚାରନ୍ତି ମନ ॥
ମୋତେ ଭାବନ୍ତି ଗୋପୀଜନ । ପୂର୍ଣ୍ଣ କରିବି ତାଙ୍କ ମନ ॥
ଯେବ୍ହେ ବିଚାରି ଭଗବାନ । ବିଜୟେ କଲେ ବୃନ୍ଦାବନ ॥
ଦେଖନ୍ତି ବନ ପରିମଳ । ମଲ୍ଲିକା କୁସୁମ ଉଜ୍ଜ୍ୱଳ ॥
ଚଳତ ମକରନ୍ଦ ଧାର । ଶୀତଳ ବହଇ ସମୀର ॥
ମଧୁପ ବୃନ୍ଦ ମଧୁ ପାନେ । କ୍ରୀଡ଼ନ୍ତି କୁସୁମ କାନନେ ॥
କୁମୁଦ ଭ୍ରମଣ ଆକାଶେ । ଉଦୟ କିରଣ ପ୍ରକାଶେ ॥
ନିର୍ମଳ ପ୍ରାଚୀ ଦିଗ ରାମା । ବଦନ ଦିଶଇ ରଙ୍ଗିମା ॥
ସ୍ୱାମୀଙ୍କ ଦେଖି ଚିରକାଳେ । ଯେସନ୍ତେ ମାନିନୀ ମାନ ବଳେ ॥
ଦିଗ ସୁନ୍ଦରୀ ଭାଲତଟେ । ଚନ୍ଦନ ବିନ୍ଦୁ ପରକଟେ ।୧୨୧।
କିରଣେ ତରଳ ଚନ୍ଦ୍ରିକା । ସିନ୍ଧୁ ବଦନୀ କୁମୁଦିକା ॥
ସଙ୍କୋଚେ ମୁଦ୍ରିତ ପଦ୍ମିନୀ । ଶୃଙ୍ଗାର ରସେ ସେ ମାନିନୀ ॥

ଚକୋର ପକ୍ଷୀ ମହାସୁଖୀ । ବିଚ୍ଛେଦେ ଚକ୍ରବାକ ଦୁଃଖୀ ॥
ସୋମ ବଲ୍ଲଭ ତାବକରେ । ଲୁଚିଗଲେ ଥିଲା ବନାନ୍ତରେ ॥
ଚନ୍ଦ୍ର କରଣେ ତେଜ ବମ୍ବ । କାନ୍ତ ବଦନ କାନ୍ତା ଗୃହଂ ॥
ଯେହ୍ନେ ସୁଖଉ ଅଭିମାନ । ଆନନ୍ଦ ସର୍ବଭୂତ ମନ ॥
ଅଖଣ୍ଡ ପୂର୍ଣ୍ଣ ଶଶଧର । ଆକାଶ ଦିଶଇ ସୁନ୍ଦର ॥
କମଳା ବଦନ ମଣ୍ଡଳ । ଅରୁଣ କୁଙ୍କୁମେ ପଙ୍କିଳ ।୧୨୯।
ତେହ୍ନେ ଦିଶଇ ଚନ୍ଦ୍ର ପ୍ରଭା । ଲକ୍ଷ୍ମୀ ବଦନ ଯେହ୍ନେ ଶୋଭା ॥
ଚନ୍ଦ୍ରକୁ ଦେଖି କୃଷ୍ଣ ମନ । ମଦନ ଭରେ ହୋଇଲେ ଛନ୍ନ ॥
ସିନ୍ଧୁ ନନ୍ଦନୀ ମୁଖ ଜିଣି । ସୁନ୍ଦର ପୂର୍ଣ୍ଣ ନିଶାମଣି ॥
ଚନ୍ଦ୍ର କରଣେ ବୃନ୍ଦାବନ । ସୁନ୍ଦର ଦିଶଇ ପୂଜନ ॥
କୁସୁମ ଲତା ବୃକ୍ଷ ତରୁ । ଭୃଙ୍ଗ କୋକିଳ ନାଦ ଗୁରୁ ॥
କାନନ ଶୋଭା ଦେଖି ହରି । କଦମ୍ବ ମୂଳେ ଭଜେ କରି ॥
କୋଟି ମଦନ ରୂପ ନିଧି । କରିବା ଲାବଣ୍ୟ ବାରିଧି ॥
ବଂଶୀବଦନ ମହାଶୋଭା । ତ୍ରିଭଙ୍ଗୀ ଛନ୍ଦେ ହୋଇ ଉଭା ॥
ସେ ହରି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

ଇତିଶ୍ରୀମଦ୍ ପରମରହସ୍ୟେ ଶୈବାଗମେ ଶ୍ରୀକୃଷ୍ଣ ବୃନ୍ଦାବନେ-
ବିଜୟେ ନାମ ଏକବିଂଶୋଽଧ୍ୟାୟଃ ।

## ଦ୍ୱାବିଂଶ ଅଧ୍ୟାୟ

### ଶ୍ରୀଈଶ୍ୱରଉବାଚ

କନ୍ଦର୍ପ ଚନ୍ଦ୍ର ଚୂଡ଼ାମଣି । କଦମ୍ବ ମୂଳେ ବେଣୁପାଣି । ୧ ।
ମାୟା ବିସ୍ତାରି ଯୋଗ ବଳେ । ରଜନୀ କଲେ ଶରତକାଳେ ॥
ମୋହିଲେ ବ୍ରହ୍ମାଣ୍ଡ ସକଳ । କରୁଣା ସିନ୍ଧୁ ନନ୍ଦ ବାଳ ॥
ମାୟା ପ୍ରକୃତି ଆଶ୍ରେ କରି । ବ୍ରହ୍ମାଣ୍ଡ ମଧ୍ୟେ ଅବତରି ॥
ଲୀଳାକରନ୍ତ ମାୟା ବଳେ । ଯଶ ରଖନ୍ତ ମହୀତଳେ ॥

ସେ କଥା ଶୁଣି ଭାନୁ ସୁତେ । ମାୟା ମଜିଲେ ମୂର୍ତ୍ତିବନ୍ତେ ॥
ସେ ମାୟା ଚନ୍ଦ୍ରସେନ ଘରେ । ଥିଲଟେ ସଂସାର ବେଶରେ ।୭॥
କୃଷ୍ଣ ଚରିତ୍ର ଜାଣି ମନେ । ବେଗେ ମିଳିଲେ ବୃନ୍ଦାବନେ ॥
ଧନ୍ୟ ସେ ମହା ଯୋଗମାୟା । ବ୍ରହ୍ମାଣ୍ଡେ ପୂରିଲା ତା କାୟା ॥
ଆକର୍ଷି ଚତୁର୍ଦ୍ଦଶ ଲୋକ । ସକଳ ପ୍ରାଣୀଙ୍କ ବିବେକ ॥
ଗ୍ୟାଂନ ହାରିଲେ ମୋହବଳେ । ଅଚେତ ଇନ୍ଦ୍ରିୟ ସକଳେ ॥
ନଜାଣି କାଳଚକ୍ର ଗତି । ମାୟାରେ ଆଚ୍ଛନ୍ନ ହୋଅନ୍ତି ॥
ବ୍ରହ୍ମା ଈଶ୍ୱର ଆଦି ଯେତେ । ଇନ୍ଦ୍ରାଦି ଅମର ସମସ୍ତେ ॥
ଅଶେଷ ଲୋକର ଜନମା । ଯେ ମାୟା ଈଶ୍ୱର ଭାବିନୀ ॥
ମାତା ଯେସନେ ପୁତ୍ରମନ । ନିଦ୍ରାରେ କରେ ଅଚେତନ ।୧୫।
ଶୟନେ ନଦେଖି କୁମର । କରନ୍ତି ଗୃହ କର୍ମସାର ॥
ସେ ମାୟା ସର୍ବ ଚିତ୍ତ ହରି । କୃଷ୍ଣ ସେବାରେ ମନ ଧରି ॥
ଅଶେଷ ବ୍ରହ୍ମାଣ୍ଡ ବିଗ୍ରହ । ସଚରା ଚର କଲା ମୋହ ॥
ଶରଦ ପୂର୍ଣ୍ଣିମୀ ରଜନୀ । ହୋଇଲା ବ୍ରହ୍ମାର ଯାମେନୀ ॥
ସଂସାରେ ନଜାଣିଲେ କେହି । ବ୍ରହ୍ମାଣ୍ଡ ହୁଟେ ସର୍ବ ଦେହୀ ॥
ଅଦ୍ଭୁତ ଶୁଣି ମାହେଶ୍ୱରୀ । ଆନନ୍ଦେ ସ୍ୱାମୀଙ୍କି ପଚାରି ॥

### ଶ୍ରୀପାର୍ବତୀଉବାଚ

ଭୋନାଥ ଶୁଣ ମୋର ବାଣୀ । ଯେ ମାୟା ତ୍ରିଗୁଣ ଧାରେଣୀ ॥
ମୋହିଲା ଅଶେଷ ଜଗତ । ବଳେ ହରିଲା ସର୍ବଚିତ୍ତ ॥
ଯେ କଥା ବିଚାର ନୋହଇ । ମାୟାରେ ଅଚେତନ ହୋଇ ॥
ଯେବେ ହରିଲେ ସର୍ବ ଜୀବ । ଅନିତ୍ୟ ଦେହର ସ୍ୱଭାବ ॥
କର୍ମ୍ମା ରହିଲେ ଚିରକାଳେ । କାଳକୁ ନ ଗ୍ରାସିଲା ବଳେ ।୨୭।
ଯେ କଥା ବିଷମ ସନ୍ଦେହ । ମାୟା ସଂସାର ମାୟା ମୋହ ॥
ବ୍ଳର ସହସ୍ର ଯୁଗ ଗଣି । ଯେ ବ୍ରହ୍ମରାତ୍ର ପରିମାଣି ॥

ଆବର ଜଙ୍ଗମ ସବୃତେ । କୀଟ ପତଙ୍ଗ ଜନ୍ତୁ ଯେତେ ॥
ନଳ ଅନଳ ଜଳଚର । କେମନ୍ତେ ରଖିଲେ ଶରୀର ॥

ସ୍କନ୍ଦ ଉବାଚ

ହସି ବୋଲନ୍ତି ଦେବ ରୁଦ୍ର । ନିତ୍ୟ ବିନୋଦ କୃଷ୍ଣଚନ୍ଦ୍ର ॥
ନିତ୍ୟ ବିଳାସ ରୂପ ଧନ । ଶ୍ରୀବୃନ୍ଦା କାନନେ ବିହର ॥
କୃଷ୍ଣ ଲାବଣ୍ୟ ତେଜ ରାଶି । ଚଉଦ ଭୁବନେ ପ୍ରକାଶି । ୩୬ ।
କାଳ ରହିଲା ଅପସରି । ମରଣ କାହାରୁ ନସ୍ତରି ॥
ଯେ ମୋହ ଭୟ ଲଜ୍ଜା ଆଦି । କ୍ଷୁଧା ପିପାସା ସର୍ବ ବ୍ୟାଧି ॥
ସଂସାରେ ନଗ୍ରାଶିଲେ ପଶି । ତେଣୁ ପ୍ରାଣୀଙ୍କ ଭୟ ନାଶି ॥
ସଚରାଚର ଯଥା ସ୍ଥାନେ । ରହିଲେ ନିତ୍ୟଗ୍ରହ ଧ୍ୟାନେ ॥
ଆନନ୍ଦେ ଦେବ ବେଣୁପାଣି । ମୋହନ ବଂଶୀ କରେ ଧରି ॥
ଅଧରେ କଲେ ବେଣୁସ୍ୱନ । ମୋହିଲେ ଗୋପୀଙ୍କର ମନ ॥
ସେ ବେଣୁ ଧ୍ୱନି ଭିନ୍ନ ପୁରେ । ପୂରିଲା ବିନ୍ଦୁ ଚରାଚରେ ॥
ପ୍ରଥମେ ଭେଦି ମେଘମାଳ । ପୂରିଲା ଆକାଶ ମଣ୍ଡଳ । ୪୧ ।
ସୂର୍ଯ୍ୟମଣ୍ଡଳ ଭେଦିଗଲା । ଧ୍ରୁବଲୋକରେ ବିଶ୍ରାମିଲା ॥
ସନକ ଆଦି ମୁନି ମାନେ । ଥିଲେ ଅଷ୍ଟାଙ୍ଗ ଯୋଗଧ୍ୟାନେ ॥
ଧ୍ୟାନ ଭଜିଲା ତାହାଙ୍କର । ଗ୍ରହ ମଣ୍ଡଳ ହୋଇଲେ ଥିର ॥
କମ୍ପିଲା ବ୍ରହ୍ମାର ଆସନ । ଚମକ୍ରି ଚତୁର ବଦନ ॥
ଦେବ ମଣ୍ଡଳ ଶିବଲୋକ । ଇନ୍ଦ୍ରାଦି ଅମର ନାୟକ ॥
ଯକ୍ଷ କିନ୍ନର ନିଶାଚର । ସିଦ୍ଧ ଗନ୍ଧର୍ବ ବିଦ୍ୟାଧର ॥
ଚକିତ ଶୁଣି ବଂଶୀ ଘୋଷ । ଆନନ୍ଦ ଲୋକ ଚତୁର୍ଦ୍ଦଶ ॥
ପାତାଳ ପୁରେ ନାଗରାଜେ । ହୋଇଲେ ପରମ ବିସ୍ମୟେ ।
କୃଷ୍ଣ ମୁରଲୀ ଧ୍ୱନି ଶୁଣି । ଆନନ୍ଦ ବଳି ନୃପମଣି ॥
ଅନନ୍ତ ଶୟନେ ମୁରାରି । ଚଳିତେ ନିଦ୍ରା ଅପହରି । ୫୧ ।

ସମୁଦ୍ର ଲହରୀ ନଷ୍ଟଳ । ସ୍ଥକତ ପ୍ରବାହ ସକଳ ॥
ସେମନ୍ତେ ଅଶେଷ ଭୁବନ । ଆନନ୍ଦ ଶୁଣି ବଂଶୀ ସ୍ୱନ ॥
ଶ୍ରୀକୃଷ୍ଣ ବଂଶୀ ଯେତେବେଳେ । ଶବଦ ଶୁଭିଲା ଗୋକୁଳେ ॥
ଗୋପାଳ ମାନେ ଗୋ ଦୁହନ୍ତି । ବତ୍ସପ୍ରେ ସ୍ତନ ନପିବନ୍ତି ॥
ଆନନ୍ଦ ଜଳେ ସର୍ବମନ । ଭାସିଲା ହୋଇ ଅଚେତନ ॥
ଗୋପ ନନ୍ଦନୀ ଗୃହ ଧର୍ମେ । ଥିଲେ ବିଷୟ ଜଡ଼ ଭ୍ରମେ ॥
ଶୁଣିଲେ ମୁରଲୀ ଶବଦ । ହୋଇଲେ ପରମ ଆନନ୍ଦ ॥
ସେ ବଂଶୀ ନାଦ ବୈକୁଣ୍ଠ ବେଳ । ବିସ୍ତାରେ ଅନଙ୍ଗ କଲ୍ଲୋଳ ।୫୯।
ଶ୍ରବଣେ ଶୁଣି ଗୋପୀଜନ । କୃଷ୍ଣରେ ନବେଶିଲେ ମନ ॥
ଅନଙ୍ଗ ବାଧା ସମାକୁଳେ । ବ୍ରଜ କୁମାରୀ ନଶାକାଳେ ॥
ମନ୍ଦିରେ ରହି ନପାରିଲେ । କୃଷ୍ଣେ ଅର୍ପଣ ଆତ୍ମାକଲେ ॥
ଆନନ୍ଦେ ହୋଇଲେ ବାହାର । ପ୍ରାଣ ବଲ୍ଲଭ ବେଣୁଧର ॥
ଯା ପାଦ ପଦ୍ମ ଦ୍ୱବାନଶି । ଧ୍ୟାନେ ଚିନ୍ତନ୍ତି ଶୁଭକେଶୀ ॥
ସେ ପ୍ରାଣନାଥ ବନ ଘୋରେ । ମୁରଲୀ ବଜାଇ ଅଧରେ ॥
ଯେ ବଂଶୀ ନାଦେ ଚରାଚର । ମଦନେ ହୋଇଲେ କାତର ॥
ସେ ଧ୍ୱନ ଶ୍ରୁତି ପଥେ ଶୁଣି । ବାଭୁଳ ବ୍ରଜ ରମଣୀ । ୬୨ ।
ସକଳେ ଗଲେ ବୃନ୍ଦାବନେ । କୃଷ୍ଣ ଅଛନ୍ତି ଯେଉଁ ସ୍ଥାନେ ॥
କେ ଦୁହୁଁଥିଲେ ଗାଈ ମାନ । ଶୁଣିଲେ କର୍ଣ୍ଣେ ବେଣୁସ୍ୱନ ॥
ଦୋହନ ପାତ୍ର ତଳେ ଥୋଇ । ଆସନ୍ତି ବାଇ ପ୍ରାପ୍ତ ହୋଇ ॥
ଅଗ୍ନୀ ସଂଜାଳ ମହାନ୍ୟାସେ । କେ ପାକ କରନ୍ତି ଗୋରସେ ॥
ଶ୍ରବଣେ ଶୁଣି ବଂଶୀ ଗୀତ । ମଦନେ ହୋଇଲେ ଚକିତ ॥
ଗୋରସ ନକଲେ ସଂଗ୍ରହ । ବନେ ଧାଇଂଲେ ହୋଇ ମୋହ ॥
କାହାର କୋଳେ ପୁତ୍ରଥିଲା । କ୍ଷୀର ନଦେଇ ବନେ ଗଲା ॥
କେ ପତି ସେବା ଗଲା ତେଜି । ଅନ୍ନକେ ନପାରିଲା ଭୁଞ୍ଜି ॥

କେ ନେତ୍ରେ ରଞ୍ଜଇ ଅଞ୍ଜନ । ଧାମଇ ଶୁଣି ବଂଶୀ ସ୍ୱନ ।୭୬।
କେ ଅଙ୍ଗେ କୁଙ୍କୁମନ୍ତ ଘଷି । ମାର୍ଜନା ନକରି ସୁକେଶୀ ।।
ବନେ ଗମଇ ମତ୍ତ ହେଲେ । କେଶ ବସନ ଅସମ୍ଭାଳେ ।।
ଗୃହେ ବସାଇ ସୁତ ପତି । କେ ଶାଳି ଅନ୍ନ ପରଷନ୍ତି ।।
ମୁରଲୀ ଧ୍ୱନି ଶୁଣି କର୍ଣ୍ଣେ । ଅନ୍ନ ନଦେଇ ଗଲେ ବନେ ।।
ଯେସନେ ନିମ୍ନମୁଖି ଜଳ । ନବନ୍ଧି ନୋହଇ ନିଶ୍ଚଳ ।।
ତେସନ ଭାବେ ଗୋପୀଜନ । ଗମନ୍ତି କୃଷ୍ଣ ସନ୍ନିଧାନ ।।
ପ୍ରେମେନ୍ତ ଯୁଥ ଯୁଥ ହୋଇ । ବ୍ରଜବାହାର ସର୍ବେ ଗୋଇ ।।
ଦେଖି ସକଳ ଗୁରୁଜନେ । ତାତ ଜନନୀ ପତିମାନେ ।୮୪।
ଭ୍ରାତବାନ୍ଧବ ଇଷ୍ଟ ପ୍ରୀତି । ବନ ଗମନ ନିଷେଧନ୍ତି ।।
ବୋଲନ୍ତି କମ୍ପା ଯିବ ବନ । ରଜନୀ କାଳେ ବଧୂଗଣ ।।
ଯେତ ନୋହଇ ଭଲ କାର୍ଯ୍ୟ । କୁଳକୁ ଉପୁଜିବ ଲାଜ ।।
ଶୁଣି ବୋଲନ୍ତି ଗୋପାଳୁଣୀ । ଆମ୍ଭେ ଆସିବୁ ସେହିକ୍ଷଣି ।।
ବୃନ୍ଦାକାନନ ଶୋଭା ଦେଖି । ଆମ୍ଭେ ଯାଉଛୁ ସର୍ବ ସଖୀ ।।
ସେବକ ତ ଯାଉନାହୁଁ ଆମ୍ଭେ । କମ୍ପା ନିଷେଧ କର ତୁମ୍ଭେ ।।
କୃଷ୍ଣ ମୋହିଲେ ସର୍ବ ଚିତ୍ତ । ବିଶେଷ ମାୟାରେ ମୋହିତ ।।
ଗୋପାଳେ ଦେଖନ୍ତି ନୟନେ । ବନେ ଚଳନ୍ତି ବଧୂଜନେ ।୯୨।
ମେଳ ହୋଇଲେ ଦୁଇ ଗୃହ । ହରଷେ ବଚନ ପଗୃହ ।।
ରାଧା ବୋଲନ୍ତି ସଙ୍ଗାତୁଣୀ । ବନେ ବଜାଏ ବେଣୁପାଣି ।।
କୋଟି କନ୍ଦର୍ପ ରୂପ ସାର । ହେଲେ ମୋହର ଚିତ୍ତ ଚୋର ।।
ନିର୍ଜନ ଘୋର ବନ ଦେଶେ । ନିଶାରେ ଯିବା ତାର ପାଶେ ।।
ଆମ୍ଭେ ସକଳ ଗୋପବାଳୀ । ନବ ତରୁଣୀ ରୂପଶାଳୀ ।।
ସେ ନବ ମଦନ ସୁନ୍ଦର । ଦେଖିକେ ହୋଇବା କାତର ।।
ବସ୍ତ୍ରେ ଯାଅ ଘୋର ବନେ । କିଏବ ଅଛୁ କାହାମନେ ।।

ଶୁଣି ବୋଲନ୍ତି ସର୍ବସଖୀ । ଯାହା କହିଲ ଚନ୍ଦ୍ରମୁଖୀ ॥
ଆମ୍ଭ ନନ୍ଦକୁ ଯେଉଁ ଥିଲ । ବର ପାଇଲ ନନ୍ଦସୁତ ।୧୦୧।
କ୍ରୀଡ଼ା କରିବୁ ତାର ସଙ୍ଗେ । ଶ୍ରୀବୃନ୍ଦାବନେ ନାନାରଙ୍ଗେ ॥
ସେ ଆମ୍ଭ ଜୀବନ ଠାକୁର । ପ୍ରାଣ ବଲ୍ଲଭ ବେଣୁଧର ॥
ତା ରୂପ ଦେଖିବୁ ନୟନେ । ଆଗ୍ୟାଂ ଶୁଣିମୁ ବେନି କର୍ଣ୍ଣେ ॥
ତା ପାଦପଦ୍ମେ ଦାସୀପଣେ । ସେବା କରିବୁ ଅନୁକ୍ଷଣେ ॥
ଶୁଣି ସଚନ୍ଦ୍ରାକ୍ଷ ଭାନୁବାଳୀ । ନମ୍ର ବଚନେ ଗୋପବାଳୀ ॥
ମିଳଲେ ବୃନ୍ଦାବନ ଦେଶେ । କଦମ୍ବ ମହୀରୁହ ପାଶେ ॥
କୃଷ୍ଣଙ୍କୁ ବେଢ଼ି ସବୁ ଗୋଇ । ଚନ୍ଦ୍ର ପ୍ରତିମା ପ୍ରାୟେ ହୋଇ ॥
ଆନନ୍ଦେ ରହିଲେ ସକଳେ । ଘନେ ଯେସନେ ବିଦ୍ୟୁ ମାଳେ ॥
ମର୍କତ ମହୀରୁହ ବେଢ଼ି । କାଞ୍ଚନ ଲତା ତାକୁ ଜଡ଼ି ।୧୧୦।
ବୃନ୍ଦାକାନନେ କୃଷ୍ଣ ପାଶେ । ଗୋପନନ୍ଦନୀ ସ୍ଥିରୁ ବେଶେ ॥
ନକ୍ଷତ୍ର ମଧ୍ୟେ ଯେସନେ ଶଶୀ । ଗୋପୀଙ୍କ ମଧ୍ୟେ ବୃନ୍ଦାବଶୀ ॥
ରସିକା ଅମୀୟ ଲହରୀ । ନବୀପ ଲତା ସୁକୁମାରୀ ॥
ପୂର୍ବ ସ୍ଥିର ଗୋପୀ ଥିଲେ ଘରେ । ମୁରଲୀ ଶୁଣିଲେ କର୍ଣ୍ଣରେ ॥
କାତରେ କମ୍ପେ ନିଜ ତନୁ । ଅଙ୍ଗେ ବିନ୍ଧିଲା ପୁଷ୍ପ ଧନୁ ॥
ହାର ନ ପାଇ ବଶ ହୋଇ । ମନରୁ ନ ପାରିଲେ ଯାଇ ॥
ଚକ୍ଷୁ ବୁଜିଲେ ପ୍ରେମଭରେ । ପରମା ନନ୍ଦ ନିରାକାରେ ।୧୧୭।
ଆକୁଳ ମନେ ଜଳେ ଲୟେ । ହୋଇଲେ ଖଣ୍ଡିଲେ ସବୁ ଭୟେ ॥
ଆନନ୍ଦେ ବୁଜିଲେ ନୟନ । ଧ୍ୟାନେ ଦେଖିଲେ ଭଗବାନ ॥
କଉଟି କୁଣ୍ଡଳ କଙ୍କଣ । କିଙ୍କିଣୀ ମୁଦ୍ରିକା ଭୂଷଣ ॥
ହାର କେୟୁର ରତ୍ନମାଳ । କନକ ପିଙ୍ଗଳ ନିର୍ମଳ ॥
ବଦନ କୋଟିଚନ୍ଦ୍ର ଜିଣି । ମଧୁର ବଂଶୀ ଶୋଭେ ପାଣି ॥
କୋଟି ମଦନ ରୂପଜିଣି । ଧ୍ୟାନେ ଦେଖିଲେ ଶୁଭ୍ରଜଣି ॥

ନିତମ୍ବେ କଲେ ଆଲିଙ୍ଗନ । ଆନନ୍ଦେ ହୋଇଲେ ନିମଗ୍ନ ॥
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ବିରହ । ଅନଳେ ଦହିଲେ ବିଗ୍ରହ ॥
ଅଶେଷ ଜନ୍ମ ଦୁର୍ବାସନା । ପାପ ଛେଦିଲେ ଗୋପାଙ୍ଗନା ॥
କୃଷ୍ଣ ଲାବଣ୍ୟ ସୁଧାରସେ । ଆନନ୍ଦମୟ ରମ ଭାସେ ।୧୬୭।
ଭାବେ ଆତ୍ମାକୁ କଲେ ଲୟେ । ଛିଣିଲେ ଜନ୍ମମୃତ୍ୟୁ ଭୟେ ॥
ଶ୍ରୀକୃଷ୍ଣ ଜାର ରସେ ମନ । ଅଚିନ୍ତ୍ୟ ସୁଖେ ଭଗବାନ ॥
ଯୋଗୀ ମୋହନ ହିର୍ଣ୍ୟପତି । ଲଭିଲେ ଗୋକୁଳ ଯୁବତି ॥
ଶୁଣି ବୋଲନ୍ତି ହେମବତୀ । କେ ପ୍ରାଣନାଥ ପଶୁପତି ॥

ଶ୍ରୀପାର୍ବତୀ ଉବାଚ

କୃଷ୍ଣ ମୂରତି ରସ ଧାମ । ଦେଖିଲେ ନିନ୍ଦଇ କୋଟି କାମ ॥
ସେ ରୂପ ଦେଖି ଗୋପୀଜନେ । ହରଷେ ବିଭୋରିଲେ ମନେ ॥
ଯେହାର ଭୁଲେ ଜାରରସେ । ସମ୍ପୂର୍ଣ୍ଣ କାମ ଅଭିଳାଷେ ॥
କ୍ରୀଡ଼ା କରିବା ହିବାନିଶି । କୃଷ୍ଣ ଲାବଣ୍ୟ ଧାମରାଶି ॥
ଯେତେ ବିହାର କୃଷ୍ଣ ଅଙ୍ଗେ । ମନ ନିବେଶି କାମ ଯୋଗେ ॥
ବ୍ରହ୍ମ ବୋଲିଣ ନ ଜାଣିଲେ । ଭବ ସଙ୍କଟୁ ନିସ୍ତରିଲେ ॥
ଶ୍ରୀକୃଷ୍ଣ କଲେ ଅନୁଗ୍ରହ । ସଂସାରେ କରିବେ ସନ୍ଦେହ ॥
ସେ ପ୍ରଭୁ ଜାର ପତି ଭାବେ । ଗୋପୀଙ୍କି ନିସ୍ତାରିଲେ ଯେବେ ॥
ସେ ଭାବ କାହ୍ନ ମୂଳ ଧର । ମୋହ ସଂଶୟ କର ଦୂର ॥

ଶ୍ରୀ ଶିବଉବାଚ

ହର ବୋଲନ୍ତି ଶୁଣ ପ୍ରିୟେ । ମନରେ ନକର ସଂଶୟେ ।୧୪୨।
ଯେ ପ୍ରଭୁ ଜଗତ ଈଶ୍ୱର । ଶରଣ ଜନଙ୍କ ସୋଦର ॥
ଦାସ ବତ୍ସଳ ଦୟାନିଧି । ତା ପଦ୍ମ ଚରଣେ ଆରାଧି ॥
ଜାର ଭାବରେ ଦେଇମତି । ଗୋପୀ ଲଭିଲେ ହିର୍ଣ୍ୟଗତି ॥
ସଂଶୟ ନକର ଗୋ ମନେ । ପୂର୍ବେ ବଧିତ ଦୁଷ୍ଟ ଜନେ ॥

ଯେ ଦୁର୍ଯୋଧନ ଶିଶୁପାଳ । କଂସାଦି ରାକ୍ଷସ ସକଳ ॥
ବଇରି ଅନୁବନ୍ଧ ମତେ । ଶ୍ରୀକୃଷ୍ଣ ଚିନ୍ତା କରି ଚିତ୍ତେ ॥
ବୋଲନ୍ତି ପୌରୁଷ ବଚନ । ଲଭନ୍ତି ମୋକ୍ଷ ପଦେ ସ୍ଥାନ ॥
ଯେ କୃଷ୍ଣ ଚନ୍ଦ୍ର ନିତ୍ୟଦେହୀ । ଯାହାର ଆଦିଅନ୍ତ ନାହିଁ ॥
ପ୍ରକାଶ ଜନ ନିସ୍ତାରଣେ । ଯେ ତାଙ୍କୁ ଭଜେ ଅନୁକ୍ଷଣେ ॥
ସେହି ସଂସାର ତମନାଶେ । ବନ୍ଧ ନୋହଇ ମୋହ ପାଶେ ॥
ଜୀବନ କରଇ ନିର୍ମଳ । ହେଲେ ତରଇ ଭବଜଳ ॥
କାମେ ଭଜିଲେ ଗୋପ ନାରୀ । କ୍ରୋଧରେ ଶିଶୁପାଳ ତରି ॥
ଭୟରେ ନିସ୍ତରିଲା କଂସ । ସ୍ନେହରେ ନନ୍ଦ ବୃଷ୍ଣି ବଂଶ ॥
ସହୃଦ ଭାବେ ପଣ୍ଡୁସୁତେ । ମୁନିଏ କାନ୍ତ ଭାବ ମତେ ॥
ଯେ ଯଥାଭାବେ ଚିନ୍ତା କରି । ସେ ଭାବେ ସେ ଜନ ନିସ୍ତରି ॥
ଯେ କୃଷ୍ଣ ସର୍ବପତି ପ୍ରଭୁ । ହର୍ମ୍ୟ ମୂର୍ତ୍ତି ବ୍ରହ୍ମ ପରାନନ୍ଦ ॥
ତା ପଦ୍ମ ଚରଣ ବିଶ୍ୱାସେ । ଗୋପୀ ତରିଲେ ମୋହପାଶେ ॥
ଯେଣୁ କଥା ନୋହଇ ବିଚିତ୍ର । ଯା ନାମ ପରମ ପବିତ୍ର ।୧୬୦।
ପୂର୍ବେ ବହୁତ ତପ କରି । ଗୋପୀକା ରୂପେ ଅବତରି ॥
ବ୍ରହ୍ମରେ ଭାବ ଜାର ରସ । ଲୋକେ ରଖିଲେ ପୁଣ୍ୟ ଯଶ ॥
ସେ ଗୋପୀଜନଙ୍କ ଚରଣେ । ମନ ନିବେଶି ଅନୁକ୍ଷଣେ ॥
ବ୍ରାହ୍ମଣ ଜଗନ୍ନାଥ ଗାଇ । ସ୍ୱଜନେ ଶୁଣ ଚିତ୍ତ ଦେଇ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ଗୋପୀକାନୁଭାବ ବର୍ଣ୍ଣନେ ରାସଲୀଳାୟାଂ ନାମ ଦ୍ୱିବିଂଶ ଅଧ୍ୟାୟଃ ।

## ତ୍ରୟୋବିଂଶ ଅଧ୍ୟାୟ

### ଶ୍ରୀଈଶ୍ୱର ଉବାଚ

ରୁଦ୍ର ବୋଲନ୍ତି ଶୁଣ ଉମା । କୃଷ୍ଣ ସମୀପେ ଗୋପରାମା ॥
ପରମାନନ୍ଦ ସ୍ୱରୂପ ବ୍ରହ୍ମ । ଭାବେ ଅଛନ୍ତି ସର୍ବେ ରହି ॥

ନବ କିଶୋର ରୂପ ରାଶି । ଲାବଣ୍ୟ ଜଳେ ତନୁ ଭାସି ॥
ନୟନ ମନ ଏକ ସଙ୍ଗେ । ପ୍ରବେଶ କରି କୃଷ୍ଣ ଅଙ୍ଗେ ॥
ଆନନ୍ଦେ ରହିଲେ ରମଣୀ । କୃଷ୍ଣ କହନ୍ତି ପ୍ରିୟ ବାଣୀ ॥

ଶ୍ରୀଭଗବାନୁବାଚ

ହେ ମହା ସତୀ ଗୋପବାଳୀ । ସୁପୁଣ୍ୟ ବନ୍ତୀ ଭାଗ୍ୟଶାଳୀ ।୭।
ତୁମେ ସକଳ କୁଳ ବଧୂ । ଧାର୍ମିକ ମହାଶୀଳ ସାଧୂ ॥
କିମ୍ପା ଆଇଲେ ଘୋରବନେ । କାହାର ବଚନରେ ମନେ ॥
ଗୋପେ କି ପଡ଼ିଲା ପ୍ରମାଦ । ସଂଶୟ ଭେଦ ମନଖେଦ ॥
ଘୋର ଗହନ ନିଶାକାଳେ । ସର୍ବ ଯୁବତୀ ଯେକମେଳେ ॥
କିମ୍ପା ତେଜିଲ ଗୃହବାସ । କୁଶଳେ ମିଳିଲ ମୋ ପାଶ ॥
କି କାର୍ଯ୍ୟେ ଅଇଲ ଯେତିକି । କି ପ୍ରୀତି କରିବି ତୁମ୍ଭଙ୍କୁ ॥
ଦେଖ ରଜନୀ ଘୋର ରୂପୀ । କାନନ ଘୋର ମତ୍ତ୍ୟବ୍ୟାପୀ ॥
ବ୍ୟାଘ୍ର ମହିଂସ କଣ୍ଠୀରବ । ଗଜ ବରାହ ବନଜୀବ ।୧୪।
ସର୍ପ ନକୁଳ ବନେଚର । ଗୃଧ୍ର ଶକୁନ ମୃଗଦ୍ୱୟ ॥
ବହୁତ ଛନ୍ତି ଦୁଷ୍ଟ ଜନ୍ତୁ । ଅନେକ ମତେ ଭୟ ହେତୁ ॥
କାନନ ମଧ୍ୟେ ନିଶାଭାଗେ । କାମେଣୀ ବୃନ୍ଦ ଯେନି ସଙ୍ଗେ ॥
ଯେକାନ୍ତେ ଥିବା ନ ଯୋଗାଇ । ଯେକଥା ଉଚିତ ନୋହଇ ॥
ତୁମ୍ଭେ ଗୋ ଯାଅ ଗୋପପୁରେ । ନରହ ଅରଣ୍ୟ ଭିତରେ ॥
ପିତା ଜନନୀ ଭ୍ରାତା ସୁତ । ବନ୍ଧୁ ସୁହୃଦ ଇଷ୍ଟ ମିତ୍ର ॥
ତୁମ୍ଭଙ୍କୁ ନଦେଖି ନୟନେ । ବିକଳ ହୋଇ ଭୟମନେ ॥
ଟଳିବେ ଦଶଦିଗ ଭୂମି । ବନ୍ଧୁ ହୋଇବେ ପଥଶ୍ରମି ।୨୨।
ତାହାଙ୍କୁ ଭୟ ନ କରାଅ । ନିଜ ମନ୍ଦିରେ ବେଗେ ଯାଅ ॥
ଯେବେ ଅଇଲ ବନ ଦେଖି । ଅରଣ୍ୟ ଦେଖ ସର୍ବ ସଖୀ ॥
କୁସୁମ ବନ ଗିରିପାଶେ । ଭ୍ରମର ଯୂଥ କଳ ଘୋଷେ ॥

କରନ୍ତି ମକରନ୍ଦ ପାନ । ଦ୍ରୁମ ଦିଶନ୍ତି ଶୋଭାବନ ॥
ନବ ପଲ୍ଲବ ରଙ୍ଗ ଦଳ । କୁସୁମ ଲତା ପରିମଳ ॥
ଚନ୍ଦ୍ର କିରଣେ ତମ ନାଶେ । ସୁନ୍ଦର ବନ ଭୂମି ଦିଶେ ॥
କାଳିନ୍ଦୀ ସଲିଳ ଶିଶିର । ସୁଗନ୍ଧ ବହଇ ସମୀର ॥
କଞ୍ଜ କଇରବ କହ୍ଲାର । ରଙ୍ଗ କମଳ ଇନ୍ଦୀବର ।୩୦।
ସେହାଙ୍କ ସୁଗନ୍ଧ ପ୍ରକଟେ । ପୁଷ୍ପ କାନନ ନଘାତଟେ ॥
ଦେଖ ନିର୍ମଳ ସଲକତ । କୁନ୍ଦ କର୍ପୂର ଇନ୍ଦୁମତ ॥
ତିନି ଭୁବନ ରମ୍ୟସ୍ଥାନ । ଶ୍ରୀ ବୃନ୍ଦାବନ ବିଦ୍ୟମାନ ॥
ଅରଣ୍ୟ ଶୋଭା ଦେଖି ତୋଷେ । ଗମନ କର ନିଜ ବାସେ ॥
ତୁମ୍ଭେତ ପରମ ସାଧ୍ୱୀ । ସର୍ବଦା ପତି ପ୍ରାଣେ ସେବ ॥
ପାଳିବ ପତିବ୍ରତ ଧର୍ମ । ସଫଳ କରିବ ଜୀବନ ॥
ପୁତ୍ର ପାଳିବ ସ୍ନେହ ଭରେ । ଯେ ନିତ୍ୟ କର୍ମ ସଦାଗୃହେ ॥
ରକ୍ଷା କରିବ ଜାତିଧର୍ମ । କୁଳ ଉଚିତ ବିଧି କର୍ମ ।୩୧।
ବେଭାରେ ଥିବ ସର୍ବକାଳେ । ବନ୍ଧୁ ସୁହୃଦ ସଙ୍ଗମେଳେ ॥
ଯେ ଯାହା ଧର୍ମ ନ ଛାଡ଼ିବ । ସଂସାର ଭବେ ମନଦେବ ॥
ସେକଥା ତୁମ୍ଭର ବେଭାର । ମନରେ ଆନନ୍ଦ ବିସ୍ତର ॥
ଗୋପପୁରକୁ ବେଗେ ଚଳ । କାହ୍ନୁ ଯେ ଥିବେ ବଚ୍ଛାବାଳା ॥
ପୁତ୍ରକୁ ଦେବ କ୍ଷୀରପାନ । ବତ୍ସକୁ କରିବ ଦୋହନ ॥
ପତି ଚରଣେ ସେବା କରି । ଗୁରୁଙ୍କ ଆଗ୍ୟାଂ କରେ ଧରି ॥
ଇଷ୍ଟ ଦେବତା ଆରାଧିବ । କୁଳ ଉଚିତ ଧର୍ମେ ଥିବ ॥
କଅବା ମୋର ସ୍ନେହ ପାଶେ । ବନ୍ଧ ହୋଇଲ ଭାବ ବଶେ ।୩୨।
ସେକଥା ନୋହେ ଅଶୋଚିତ । ମୋ ଭାବ ବଶେ ତ୍ରିଜଗତ ॥
ମୁଁ ସେ ପ୍ରାଣୀଙ୍କ ପଞ୍ଚମନ । ସକଳ ଜନ୍ତୁଙ୍କ ଜୀବନ ॥
ଜୀବ କରନ୍ତି ମୋତେ ପ୍ରିୟ । ତେଣୁ ମୁଁ ସର୍ବ ସୁଖମୟ ॥

ମୋ ପ୍ରେମାନନ୍ଦ ରସ ଜଳେ । ଭାବେ ମଜ୍ଜିଲ ସୁଖ ହେଳେ ॥
ମୁରଲୀ ସ୍ୱନେ ବଶହୋଇ । ବନେ ଅଇଲ ସର୍ବଗୋଷ୍ଠି ।୫୧।
ନୟନେ ଦେଖିଲ ମୋରୂପ । ସଫଳ କଲ ସର୍ବତପ ॥
କହିବା ଧର୍ମର ବିଚାର । ଯାହା କହିଛୁ ବେଦବର ॥
କୁଳ କାମେମା ଧର୍ମଗୁଣ । ସକଳେ ସ୍ଥିର ମନେ ଶୁଣ ॥
ନିର୍ମଳ ମନେ ପତି ସେବ । ଗୁରୁଜନଙ୍କୁ ଆରାଧିବ ॥
ବାଳ ପୁତ୍ରଙ୍କୁ ପ୍ରତିପାଳି । ଲଜ୍ଜା ବିନୟ ଧର୍ମଶାଳୀ ॥
ଯେ ଯେ ସ୍ତ୍ରୀଙ୍କ ନିଜଧର୍ମ । ଅନ୍ୟଥା ଯେତେ ପୁଣ୍ୟକର୍ମ ॥
ବ୍ରତ ନିୟମ ଉପବାସ । ଅଷ୍ଟାଙ୍ଗ ଯୋଗ ଗ୍ୟାଂନରସ ॥
ଯେ ଧର୍ମେ ନୋହେ ଅଧିକାର । ପତି ସେବିବ ନିରନ୍ତର ।୫୨।
ଦୁଷ୍ଟ ତ ଦୁର୍ବଳ ନିଧନ । ଜଡ଼ ଦୁର୍ଭଗା ବୀର୍ଯ୍ୟହୀନ ॥
ବୃଦ୍ଧ ବୟସ ରୋଗଯୁକ୍ତ । ବାଳୁତ ମତି ଅମହତ ॥
ଅପ୍ରିୟ ବାଦୀ ହିଂସାପର । ପାପ ପ୍ରକୃତି ଦୁରାଚାର ॥
ଅନ୍ଧ ବଧିର ଖଞ୍ଜପାଦ । କର୍କଶ ତନୁ ଭୟପ୍ରଦ ॥
କଅବା ହୋଇବ ଭିଖାରୀ । ପରକୁ ଥିବ ସେବା କରି ॥
ଅବନ୍ଧ୍ୟା କରଇ ବହୁତ । ନର୍ଦ୍ଧୋଷେକରେ କୋପଚିତ୍ତ ॥
ଯେମନ୍ତ ପତି ମନ୍ଦାଚଳ । ଲଭିବ କର୍ମର ଅଫଳ ।
ସେ ସେ ପରମ ଦେବ ଧର୍ମ । ବ୍ରହ୍ମା ଈଶ୍ୱର ବିଷ୍ଣୁ ସମ ।୫୩।
ସେବା କରିବ ଅନୁକ୍ଷଣେ । ପ୍ରାଣୁ ଅଧିକ କୋଟିଗୁଣେ ॥
ତେବେ ବୋଲନ୍ତି ପତିବ୍ରତା । ସେ ସେ ଅଶେଷ ପୁଣ୍ୟଲତା ॥
ତାର ମହିମା ଗୁଣ ଯଶ । ତାରଇ ଲୋକ ଚତୁର୍ଦ୍ଦଶ ॥
ଯେ ନାରୀ ପତି ସେବା ତେଜି । ଜାର ପୁରୁଷ ସଙ୍ଗ ଭଜି ॥
ନାଶଇ ସର୍ବ ପୁଣ୍ୟ କର୍ମ । ସ୍ୱର୍ଗ ସମ୍ପଦ ମୋକ୍ଷ ଧର୍ମ ॥
ସଂସାରେ ରହଇ ଅଯଶ । ଅନ୍ତେ ଲଭଇ ନର୍କବାସ ॥

କୁଳଟା ବୋଲନ୍ତି ଜଗତେ । ଧିକ୍କାର କରନ୍ତି ସମସ୍ତେ ॥
ଲଜ୍ଜା ବିନୟ ଧର୍ମ ଗୁଣ । ଯେ କୁଳ କୁମାରୀ ଭୂଷଣ ।୭୫।
ଯେସର୍ବ ଗୁଣ ହୋଇଯେ ନାଶ । ଗୌରବ ଯେହ୍ନେ ସୁରାପାଶ ॥
ତାହାର ପାପେ ନିଜ ବଂଶ । ନରକେ ହୋଅନ୍ତି ପ୍ରବେଶ ॥
ଏହି ସଂସାରେ ମହାପାପି । କୃଷ୍ଣ ବୋଲନ୍ତି ଶୁଣଗୋପୀ ॥
କହିଲ୍ କୁଳ ସ୍ତିରୀ ଧର୍ମ । ତୁମ୍ଭେ ହୋଇଲ କାମ୍ୟା ଭ୍ରମ ॥
ଯେବେ ମୋହୋର ପଦ୍ମପାଦେ । ମନ ବଳାଇଲ ଆନନ୍ଦେ ॥
କହଇ ମୋହୋର ମହିମା । ସତ୍ୟ ବଚନ ଶୁଣ ବାମା ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ମୋରୂପ ଧ୍ୟାନ ଦରଶନେ ॥
ପ୍ରାଣୀ ଲଭନ୍ତି ମୋର ପଦ । ତୁମ୍ଭେ ନକର ମନେଖେଦ ।୮୩।
ଲେଉଟି ଯାଅ ଗୋ ସଦନେ । ମୋ ପଦ୍ମପାଦ ଧରିମନେ ॥
କରିବ ଶ୍ରବଣ କୀର୍ତ୍ତନ । ଭାବେ କରିବ ରୂପଧ୍ୟାନ ॥
ଲଭିବ ମୋର ନିତ୍ୟଧାମ । ସର୍ବ ଭୂତରେ ମୋ ବିଶ୍ରାମ ॥
କୃଷ୍ଣ ବଚନେ ଗୋପବାଳୀ । ଶୋକ ନପାରିଲେ ସମ୍ଭାଳି ॥
ନୟନୁ ବହଇ ଲୋତକ । ବଜାଳି ପଡ଼ିଲା ମସ୍ତକ ॥
ବିଷାଦ ହୋଇ ଅଧୋମୁଖେ । ଭୂମି ଚିରନ୍ତି ମହାଶୋକେ ॥
ପାଣି କମଳ ଗଣ୍ଡ ଦେଶେ । ପ୍ରଖର ଗ୍ରୁଡ଼ନ୍ତି ନିଶ୍ୱାସେ ॥
ଶୁଖିଲା ସୁରଙ୍ଗ ଅଧର । ହରଇ ଜାମ୍ବୁର ଆକାର ।୯୧।
ନୟନ ରଞ୍ଜନ କାଳିମା । କୁଟିଳ ବଦନ ଚନ୍ଦ୍ରମା ॥
ଲୋତକ ଜଳ ଧାର ରସେ । ଭେଦ ହୃଦୟ ସୂକ୍ଷ୍ମବାସେ ॥
କୁଚ କୁଙ୍କୁମ ରଙ୍ଗରାଗ । ଝଡ଼ି ପଡ଼ଇ ଭୂମିଭାଗ ॥
ଚିନ୍ତା ସାଗରେ ମନଭାସି । ଅନ୍ଧାର ଦଶ ଦିଗ ଦିଶି ॥
ଦୁଃଖ ହୋଇଲା ମହାଗୁରୁ । ଯେହ୍ନେ ଅଚଳ ମହାମେରୁ ॥
ସର୍ବ ସମ୍ପଦ ସୁଖଭୋଗ । ସଂସାର ଧର୍ମ କର୍ମଯୋଗ ॥

ଯାଅର୍ଥେ ଗୋକୁଳ ସୁନ୍ଦରୀ । ତେଜିଲେ ତୃଣ ପ୍ରାୟେ କରି ॥
ଯେ ପ୍ରାଣ ବଲ୍ଲଭ ଈଶ୍ୱର । ଅପ୍ରିଅ ବାଣୀ ଶୁଣି ତାର ।୯।
କାତରେ ହୃଦୟ କମ୍ପଇ । ଆମ୍ଭାଙ୍କ ଦେହୁଂ ଛୁଡ଼ିଯାଇ ॥
ଲୋତେକ ପୋଛନ୍ତି ନୟନ । ଚାହାଂନ୍ତି ଶ୍ରୀକୃଷ୍ଣ ବଦନ ॥
ନିରାଶ ହୋଇ ମନେ ଭାଳି । କହାନ୍ତି କର୍ଣ୍ଣେ ଗୋପବାଳୀ ॥

ଗୋପ୍ୟୁବାଚ

ବୋଲନ୍ତି ଗଦ ଗଦ ବାଣୀ । ହେ ଦେବ ବୃନ୍ଦ ଚୂଡ଼ାମଣି ॥
ତୋ ପାଦ ପଦ୍ମ ଶତ୍ରେ ଧର । ଆମ୍ଭେ ସକଳ ଗୋପ ନାରୀ ॥
ତେଜିଲୁ ଗୃହ ବାସ ଧର୍ମ । ସଂସାରେ ସୁଖ ଭୋଗ କର୍ମ ॥
ପତି ତନୟ ବନ୍ଧୁ ବର୍ଗ । ଇଷ୍ଟ ସୁହୃଦ ମିତ୍ର ଯୋଗ ।୧୦।
ସକଳ ସୁଖ ଦୂର କରି । ତୋ ପଦ୍ମ ଚରଣେ ମୁରାରି ॥
ସେବା କରିବୁ ଦାସୀ ହୋଇ । ନିରାଶ କର କାହ୍ନ ପାଇଂ ॥
ନିଷ୍ଠୁର ବଜ୍ର ସମ ବାଣୀ । କମ୍ପା କହିଲ ବେଣୁପାଣି ॥
ଅପ୍ରିୟ ଶୁଣି ତୋ ବଚନ । କେମନ୍ତେ ରଖିବୁଂ ଜୀବନ ॥
ଆଦ୍ୟ ପୁରୁଷ ଭବ ତ୍ରାହି । ଭକ୍ତଂଜନଙ୍କୁ ଦୟା ବହି ॥
ଭୃତ୍ୟ ଭାବରେ ରଖ ସ୍ୱାମୀ । ତୁ ଦେବ ସର୍ବ ଅନ୍ତର୍ଯାମୀ ॥
ଅଶେଷ ଧର୍ମ ମାର୍ଗ ପଥ । ବେଦ ଆଗମ ପରମାର୍ଥ ॥
ଭୂତ ଭବିଷ୍ୟ ବର୍ତ୍ତମାନ । ଶାସ୍ତ୍ର ପୁରାଣ ଦିବ୍ୟଗ୍ୟାଂନ ॥
ଦେଶ ନିୟମ କାଳପାତ୍ର । ସର୍ବଗ୍ୟଂ ଭାବ ଇତ୍ର ତନ୍ତ୍ର ॥
ତୁ ଦେବ ସର୍ବ କଥା ଜାଣୁ । ଧର୍ମ ଅଧର୍ମ ପରମାଣୁ ।୧୧।
ଯେତେ କହିଲ ଧର୍ମବାଣୀ । ଆମ୍ଭେ ସକଳ ଗୋପାଙ୍ଗଣୀ ॥
ଯେ ଧର୍ମ ନାହିଂ ଆମ୍ଭ ମନ । ତୁ କି ନଜାଣୁ ଭଗବାନ ॥
ଅଶେଷ ଧର୍ମ ତୋ ଗୋଚର । ଶରଣ ଗଲୁ ତୋ ପୟର ॥
କୁଳ କୁମାରୀ ଧର୍ମ ପଥ । ଯାହା କହିଲ ବେଣୁ ହସ୍ତ ॥

ଆମ୍ଭେ ସ୍ୱଭାବେ ବାଳନାରୀ । ସେ ଧର୍ମ ନପାରୁ ଆଚରି ।୧୨୯।
ତୁମ୍ଭେ ଯେ ଦେଲ ଉପଦେଶ । ଯୋଗେ ଜାଣିଲୁ ପୀତବାସ ॥
ସେ ସର୍ବ ଧର୍ମ ତୁମ୍ଭ ତହିଁ । ଆମ୍ଭେ ପାଇବୁ ଭବଗ୍ରାହୀ ॥
ତୁମ୍ଭେ ଅଶେଷ ଲୋକପତି । ଏତେ ସେବନ ଫଳ ଗତି ॥
ତୋ ପାଦେ ସେବା ନନ୍ଦବାଳ । ଲଭିବ ପତି ବ୍ରତ ଫଳ ॥
ବୋଲ ଯେ ଗୁରୁଜନ ସେବ । ଜଗତ ଗୁରୁ ତୁ ମାଧବ ॥
ବନ୍ଧୁ ସହୃଦ ଇଷ୍ଟ ତୁହି । ତୋ ବିନୁ ଅନ୍ୟ ଗତି ନାହିଁ ॥
ଆତ୍ମାରୁ ଉତ୍ପତ୍ତି ନନ୍ଦନ । ତୁ ଆତ୍ମା ରୂପୀ ଭଗବାନ ॥
ଲକ୍ଷ୍ମୀ ବନସ୍ଥ ଧର୍ମ ମତେ । ତେ: ଭାବ ଭାବ ଅନ୍ତରତେ ॥
ପଦ୍ମ ଚରଣେ ହୋଇ ଦାସୀ । ସେବା କରିବୁ ଦିବାନିଶି ।୧୩୦।
ଦେଖୁଛୁ ଅନିତ୍ୟ ସଂସାର । ଦୁଃଖ ବର୍ଦ୍ଧିତ ନିରନ୍ତର ॥
ଅନିତ୍ୟ ପତି ସୁତ ଧନ । ସେତେଣେ କି ଅଛି ପ୍ରୟୋଜନ ॥
ତୁ ନିତ୍ୟ ସତ୍ୟ ନିତ୍ୟାନନ୍ଦ । ନିତ୍ୟ ପରମ ସୁଖ ପ୍ରଦ ॥
ତେଣୁ କୁଶଳ ଜ୍ଞାନୀ ଜନେ । ତୋତେ ଭାବନ୍ତି ଅନୁକ୍ଷଣେ ॥
ତୁ ଦେବ ପରମ ଦୟାଳୁ । ଶରଣ ଜନ ପ୍ରତିପାଳୁ ॥
ଶରଣ ଗଲୁ ନା ତ ତୋତେ । କରୁଣା କର ନନ୍ଦ ସୁତେ ॥
ତୋ ପାଦପଦ୍ମ କୋଷ ରସେ । ଆମ୍ଭେ ବାନ୍ଧିଲୁ ଆତ୍ମା ପାଶେ ॥
ସେ ପାଶ ନ କର ଛେଦନ । ଆଶା ବିଶ୍ରାମ ଭଗବାନ ॥
ନିଷ୍ଠୁର ବଚନ ମଧ୍ୟରେ । ବୋଲେ ଯେଯାଅ ଗୋପପୁରେ ॥
ଆମ୍ଭେ ଯେ ଥିଲୁ ଗୃହବାସେ । ଚିତ୍ତ ନିବେଶି ମୋହ ପାଶେ ॥
ଲେଉଟି କି ଯିବୁ ଗୋକୁଳ । ଗ୍ରହି ତୋ ଚରଣ କମଳ ॥
ବେନି ଚରଣ ନଚଳଇ । କାତରେ ହୃଦୟ କମ୍ପଇ ॥
ତୁ ଆମ୍ଭ ପ୍ରାଣ ଅଧିକାରୀ । ଆମ୍ଭେ ତୋହର ପରିଗୃହୀ ॥
ତୁ ଯେବେ କରିବୁ ନିରାଶ । ଦେଖ ଅନଳ ଦେବୁ ଝାସ ॥

କରିବୁ ତୃଣ ପ୍ରାୟେ ଜଗ । ତୋ ଲୀଳା ଗୁଣ ଅନୁସରି ॥
ତୋ ପାଦ ପଙ୍କଜ ପଞ୍ଜରେ । ସକଳ ଗୋପୀ ରସ ଭରେ ॥
ଆନନ୍ଦ ରହିଲୁ ନିଷ୍ଠଳେ । ନଦୀ ସେମନ୍ତେ ସିନ୍ଧୁ ଜଳେ ॥
ଯେ ପାଦ ପଦ୍ମ ଲକ୍ଷ୍ମୀ ସେବି । ଅରଣ୍ୟ ଜୀବ ସର୍ବସୁଖୀ ॥
ଭଗତ ବୃନ୍ଦ ସୁଖ ଧାମ । ଧ୍ୟାନେ ଚିନ୍ତନ୍ତି ଆତ୍ମାରାମ ॥
ତୁଳସୀ ଦେବୀ ହୃଦ ଦେଶେ । କମଳା ସଙ୍ଗତେ ବିଳାସେ ॥
ତଥାପି ପଦ୍ମପାଦ ଲକ୍ଷେ । ନିରଖି ଗଲ୍ ମନ ତୋଷେ ॥
କମଳା ଦେବୀ ଅନୁରାଗେ । ଯେ ପଦ୍ମ ଚରଣ ପରାଗେ ।୧୫୨।
ଭାବେ ଆସ୍ୱାଦ ପ୍ରେମ ରସ । ପଦ୍ମ ଚରଣେ କଲେ ବାସ ॥
ଲୋକେ ବୋଲନ୍ତି ଶ୍ରୀଚରଣ । ତୁ ଦେବ ପୁରୁଷ ଭୂଷଣ ॥
ଯେତେ ପୁରୁଷ ତ୍ରିଜଗତେ । ବ୍ରହ୍ମାଦି ଅମର ସହିତେ ॥
କମଳା ଅନୁଗ୍ରହେ ଆଶ । କରନ୍ତି ଲୋକ ଚତୁର୍ଦ୍ଦଶ ॥
ତୁ ନାଥ ତ୍ରିଦଶ ଶିଖର । କମଳା ସେବେ ତୋ ପୟର ॥
ସେ ପାଦ ମୂଳେ ଦାସୀ ହୋଇ । ସେବା କରିବୁ ସର୍ବ ଗୋଈ ॥
ହେ ନାଥ ବୃଜିନ ଦଳନ । ତୋ ନାମ ପତିତ ପାବନ ॥
ଆମ୍ଭେ ସକଳ ଗୃହ ତେଜି । ତୋ ପାଦେ ମନ ଅଭିରଞ୍ଜି ॥
ତୋ ଅନୁଗ୍ରହେ ଆମ୍ଭଆଣ । ପ୍ରସନ୍ନ ଭାବେ ହୋ ତୋଷଣ ॥
ଅରୁଣ କମଳ ଲୋଚନ । କରୁଣା କଟାକ୍ଷ ମୋଚନ ॥
ଭ୍ରୂଲତା ସ୍ମର ଶରାସନ । ହୃଦୟୁ ବଢାରେ ମଦନ ॥
ଅଳକାବୃତ ପଦ୍ମମୁଖ । ସ୍ମିତ ଅଧର ମହାସୁଖ ॥
କୁଣ୍ଡଳ ବେନି ଶ୍ରୁତି ଦେଶେ । ଗଣ୍ଡ ବିକାଶେ ମନ୍ଦ ହାସେ ॥
କମଳା ସଦନ ହୃଦୟ । ଅଶେଷ ରସ ସୁଖମୟ ।୧୬୨।
ଆଜାନୁ ଘାଢ଼ ବାହୁମୂଳେ । ଅଚିନ୍ତ୍ୟ ଥିବୁ ସର୍ବକାଳେ ॥
ଅଖିଳ ମୋହନ ସୁନ୍ଦର । ଶ୍ୟାମ ରୁଚିର କଳେବର ॥

ଦେଖି ହୋଇବୁ ମୋହଗତ । କର୍ଣ୍ଣେ ଶୁଣିବୁ ବେଣୁ ଗୀତ ॥
ମଧ୍ୟରେ ରହିବୁଂ ସବେକେ । କେ ନାରୀ ଚତୁର୍ଦଶ ଲୋକେ ॥
କାନନେ ଖଗ ମୃଗବୃନ୍ଦ । ଯେବେ ଶୁଣନ୍ତି ବଂଶୀନାଦ ॥
ପ୍ରେମ ଅବଶେ ହୋନ୍ତିମୋହ । ପଲ୍ଲବନ୍ତି ଶୁଷ୍କ ମହୀରୁହ ॥
ଯୋଗୀଙ୍କ ଧ୍ୟାନ କରେଧ୍ୱଂସ । ହରିଙ୍କ ବଂଶୀ ଧ୍ୱନିରସ ॥
ଶ୍ରବଣେ ଶୁଣି ଗୋପବାଳୀ । ମଦନେ ହୋଇଲେ ବିକଳ ।୧୭୪।
ଦେଖିଲେ ଦିବ୍ୟ ରୂପ ବେଶ । ହେଳେ ଖଣ୍ଡିଲେ ସର୍ବତ୍ରାସ ॥
ଅନ୍ତ ଶଙ୍କଟ ନାଶିବାରେ । ତୋହର ଜନ୍ମ ଗୋପପୁରେ ॥
ଯେସନେ ପ୍ରଭୁ ନାରାୟଣ । ରକ୍ଷା କରନ୍ତି ସୁରଗଣ ॥
ସାଧୁ ଜନଙ୍କୁ ସୁଖ ଦ୍ୟନ୍ତି । ଅଧର୍ମୀ କୁଳ ବିନାଶନ୍ତି ॥
ତୁ ଦେବ କମଳା ରମଣ । ଆମ୍ଭେ ତୋହୋର ଦାସୀଗଣ ॥
ଅଭୟ ହସ୍ତ ଯେତୁକ ବାରେ । ପ୍ରଦାନ କର ଆମ୍ଭ ଶିରେ ॥
ହୃଦୟ ହେଉଅଛି ଦଗ୍ଧ । ହେନାଥ କର ବେଗେ ତ୍ରାହି ॥
ଯେମନ୍ତେ କହି ଗୋପୀଗଣେ । ନମିଲେ ଶ୍ରୀପଦ୍ମ ଚରଣେ ।୧୭୮।
ଜୟ ଶବଦେ ଗୋପନାରୀ । ବୋଲନ୍ତି ରଖ ବେଣୁଧାରୀ ॥
ପୁଣି ନମନ୍ତି ବାରେ ବାର । ହେନାଥ କର ପ୍ରତିକାର ॥
ସେ ଗୋପୀଜନଙ୍କ ବିକଳ । ନୟନେ ଦେଖି ନନ୍ଦବାଳ ॥
ପ୍ରେମ ବଚନେ ଆଶ୍ୱାସିଲେ । ହୃଦେ ଅଶେଷ ସୁଖଦେଲେ ॥
ସେ ହରି ଅଭୟ ଚରଣେ । ମନ ନବେଶି ଅନୁକ୍ଷଣେ ॥
କହଇ ବିପ୍ର ଜଗନ୍ନାଥ । ସୁଜନେ ଶୁଣ କୃଷ୍ଣ ଗ୍ରନ୍ଥ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ରାସଲୀଳା ବର୍ଣ୍ଣନେ
ନାମ ତ୍ରୟୋବିଂଶୋଽଧ୍ୟାୟଃ ।

# ଚତୁର୍ବିଂଶ ଅଧ୍ୟାୟ

## ଈଶ୍ୱର ଉବାଚ

ରୁଦ୍ର କହନ୍ତି ଉମାଆଗେ । ଶ୍ରୀବୃନ୍ଦାବନେ କୃଷ୍ଣ ସଙ୍ଗେ । ୧।
ଅଶେଷ ଗୋକୁଳ ରମଣୀ । ଶ୍ରୀକୃଷ୍ଣ ମୁଖୁଂ ପ୍ରେମବାଣୀ ॥
ଶ୍ରବଣେ ଶୁଣି ନପ୍ରଶଲେ । ମନ ସନ୍ଦେହ ଦୂରକଲେ ॥
ସଦୟ୍ଯ ଚତ୍ତେ ଦେବ ହରି । ଗୋପୀଙ୍କ ସଙ୍ଗତେ ବିହରି ॥
ସେ ଗୋପୀଜନ ପରସ୍ପରେ । କୃଷ୍ଣ ସଙ୍ଗତେ ରସଭରେ ॥
ଭ୍ରମିନ୍ତି ବନଭୂମ ଦେଶେ । ତାରକା ଯେସନ୍ତେ ଚନ୍ଦ୍ର ପାଶେ ॥
ଦେଖନ୍ତି କୋଟି କାମରୂପ । ପ୍ରେମ ଆନନ୍ଦ ରସକୂପ ॥
କେ ସୁଖେ କରେ ଆଲିଙ୍ଗନ । କେ ସୁଖେ ଦିଅନ୍ତି ଚୁମ୍ବନ । ୮ ।
ଶ୍ରୀକୃଷ୍ଣ ଦେହ ନିଜ ହୃଦେ । କେ ନାରୀ ଲଗାନ୍ତି ଆନନ୍ଦେ ॥
କେ ତାଳ ଭିଡାନ୍ତି ନୟନେ । କେ ହସି ବିକାଶେ ବଦନ ॥
ସାଧନା ସିଦ୍ଧା ଗୋପୀ ଯେତେ । କୃଷ୍ଣଙ୍କୁ ବେଢ଼ିଲେ ତୁରିତେ ॥
କଣ୍ଠେ ଖଞ୍ଜିଲେ ରତ୍ନମାଳ । ଚାମର ଢାଳନ୍ତି କେ ବାଳୀ ॥
କେ ଅଙ୍ଗେ ଘସନ୍ତି ଚନ୍ଦନ । ବାସ କରାନ୍ତି ପରିଧାନ ॥
ବନ କୁସୁମେ ରଞ୍ଜିଚୂଳ । ଶ୍ରବଣେ ଖଞ୍ଜିଲେ କୁଣ୍ଡଳ ॥
ହାର କେୟୂର ମଣିଗଣ । କିରୀଟ କଙ୍କଣ ଭୂଷଣ ॥
ନାସେ ଖଞ୍ଜିଲେ ମୋତିବର । ପୟରେ ବାନ୍ଧିଲେ ନେପୁର ॥
ନିଜ ଶ୍ରୀକୃଷ୍ଣ ଅଙ୍ଗପ୍ରଭା । ରତ୍ନେ ଦିଶନ୍ତି ମହାଶୋଭା ।୧୬।
କୃଷ୍ଣଙ୍କୁ କରି ଶୃଙ୍ଗାରବେଶ । ଗୋପୀ ହୋଇଲେ ମନତୋଷ ॥
ରାଧିକା ଭଦ୍ରା ଚନ୍ଦ୍ରାବଳୀ । ଶ୍ୟାମା ସୁଶୀଳା ରଙ୍ଗାବଳୀ ॥
ଶ୍ରୁତି ସୁକାନ୍ତି ସୁମାଳିନୀ । ସରଳା ଅଖିଳ ମୋହିନୀ ॥
ଅପରାଜିତା ମଧୁଶ୍ରବା । କୁଟିଳ ମାଳା ଚନ୍ଦ୍ରପ୍ରଭା ॥
ଶ୍ରଦ୍ଧା ବହୁଳା ଶାନ୍ତମଣି । ନବ ମାଳିକା ଚନ୍ଦ୍ରାବଣୀ. ॥

କୁନ୍ଦା କାମୋଦା କାନ୍ତାନନ୍ଦା । ଅଶୋକା ବକୁଳ ମାଳିନୀ ॥
ସୁମେଧା ସରଧା ସରଳା । ହେଳା ଚଞ୍ଚଳା ଚନ୍ଦ୍ରକଳା ॥
ଶତ ଚନ୍ଦ୍ରିଣୀ ଶତାନନ୍ଦା । ସହସ୍ର ଚନ୍ଦ୍ରିଣୀ ସୁନନ୍ଦା ॥
କାମାକ୍ଷୀ କାମ ମନୋହାରୀ । କୋଟି ମଦନ ଶୋଭାକାରୀ ।୨୬।
ମଙ୍ଗଳା ମଞ୍ଜୁଳା ମାଳତି । ମଦନ କଳା ରମ୍ଭାବତି ॥
ରସ ମଞ୍ଜରୀ ରସକଳା । ମଧୁରୀ ବିରଳା ମହିଳା ॥
କସ୍ତୁରି ଶତଗନ୍ଧା କାନ୍ତି । ସୁମନା ଧୀରୀ କଳାବତି ॥
ରତି ସଞ୍ଜୀବା ରତିକଳା । ରତି ଲଳିତା ରତିମାଳା ॥
ସାରଦା ସମୋହନା ବତି । ସୁବର୍ଣ୍ଣ ବର୍ଣ୍ଣା ମଧୁମତି ॥
ତାରା ସଂଖ୍ୟିକା ଶତଦଳା । ସହସ୍ର ପର୍ଣ୍ଣି କାନ୍ତିମାଳା ।୩୨।
କେତେ କହିବି ନାମଧର । ଷୋଳ ସହସ୍ର ଶୋଭ ନାରୀ ॥
ମୋହି ପାରନ୍ତି ଚରାଚର । ଅନନ୍ତ ପରମ ସୁନ୍ଦର ॥
ସମ୍ପୂର୍ଣ୍ଣ ଚନ୍ଦ୍ରମା ବଦନୀ । ମୃଗାକ୍ଷୀ ବଙ୍କିମା ଗୃହାଣୀ ॥
ଅମୀୟ ରସ ପ୍ରଭାସିନୀ । ମନ୍ଦ ମଧୁର ବିହାସିନୀ ॥
ନବ ଲାବଣ୍ୟ ଯଉବନୀ । ସୂକ୍ଷ୍ମ ବସନ ପରିଧାନୀ ॥
ଘନ ଉନ୍ନତ ନିତମ୍ବିନୀ । ତରୁଣ ଲଳିତ ଜଘନୀ ॥
ମରାଳ ମାତଙ୍ଗୀ ଗାମିନୀ । ଦିବ୍ୟ ଭୂଷଣ ସୁବେଶିନୀ ॥
କୁଟିଳ କୁନ୍ତଳ କବେଶୀ । ଚନ୍ଦ୍ରମା ସମୀପେ ଶୋଭଣୀ ।୪୦।
ଚୂର୍ଣ୍ଣ କୁନ୍ତଳ ମୁଖପରେ । ବିକଚ ପଦ୍ମ ମଧୁକରେ ॥
ନୟନ ଚକୋର ଯୁଗଳ । ଅମୀୟ ପାନେ କି ଭ୍ରମଳ ॥
ନାସେ ଭୂଷଣ ମୋତିବର । କର୍ଣ୍ଣେ ତାଟଙ୍କ ରତ୍ନସାର ॥
କଣ୍ଠେ ଲମ୍ବଇ ମଣିହାର । ରତ୍ନ ପଦକ ତେଜସର ॥
ବାହେ ସରଳ ତାଡ଼ଜୋଡ଼ । ହସ୍ତେ କନକ ରତ୍ନଚୂଡ଼ ॥
ରତ୍ନ ମେଖଳା କଟି ତଟେ । ଚରଣେ ନୂପୁର ପ୍ରକଟେ ॥

ବିବିଧ ରତ୍ନ ମଣିହାର । ଅମୂଲ୍ୟ ବାସ ଅଳଙ୍କାର ॥
ଭୂଷଣ ହୋଇଛନ୍ତି ବାଳା । ଅଙ୍ଗ ଲାବଣ୍ୟ ଅଂଶୁମାଳୀ ॥
ତେଜେ ସୁନ୍ଦର ସର୍ବ ମହୀ । ବ୍ରହ୍ମାଣ୍ଡ ପାରନ୍ତି ସେ ମୋହି ॥
ନବ କନ୍ଦୁ ରୂପ ରସ ଗୁଣ । ଯାହା ରମିବେ ନାରାୟଣ ॥
ସେ ଗୋପୀଜନ ଯେତେବେଳେ । ବୃନ୍ଦାକାନନେ କୁତୁହଳେ ।୫୧।
ଶ୍ରୀକୃଷ୍ଣ ସଙ୍ଗେ ବିହରନ୍ତି । କେ ପୁଷ୍ପ କାନନେ ଭ୍ରମନ୍ତି ॥
ହରଷେ କୁସୁମନ୍ତି ତୋଳି । ଗୁନ୍ଥି କରନ୍ତି ମାଳ ମାଳ ॥
ଲମ୍ବାଇ କୃଷ୍ଣ କଣ୍ଠ ଦେଶେ । ଚୂଳ ବାନ୍ଧନ୍ତି ଗୁରୁ କେଶେ ॥
ଅଶେଷ ବ୍ରହ୍ମାଣ୍ଡ ମୋହନ । ସଙ୍ଗତେ ଘେନି ଗୋପୀ ଜନ ॥
ଯମୁନା ପୁଳିନେ ବିଜୟେ । ଯେ ପ୍ରଭୁ ସର୍ବ ସୁଖମୟେ ॥
ପବନ ବହଇ ଶୀତଳ । ଚନ୍ଦ୍ର କିରଣ ପରିମଳ ॥
ସୁଗନ୍ଧ କୁସୁମେ ଲୋଭିତ । ଭୃଙ୍ଗ ନାଦନ୍ତି ହୋଇ ମତ୍ତ ॥
ସେ ବନ ମଧ୍ୟେ ବ୍ରହ୍ମରାଶି । ଗୋପୀକାପ୍ରେମ ରସେ ଭାସି ।୫୨।
କରନ୍ତି ବିବିଧ ବିଳାସ । କମଳ ବନେ ଯେହ୍ନେ ହଂସ ॥
ଗୋପ ନନ୍ଦନୀ ମଧ୍ୟେ ହରି । ପଞ୍ଚମ ରସେ ଧ୍ୱନି କରି ॥
ଗୀତ ଗାଇଲେ ମହାରସେ । ସକଳ ଗୋପୀ ମନ ତୋଷେ ॥
ଭାବେ କରନ୍ତି ନୃତ୍ୟ ଗୀତ । ହସ୍ତରେ ଘେନି ବୀଣା ଯନ୍ତ୍ର ॥
ତାଳ ଉପାଙ୍ଗ ଖଞ୍ଜା ସାର । ଗାନ୍ଧାର ଲଳିତ ହୁଙ୍କାର ॥
ଗାୟନ କଲେ ରସଭରେ । ବିଶେଷ ଗତି ମନୋହରେ ॥
ସେ ଧ୍ୱନି ଶୁଣି ଦେବ ହରି । ମଦନ ରସେ ଅଙ୍ଗ ଘାରି ॥
ଗୋପ କୁମାରୀ ଘେନି ସଙ୍ଗେ । ବିଳାସ ରସେ କାମ ରଙ୍ଗେ ॥
ଚୁମ୍ବିଂଲେ ରାଧିକା ବଦନ । କାମେ ହୋଇଲେ ଅଚେତନ ॥
ବାହୁ ପ୍ରସାରି ଭଗବାନ । ନିବିଡ଼ କଲେ ଆଲିଙ୍ଗନ ॥
ବଦନ ଚୁମ୍ବି ଦେବ ହରି । ପ୍ରିୟା ଅଞ୍ଚଳ କରେ ଧରି ॥

ଫିଟାନ୍ତି ମାୟା ପାଶ ବନ୍ଧ । କମଳ କର ଅରବିନ୍ଦ ॥
ହସି ବୋଲନ୍ତି ଚନ୍ଦ୍ରାନନା । କହନ୍ତି ସୁର ସିଦ୍ଧ ମୁନି ॥
ଭବନାଥ ତୁମ୍ଭ ନାମ ବଳେ । ସଂସାର ପାଶ ଅବହେଳେ ॥
ଫିଟାନ୍ତି ସାଧୁଜନ ମାନେ । ତୁମ୍ଭେ ପ୍ରତକ୍ଷ୍ୟ ସାବଧାନେ ॥
ମାତ୍ର ନପାରିଲି ଫିଟାଇ । ଶୁଣି ହସିଲେ ସର୍ବଗୋସାଇଁ ॥
ରାଧିକା ଲହିଲେ ସଲଜ୍ଜେ । ହରଷେ ପ୍ରଭୁ ଦେବରାଜେ ।୭୬।
ଲୀଳା କରନ୍ତି ମନତୋଷେ । ପ୍ରେମ ବିଳାସ ମହାରସେ ॥
ଗୋପୀ ହୋଇଲେ ରସେଭୋଳ । କୃଷ୍ଣଙ୍କୁ କରନ୍ତି ଟେକ କୋଳ ॥
କୃଷ୍ଣ କାହାକୁ ହସ୍ତଧରି । ଆଶ୍ୱାସି ଆଲିଙ୍ଗନ କରି ॥
ଚିବୁକ ଧରି ପଦ୍ମକରେ । ଗଣ୍ଡ ଚୁମ୍ବନ୍ତି ରସଭରେ ॥
କାହାକୁ ଚାହାଁନ୍ତି ଅପାଙ୍ଗେ । କାହାକୁ ତୋଷି କାମ ରଙ୍ଗେ ॥
କାହାକୁ ଚାହିଁ ମନ୍ଦ ହସି । କାହାକୁ ପ୍ରେମ ରସେ ଭାଷି ॥
କାଅଙ୍ଗେ ଦେଇ ଅଙ୍ଗଭର । ଲଗାଇ ଅଧରେ ଅଧର ॥
କାହାର ସ୍ତନ ହୃଦେ ଭିଡ଼ି । ଅଙ୍ଗକୁ ଅଙ୍ଗ ରସେଯୋଡ଼ି ।୮୪।
ଦଶନ କ୍ଷତ ନଖ ଘାତ । କା ଅଙ୍ଗ ଦିଶଇ ଶୋଣିତ ॥
ସୁରତ ସମରେ ଗୋପବାଳୀ । କେଶ ବସନ ଅସମ୍ଭାଳି ॥
କଣ୍ଠୁ ତୁଟିଲା ମଣିହାର । ମଳିଣ କେଶ ଅଲଙ୍କାର ॥
ରସେ ଅବଶ ତନୁଲତା । ଗୋବିନ୍ଦ ସଙ୍ଗତେ ବନିତା ॥
ଲୀଳା ବିସ୍ତାରି କାମରସେ । ପ୍ରେମ ସାଗରେ ମନଭାସେ ॥
ସୁରତ ସନ୍ତାପ ଅପହରି । ହରଷେ କଞ୍ଜ କୁମାରୀ ॥
କୃଷ୍ଣଙ୍କୁ ବେଢ଼େ ଚାରିପାଶେ । ସେବା କରନ୍ତି ମନତୋଷେ ॥
ଚାମର ଢାଳନ୍ତି ଶିରରେ । ଖିଦ୍ର ପକାନ୍ତି ରସଭରେ । ୯୨ ।
କେ ପଙ୍ଖା ପକାନ୍ତି ତରୁଣୀ । ଯେବନକେ ବଜାନ୍ତି ବଂଶୀ ॥
ତାମ୍ବୁଳ ଭୁଞ୍ଜାନ୍ତି କେ ମୁଖେ । ଚନ୍ଦନ ଲେପନ୍ତି କେ ସୁଖେ ॥

କେ କରେ ଧରି ଝପାପୁନ । ଆନନ୍ଦେ ଗୃହାନ୍ତି ବଦନ ॥
ବୀଣା ବଜାଇ ଉପହରେ । କେ ନୃତ୍ୟ କରନ୍ତି ସଧିରେ ॥
ତାଳ ଉପାଙ୍ଗ ଧରି କରେ । କେ ଗୀତ ଗାବନ୍ତି ମଧୁରେ ॥
ଭାନୁ ନନ୍ଦନୀ କନ୍ଧ ଦେଲେ । ହସ୍ତ ନଟବେଶି ମନ ତୋଷେ ॥
ବ୍ରଜପ୍ରେ ନେବ ବେଣୁପାଣି । ଢଳେଶେଷେ ଅନନ୍ତ ତରୁଣୀ ॥
ନୟନେ ଦେଖି ବ୍ରହ୍ମରାଶି । ମନେ ଭାଳନ୍ତି ଶୁଭ୍ରକେଶୀ ।୧୦୦।
ଶ୍ରୀକୃଷ୍ଣ ଅପାଙ୍ଗ କାଳନ୍ଦୀ । ରାଧିକା ସ୍ମିତ ସୁରନଦୀ ।୧୦୧।
ପ୍ରେ ବେଣୀ ତୀର୍ଥ ସମାଗମେ । ପୂର୍ଣ୍ଣ ଆନନ୍ଦେ ରସକାମେ ॥
ମନ ପ୍ରସନ୍ନ ସରସ୍ୱତୀ । ନିର୍ମଳ ଭାବ ଆତ୍ମମତି ॥
ଆତ୍ମା ଭାସିଲା ମହାରସେ । ଶ୍ରୀକୃଷ୍ଣ କାମ ଅଭିଳାଷେ ॥
ଆମ୍ଭେ ହୋଇଲୁ ମହାଧନ୍ୟ । ପୂର୍ବେ ଅର୍ଜିଲୁ କେତେ ପୁଣ୍ୟ ॥
ନନ୍ଦନନ୍ଦନ ବେଣୁଧର । ଅଖିଳ ବ୍ରହ୍ମାଣ୍ଡ ଈଶ୍ୱର ॥
ଆମ୍ଭ ସଙ୍ଗତେ ଲୀଳା କରି । ମୁନି ନପାନ୍ତି ଧ୍ୟାନେ ଧରି ॥
କମଳା ସେବେ ଯା ପୟରେ । ସେ ଆମ୍ଭ ସଙ୍ଗେ କ୍ରୀଡ଼ା କରେ ॥
ଆମ୍ଭ ସମାନେ ଭାଗ୍ୟବନ୍ତୀ । ସଂସାରେ ନାହାନ୍ତି ଯୁବତୀ ।୧୦୨।
ଧନ୍ୟ ଆମ୍ଭର ପୁଣ୍ୟ ଗୁଣ । ରମିଲୁଂ କମଳା ରମଣ ॥
ଗୋପୀଙ୍କ ଗର୍ବ ମନ ଜାଣି । ଗର୍ବ ଗଞ୍ଜନ ବେଣୁପାଣି ॥
ବୃନ୍ଦାବତୀଙ୍କ ଘେନି ସଙ୍ଗେ । ନେଇକାନ୍ତେ ଗଲେ ବନଭାଗେ ॥
ଗମନ କଲେ ଅନ୍ତର୍ଦ୍ଧାନେ । ଢଳୂଳ ହାସ ଜାଣି ମନେ ॥
ନୟନେ ନପାଇଲେ ଦେଖି । ଚକିତ ହୋଇ ସବସଖୀ ॥
ଭ୍ରମେ ବୃନ୍ଦାନ୍ତ ଦଣ୍ଡକଶ । ବନେ ଗମିଲେ ପୀତବାସ ॥
ସେ ଗୋପୀନାଥ ପଦ୍ମପାଦେ । ବ୍ରାହ୍ମଣ ଜଗନ୍ନାଥ ବଦେ ॥
କୃଷ୍ଣ ଚରିତ ସୁଧାରସ । ସୁଜନେ ଶୁଣି ହୁଅ ତୋଷ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ରାସଲୀଳା ବର୍ଣ୍ଣନେ
ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନେ ନାମ ଚତୁର୍ବିଂଶୋଽଧ୍ୟାୟଃ ।

## ପଞ୍ଚବିଂଶ ଅଧ୍ୟାୟ

ଶ୍ରୀଈଶ୍ୱର ଉବାଚ

ସ୍ୱଜନେ ଶୁଣ ରସବାଣୀ । ଶିବା ଅଗ୍ରତେ ଶିବଭଣି ।୧।
ଶ୍ରୀକୃଷ୍ଣ ପ୍ରଭୁ ଅନ୍ତର୍ଦ୍ଧାନେ । ଗମନ କଲେ ବୃନ୍ଦାବନେ ॥
ନଦେଖି କୃଷ୍ଣ ମୁଖଚନ୍ଦ୍ର । ଗୋପୀ ହୋଇଲେ କାମେ ଅନ୍ଧ ॥
ବାତୁଳ ହୋଇ ଗୋପୀଯୂଥ । ଖୋଜନ୍ତି ବନଭୂମି ପଥ ॥
କରିଣୀ ବୃନ୍ଦ ମତ୍ତକରୀ । ଯେହ୍ନେ ଖୋଜନ୍ତି ବନେହେରି ॥
କୃଷ୍ଣ ଖୋଜନ୍ତି ଗୋପୀଗଣ । ଅଙ୍ଗେ ବାନ୍ଧଇ ପଞ୍ଚଗଣ ॥
ଶ୍ରୀକୃଷ୍ଣ ଲୀଳା ଗତିରଙ୍ଗ । ସ୍ମିତ ବିଭ୍ରମ ଅନୁରାଗ ॥
କରୁଣା କଟାକ୍ଷ ବିଳାସ । ବିହାର କାମ କେଳିରସ ॥
ପ୍ରେମ ସର୍ବଭାବ ଚିନ୍ତମନେ । ତନ୍ମୟ ରସେ ଗୋପୀଜନେ ॥
କୃଷ୍ଣ ବିରହ ତାପଜ୍ୱରେ । ଆମ୍ଭ ବିକଳ ବନ ଘୋରେ ॥
ବାତୁଳ ମତେ ଗୋପନାରୀ । ବନେ ଗମନ୍ତି ଶୋକ କରି ॥
ଦରିଦ୍ର ଯେହ୍ନେ ଧନପାଇ । କର୍ମ ଅବଳେ ତାହା ଯାଇ ॥
ସେ ବିନୁ ନଜାଣଇ ଆନ । ତେହ୍ନେ ଗୋପାଳ ବଧୂଜନ ।୧୩।
ହୋଅନ୍ତି ପ୍ରତିରୂପ ତନୁ । ବୋଲନ୍ତି ଆମ୍ଭେ ନନ୍ଦସୁନୁ ॥
କୃଷ୍ଣ ବିହାର ଅଭିଳାଷ । କାମ ସମ୍ଭ୍ରମ ମନ୍ଦହାସ ॥
ତନ୍ମୟ ରସେ ଗୋପୀଗଣ । ଭାବେ କରନ୍ତି ଆଚରଣ ॥
କୃଷ୍ଣ ବିରହ ତନ୍ତ୍ରାକଳେ । ଗୋପୀ ବର୍ଷିଲେ ଆମ୍ଭା ଭୋଳେ ॥
ଅନଙ୍ଗ ବାଧା ନଙ୍କୁଳ । ଅଗ୍ୟାଂନ ତରଙ୍ଗ ପ୍ରବଳ ॥
ପୂର୍ଣ୍ଣ ଆବୃତ୍ତି ଭୟଙ୍କରେ । ଅଙ୍ଗ ଗଭୀର ସୁଦୁସ୍ତରେ ॥
ଯେ ଦୁଃଖେ ନାହିଁ ପାରିବାର । ନଜାଣି ଆମ୍ଭ ପରାପର ॥
ଭ୍ରମନ୍ତି ବନେ ବନେ ପଶି । ବ୍ରଜ ରମଣୀ ରହୁରାଶି ।୨୧।
ବାତୁଳେ ବୋଲନ୍ତି ବଚନ । ହେ ନାଥ ଶ୍ରୀନନ୍ଦନନ୍ଦନ ॥

ହେ ବୃନ୍ଦାବନ ବନଶାମଣି । ହେନାଥ ବୃନ୍ଦାରକମଣି ॥
ହେପ୍ରଭୁ ପରମ ଦୟାଳୁ । ଭାବେ ଆମ୍ଭଙ୍କୁ ପ୍ରତିପାଳୁ ॥
ନବ ଲାବଣ୍ୟ ଚନ୍ଦ୍ରମୁଖ । ଦେଖି ଉପେକ୍ଷୁ ସର୍ବ ଦୁଃଖ ।୨୫।
କରୁଣା କଟାକ୍ଷ ମଧୁର । ଅମୀୟୁ ହାସ ସୁଧାକର ॥
ନ ଦେଖି ହେଉଅଛୁ ଦୁଃଖୀ । ତୁ ସର୍ବ ଆତ୍ମା ସର୍ବସାକ୍ଷୀ ॥
ପ୍ରଳାପ ବଚନ ଆକୁଳେ । ଘୋର ଗହନ ବନଶାକାଳେ ॥
ବୃକ୍ଷମାନଙ୍କୁ ପଚ୍ଛରନ୍ତି । କାନ୍ୟକୁ ବୃନ୍ଦାଂଶ ବେଦନ୍ତି ॥
କରନ୍ତି ହାହାକାର ଧ୍ୱନି । ଭଜନେ ଲୋଟନ୍ତି ଅବନୀ ॥
ବର୍ଣ୍ଣି କେଶ ବାସ ଛରୁ । ଶ୍ରୀକୃଷ୍ଣ ବନୁ ଗୋପ ଭରୁ ॥
ବୋଲନ୍ତି ହେ ଅଗସ୍ତି ତରୁ । ତୁ ବୃକ୍ଷ ବାହାର ସଂସାରୁ ॥
ତୁ ଦ୍ରୁମ ରୂପେ ନାରାୟଣ । ପ୍ରାଣୀଙ୍କ ମଙ୍ଗଳ କାରଣ ।୩୩।
ଆମ୍ଭଙ୍କୁ କର ଅନୁଗ୍ରହ । କୃଷ୍ଣ ଗମନ ମାର୍ଗ କହ ॥
ମନ୍ଦ ମଧୁର ହାସ ରସେ । କରୁଣା ନୟନ ପ୍ରକାଶେ ॥
ଆମ୍ଭ ନୟନ ମନ ହରି । ଭଜପ୍ରେ କଲେ ବେଣୁଧାରୀ ॥
ହେ ବଟ ବୃକ୍ଷ ଶିରୋମଣି । ଶ୍ରୀକୃଷ୍ଣ ଲୀଳା ଗତିଜାଣି ॥
କହିବୁ ଆମ୍ଭର ଅଗ୍ରତେ । ହେ ବୃକ୍ଷ ରାଜ ଦୟା ଚିତ୍ତେ ॥
ହେ ପ୍ଲକ୍ଷ କହ କୃଷ୍ଣ ପଥ । ଲୀଳା ଗମନ ବେଣୁ ହସ୍ତ ॥
ଭଜପ୍ରେ କଲେ ଯେଉଁ ମାର୍ଗେ । ବୃନ୍ଦାଂଶ୍ରି କରୁଣା ଅପାଙ୍ଗେ ॥
ହେ କୁରୁବକ ହେ ଅଶୋକ । ହେ ନାଗ ପୁନ୍ନାଗ ଚମ୍ପକ ।୪୧।
ମାନନୀ ବୃନ୍ଦ ଦର୍ପହର । ସ୍ମିତ ବଦନ ବେଣୁଧର ॥
ଗମନ କଲେ କଉତୁକେ । ଆମ୍ଭେ ସକଳ ମହାଶୋକେ ॥
କାନନେ ହୋଇଲୁ ଅନାଥ । ହେ ଦ୍ରୁମ କହ କୃଷ୍ଣ ପଥ ॥
ହେ ଦେବୀ ତୁଳସୀ କଲ୍ୟାଣୀ । ଗୋବିନ୍ଦ ପ୍ରାଣପ୍ରିୟା ମଣି ॥
ଶ୍ରୀକୃଷ୍ଣ ହୃଦୟ କମଳେ । ତୁ ଦେବୀ ଥାଉ ସର୍ବକାଳେ ॥

ତୋର ସୁଗନ୍ଧ ବାସ ରସେ । ଭ୍ରମର ଯୂଥ କଲ ଘୋଷେ ।୪୭।
ଲୋଭେ କରନ୍ତି ଅନୁଗତ । ଶ୍ରୀକୃଷ୍ଣ ଅଙ୍ଗେ ତୋ ବସନ୍ତ ॥
ତୁ କି ନଜାଣୁ କୃଷ୍ଣ ଲୀଳା । କନ୍ଦ୍ରଣା ସିନ୍ଧୁ ନନ୍ଦବଳା ॥
ଗୋପୀଜନଙ୍କୁ ତେଜି ବନେ । ଗମନ କଲେ ଅନ୍ତର୍ଦ୍ଧାନେ ॥
ତା ବିନୁ ନରହେ ଜୀବନ । ଯେ ମାତ୍ର ହୋଇଅ ଗୋ ପ୍ରସନ୍ନ ॥
କୃଷ୍ଣ ଗମନ କହ ବେଗେ । ତୋ ଅଭିଳାଷ କୃଷ୍ଣ ସଙ୍ଗେ ॥
ଯେ ଦେଖା ମାଳତୀ କନ୍ୟକେ । ଯେ ଯାତି ଯୂଥ ଲବଙ୍ଗିକେ ॥
ମଲ୍ଲୀ ଲତିକେ ମାଧବୀକେ । ଶ୍ରୀକୃଷ୍ଣ ଚରଣ ରସିକେ ॥
କର ପଲ୍ଲବେ ବନମାଳୀ । ତୁମ୍ଭ କୁସୁମ ଛନ୍ତି ତୋଳି ।୫୫।
ତା କର ଲଗି ତୁମ୍ଭ ଦେହେ । ପୁଲକ କୁଳ ଶୋଭା ବହେ ॥
କୃଷ୍ଣ ଗମନ ତୁମ୍ଭେ ଜାଣ । ବନ କୁସୁମ ଲତାଗଣ ॥
ଆମ୍ଭଙ୍କୁ କର ଅନୁଗ୍ରହ । କୃଷ୍ଣ ସନ୍ଦେଶ ବେଗେ କହ ॥
ହେ ଚୂତ ପିଅଳ ପନସ । ଅସନ କୋବିଦାର ବଂଶ ॥
ବିଲ୍ୱ ବକୁଳ ଜମ୍ବୁ ଅର୍କ । ଚମ୍ପ କଦମ୍ବ ଖର୍ଜ୍ଜୂରକ ॥
ରମ୍ଭା ହିନ୍ତାଳ ତାଳ ଶାଳ । ନିମ୍ବ ଖଦିର ଦ୍ରୁମମାଳ ॥
ଯମୁନା ତଟେ ଅଛ ରହି । ଜନ ରକ୍ଷଣେ ତୁମ୍ଭ ଦେହି ॥
ଅଶେଷ ପ୍ରାଣୀ ଉପକାରେ । ଫଳ ପଲ୍ଲବ ପୁଷ୍ପ ଭରେ ।୬୩।
ସାଧୁଙ୍କ ପ୍ରାୟେ ତୁମ୍ଭ ଗତି । ହେ ପୁଣ୍ୟ କର୍ମା ବନସ୍ଥିତି ॥
ଯେ ହରି କରୁଣା ସାଗର । ଦାସ ବତ୍ସଳ ଦୟାପର ॥
ଆମ୍ଭଙ୍କୁ ତେଜି ଘୋର ବନେ । କିବା ଗଲେ ହୃଦୟମାନେ ॥
ତୁମ୍ଭେ ତାହାର ପଦ୍ମପାଦେ । ପ୍ରଣାମ କର ସଦାନନ୍ଦେ ॥
ସୁମନ ଫଳ ଘେନ ପୂଜ । ଧନ୍ୟ ହୋଇଲ ବୃକ୍ଷରାଜ ॥
କହ ଶ୍ରୀକୃଷ୍ଣ ଗତିସ୍ଥାନ । ଜୀବନ ରଖ ବୃକ୍ଷମାନ ॥
ମୁକୁଳ ସଙ୍କୁଳ ଅବନୀ । ଦେଖି ଭ୍ରମନ୍ତି ଗୋପାଙ୍ଗନା ॥

ବୋଲନ୍ତି ଶୁଣଗୋ ସଙ୍ଗାତ । ଧରଣୀ ପୁଲକ ରାଜିତ । ୭୧ ।
ଶ୍ରୀକୃଷ୍ଣ ପଦ ଅରବିନ୍ଦ । ପରଶେ ହୋଇଲା ଆନନ୍ଦ ॥
ପୂର୍ବେ ବହୁତ ତପ କରି । କୃଷ୍ଣ ଚରଣ ଶିରେ ଧରି ॥
ବହନ୍ତି ପରମ ମଙ୍ଗଳ । ଧନ୍ୟ ଯେ ଅବନୀ ମଣ୍ଡଳ ॥
ଯେ ମାତ ଦେବୀ ବସୁନ୍ଧରେ । କୃଷ୍ଣ ବିଜୟେ ତୋ ଉପରେ ॥
ପୂର୍ବେ ବରାହ ରୂପ ହୋଇ । ଦନ୍ତ ଅଗ୍ରେ ତୋତେ ଧରି ॥
ବାମନ ରୂପେ ପଦ୍ମପାଦେ । ଗ୍ରାସି କଲେ ପାଦବାଦେ ॥
ଧର୍ମ ରକ୍ଷଣେ ନାନା ବାର । ହୋଅନ୍ତି ଯେତେ ଅବତାର ॥
ସେ ସବୁ ସୂକ୍ଷ୍ମ ଅଟୁ ଜାଣି । ତେ ହର ପ୍ରଭୁ ବେନୁପାଣି ।୭୯।
ଧନ୍ୟ ତୋହର ତପବଳ । ଭାବେ ତୋଷିଲୁ ନନ୍ଦବାଳ ॥
କାହିଁ ଅଛନ୍ତି ଦେବ ହରି । ହେମନ୍ତ କହଗୋ ବିସ୍ତାରି ।
ଯେମନ୍ତେ ମୃଗ ଯୂଥ ଦେଖି । ଗୋପୀ ବୋଲନ୍ତି ଶୁଣ ସଖୀ ॥
ଦେଖ କୁରଙ୍ଗ କୃଷ୍ଣ ସାର । ଦେଖି ଶ୍ରୀକୃଷ୍ଣ କଳେବର ॥
ଆନନ୍ଦେ ଅଛନ୍ତି ଯେ ରହି । କୃଷ୍ଣ ଲାବଣ୍ୟ ତନୁ ଚାହିଁ ॥
ମୋହ ହୋଇଲେ ବନଜୀବ । ଲଭି ଶ୍ରୀକୃଷ୍ଣ ପ୍ରେମଭାବ ॥
ଆନନ୍ଦ ଦେଖ ଯେହାଙ୍କର । ଶ୍ରୀକୃଷ୍ଣ ଧ୍ୟାନେ ତତପର ॥
ଯେ ଜାଣିଥିବେ କୃଷ୍ଣପଥ । ପଚାର ଜାଣିମା ସମସ୍ତ । ୮୭ ।
ଯେମନ୍ତ ବୋଲି ପଚାରନ୍ତି । ହେ କୃଷ୍ଣ ସାର ପ୍ରିୟବଣ୍ଣ ॥
ଯେଉପଥେ ଗଲେ ଭଗବାନ । ତୁମ୍ଭେ ଯେ କଲ ଦରଶନ ॥
ନୟନ କଲଯେ ସୁଫଳ । ଧନ୍ୟ ତୁମ୍ଭର ପୁଣ୍ୟବଳ ॥
ପ୍ରିୟା କନ୍ଧରେ ଦେଇ କର । ହସ୍ତରେ ଘେନ ପଦ୍ମସାର ॥
ଗମନ କରନ୍ତି ସଧୀରେ । ସୁଗନ୍ଧ ଲୋଭେ ମଧୁକରେ ॥
ପଛେ ଗୋଡ଼ାନ୍ତି କରି ଧୂନି । ମୋହଇ ଅଶେଷ ଅବନୀ ॥
ତାରୁ ଦେଖନେ ବୃକ୍ଷ ମାନେ । ପ୍ରଣ୍ୟାମ କରି ମନ୍ଥି ତଳେ ॥

ଲେଟନ୍ତି ମନ୍ଦ ଗନ୍ଧ ବାତେ । ଶୋଭା ହଟନ୍ତି ମହାଗଚେ । ୯୫।
ଦେଖ ଗୋ କୁସୁମ ମଞ୍ଜରୀ । ବୃକ୍ଷକୁ ଆଲିଙ୍ଗନ କରି । ୯୬ ।
ସୁନ୍ଦର ପୁଲକ ଅଙ୍କୁରେ । କୃଷ୍ଣ କରଜ ପରଶରେ ॥
ଆନନ୍ଦ ଜଳ ମହାରସେ । ଦ୍ରୁମ ମଞ୍ଜରୀ ପ୍ରେମ ବର୍ଷେ ॥
ସାତ୍ତ୍ୱିକ୍ୟ ଭଳେ କଳେବର । ଅରଣ୍ୟ ହଟନ୍ତି ସୁନ୍ଦର ॥
ଦେଖ ପଲ୍ଲବ ନବରଙ୍ଗ । ପ୍ରକାଶ କୃଷ୍ଣ ଅନୁରାଗ ॥
ଯେ ସେ ଜାଣନ୍ତି କୃଷ୍ଣ ପଥ । ପରସ୍ପର ଜାଣିମା ସଙ୍ଗାତ ॥
ପ୍ରେମମତ୍ତେ ଉନ୍ମାଦ ବଚନେ । ଯେକ ଆରକେ ଗୋପୀଜନେ ॥
କହନ୍ତି ଦଶ ହର ବୃନ୍ଦଂ । ତନ୍ମୟ ରସେ ଭାବ ବନ୍ଧ ।୧୦୩।
କରନ୍ତି କୃଷ୍ଣ ଭାବଲୀଳା । ତନ୍ମୟ ରୂପେ ଗୋପବାଳ ॥
ଯେକ ଗୋପୀଏ ମନ ତୋଷେ । ଆସଇ ପୁତନାର ବେଶେ ॥
ହସ୍ତରେ ଧେନଛୁ କମନ । ମୋହଇ ଅଶେଷ ମଣ୍ଡଳ ॥
ଗୋପୀଏ କୃଷ୍ଣ ରୂପଧରି । ମାୟାରେ ସ୍ତନ ପାନ କରି ॥
ପୁତନା ପ୍ରାଣ ହରିବାଲା । ଆମ୍ଭାକୁ ମଣେ ନନ୍ଦବାଳା ॥
ଶ୍ରୀକୃଷ୍ଣ ରସେ ହୋଇ ମତ୍ତ । ପାଦେ ଶକଟ କଲ ହତ ॥
ଗୋପୀଏ ତୃଣା ବ୍ରତ ରୂପେ । ଚଳିଲ ଗୋକୁଳ ସମୀପେ ॥
ଘୋର ହୁଂକାର ଧ୍ୱନି କରି । ନନ୍ଦ ସୁତକୁ ହଳେହରି । ୧୧୧।
କାନନେ କରଇ ଗମନ । ପ୍ରବଳ ବହଇ ପବନ ॥
କର ଚରଣେ ମହୀ ଚାପି । ଗଗନେ ଆସୁଅଛୁ ବ୍ୟାପୀ ॥
ଆସଇ ଗୁଞ୍ଜୁ ଗୁଞ୍ଜା ଦେଇ । ଦେଖି ହରଷ ସର୍ବ ଗୋଷ୍ଠ ॥
ହିଭଙ୍ଗି ଛନ୍ଦେ ଯେକ ଗୋପୀ । ମୋହନ ବଂଶୀ ମୁଖେ ଚାପି ॥
ମନ୍ଦ ମଧୁର ରବ ଘୋଷେ । ରମ୍ୟ ଲଳିତ ସୁଧାହାସେ ॥
କୃଷ୍ଣ ପରାୟେ ଲୀଳାଗତି । ହେଲେ ମୋହିଲ୍ଲ ବସୁମତୀ ॥
ଯେକ ଗୋପୀଏ କୃଷ୍ଣ ବେଶେ । ହସ୍ତୀର ବୋଲଇ ହରଷେ ॥

ଘୋର ପବନ ବୃଷ୍ଟି କଲେ । ନବାର ନରବ ଅଭୟେ ।୧୧୪।
ଅଞ୍ଚଳ ଟେକି ବାମ କରେ । କୃଷ୍ଣ ଯେସନ ଗିରିଧରେ ॥
କେ ହସି ବୋଲଇ ସଙ୍ଗାତ । ବନେ ଅନଳ ହୋଇଲେ ଜାତ ॥
ସମସ୍ତେ ବୁଜକ ନୟନ । ଅଗ୍ନି କରିବ ମୁହିଂ ପାନ ॥
ଗୋପୀଏ ବୋଲଇ ମିତଣୀ । ମୁଂ ସେ ଗୋକୁଳ ନଶାମଣି ॥
ଦେଖ ମୋହୋର ଲୀଳାଗତି । ଲବଣ୍ୟ ଧାମ ଗୁରୁକାନ୍ତି ॥
କେ ସଖୀ ମୁଖ ଗୁଡ଼ିଂ ଭଷି । ମୁଂ ଜାତ ଦୁଷ୍ଟ ଜନ ନାଶି ॥
ମୁଂ ସେ ଅଲଙ୍କ ଦଣ୍ଡଧର । ହେ ଦୁଷ୍ଟ କାଳୀୟ ପାମର ॥
କାଳନ୍ଦୀ ଛେଡ଼ି ବେଗେ ଯାଅ । ମୋ ଆଗ୍ୟାଂ ଶିରେ ଧରି ଥାଅ ॥
ଯେଉଁ ଗୋପୀଏ ଭୋଳହୋଇ । ଅଞ୍ଚଳେ ସଖୀଙ୍କି ବାନ୍ଧଇ ॥
ବୋଲଇ ଦଧିଭାଣ୍ଡ ମୋର । କମ୍ପାଇଂ କଲୁ ନାରଖାର ॥
ନଚେଂ ଲବଣୀ କରୁ ଚୋର । ବନ୍ଧନେ ଥାଅ ଦାମୋଦର ॥
ତନ୍ମୟ ରୂପେ ଗୋପବାଳା । ବନେ କରନ୍ତି କୃଷ୍ଣ ଲୀଳା ।୧୩୧।
ଆମ୍ଭାଙ୍କୁ କୃଷ୍ଣ ପ୍ରାପ୍ତେ ମଣି । ଶ୍ରୀକୃଷ୍ଣ ରସ ପରିମାଣି ॥
କାନନ ମଧ୍ୟେ ବିହରନ୍ତି । ପର ଅପର ନ ମଣନ୍ତି ॥
ଗୋପୀଜନଙ୍କ ଭାବମନ । ପ୍ରବେଶ କର ସାଧୁଜନ ॥
ଭଜ ଶ୍ରୀକୃଷ୍ଣ ପାଦତଳେ । ନବୁଡ଼ ଭବ ସିନ୍ଧୁଜଳେ ॥
କୃଷ୍ଣ ଚରଣେ ମନ ଦେଇ । ବ୍ରାହ୍ମଣ ଜଗନ୍ନାଥ ଗାଇ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ରାସ ଲୀଳା ବର୍ଣ୍ଣନେ ଗୋପୀକା ଅନ୍ୱେଷଣୋ ନାମ ପଞ୍ଚବିଂଶୋଽଧ୍ୟାୟଃ ।

## ଷଡ଼ବିଂଶ ଅଧ୍ୟାୟ

ପାର୍ବତୀ ଉବାଚ

ବୋଲନ୍ତି ଦେବୀ ଶାକମ୍ଭରୀ । ହେ ନାଥ ଚନ୍ଦ୍ରଖଣ୍ଡ ଧାରୀ ।୧।
ଶ୍ରୀ ବୃନ୍ଦାବନୀ ସଖୀ ସଙ୍ଗେ । କୃଷ୍ଣ ଯେ ଗଲେ ବନ ଭାଗେ ॥

ଏ ସ୍ତବ କଲେ ଦେବ ହର । ହସ୍ତୀ ଠାକୁ ନ ପୂରାଇ ॥
ରୁଦ୍ର ବୋଲନ୍ତି ଶୁଣ ପ୍ରିୟେ । ସେ କୃଷ୍ଣ ସର୍ବ ସୁଖମୟେ ॥
ମନ ଆନନ୍ଦ ରସରଙ୍ଗେ । ବୃନ୍ଦା କାନନେ ବୃନ୍ଦା ସଙ୍ଗେ ॥
ବିଜୟେ କଲେ ଦେବ ରାଜ । ପ୍ରିୟା କନ୍ଧରେ ଦେଇ ଭୁଜ ॥
କରିଣୀ ସଙ୍ଗେ ମତ୍ତ କରୀ । ଲୀଳା ଗମନେ କି ସଞ୍ଚରି ॥
କୃଷ୍ଣ ସଙ୍ଗତେ ଗୋପବଧୂ । ଘନେ ଯେସନେ ଶୋଭଇନ୍ଦୁ ॥
ମର୍କତ ମହୀରୁହେ ରଙ୍ଗେ । ହେମ ମଞ୍ଜରୀ ଅନୁସଙ୍ଗେ ॥
ଜଙ୍ଗମ ରୂପେ ସଞ୍ଚରଇ । କାନନେ ପ୍ରଭୁ ପ୍ରକାଶଇ ॥
ମତ୍ତ ମରାଳ ଲୀଳାଗତି । ସଙ୍ଗେ ମରାଳୀ ରସବତୀ ॥
ଲୀଳା ଗମନେ କୃଷ୍ଣ ରମା । ଯେସନେ ରୋହିଣୀ ଚନ୍ଦ୍ରମା ॥
କାନନ ମଧ୍ୟେ ଶୋଭାପାନ୍ତି । ରସିକ ବର ରସବନ୍ତ ॥
ରମନ୍ତି କାମ କେଳି ରସେ । ବିବିଧ ବିନୋଦ ବିଳାସେ ॥
ହରଷେ ଦେବ ବନମାଳୀ । ସୁଗନ୍ଧ କୁସୁମନ୍ତ ତୋଳି ॥
ଯତ୍ନେ ଗୁନ୍ଥିଲେ ପୁଷ୍ପଦାମ । ସୁନ୍ଦର ଦିଶେ ଅନୁପାମ ।୧୭।
ସବେ ବାନ୍ଧିଲେ କାନ୍ତା କେଶେ । ମଦନ ପ୍ରେମ ରସ ବଶେ ॥
କୋଳ କରନ୍ତି ବାହୁ ତୋଳି । ଭାବେ ସୁବର୍ଣ୍ଣ ରତ୍ନମାଳି ॥
ନିବିଡ଼େ କଲେ ଆଲିଙ୍ଗନ । ଚୁମ୍ବିଲେ ଶ୍ରୀକୃଷ୍ଣ ବଦନ ॥
କେତେହେଁ ଦୂରେ ଦେବ ହରି । ପଲ୍ଲବ ଶଯ୍ୟା ଯତ୍ନ କରି ॥
ବିଞ୍ଚିଲେ ସୁବାସ କୁସୁମ । ଅଙ୍ଗ ଉଦୟେ ଦେବ କାମ ॥
ସଖୀ ସଙ୍ଗତେ ଶଯ୍ୟା ପରେ । ବିଜୟେ ରମଣ ଶୃଙ୍ଗାରେ ॥
ବିବିଧ ରସେ କାମରସ । କ୍ରୀଡ଼ାରେ ବେନି ଜନେ ତୋଷ ॥
ଶିଥିଳ କେଶ ବାସ ତାର । ମଳିଣ ବେଶ ଅଳଙ୍କାର ॥
ତନୁ ଲତିକା ରସଭରେ । ଅଳସ ଅଂଶ ଶ୍ୱାସ ଖରେ ॥
ଘୂମିତ ନୟନେ ସୁନ୍ଦରୀ । ଶ୍ରୀକୃଷ୍ଣ କର କରେ ଧରି ।୨୭।

ମଧ୍ୟରେ ଉଠି ହୋଇଣ ନନ୍ଦ । ଚନ୍ଦ୍ର ଶୋଭନୀ ପୂର୍ଣ୍ଣ ପ୍ରଭା ॥
ହରଷେ ଦେଲ ବେଣୁଧାରୀ । କାନ୍ତା ବଦନ କରେ ଧରି ॥
ଗଣ୍ଡ ଚୁମ୍ବିଲେ ରସ ଭରେ । କମଳେ ଯେହ୍ନେ ମଧୁକରେ ॥
ଶିରେ ବାନ୍ଧିଲେ ସ୍ବରୁକେଶ । ବାସ ପିନ୍ଧାଇ କଲେ ବେଶ ॥
ଚନ୍ଦନ ଲେପି କାନ୍ତା ଅଙ୍ଗେ । ଶୁଦ୍ଧାନ୍ତ ବଙ୍କିମା ଅପାଙ୍ଗେ ॥
ଭାବେ ହସନ୍ତି ବେନିଜନ । ଆନନ୍ଦେ ଦେବ ଭଗବାନ ॥
ସଙ୍ଗେ ରମଣୀ ରତ୍ନ ଘେନି । ହରଷେ ବନ ଭୂମି ଆସି ॥
ହସି ବୋଲନ୍ତି ବୃନ୍ଦାବନୀ । ଶୁଣ ଗୋକୁଳ ନାଗପତ୍ନୀ ।୩୪।
ଦୁର୍ଗମ ଅନ୍ଧକାର ଭୂମି । ଚରଣେ ନପାରଇ ଭ୍ରମି ॥
ଶୁଣି ସନ୍ତୋଷ ଦେବ ରାଜ । ହରଷେ ଧରି ସଖୀ ଭୁଜ ॥
କନ୍ଧ ଉପରେ ବସାଇଲେ । ଅରଣ୍ୟ ମଧ୍ୟେ ସଞ୍ଚରିଲେ ॥
ନବୀନ ଘନେ ପୂର୍ଣ୍ଣ ଶଶି । ସଉଦାମିନୀ ତେଜ ରାଶି ॥
ନୀଳ ରୁଚିର ମଣି ଧରେ । କନକ ମଞ୍ଜରୀ ସୁନ୍ଦରେ ॥
ଗୋପ କାମିନୀ କୃଷ୍ଣଦେବ । ମୋହିଲେ ଅଶେଷ ଅଦ୍ଭୁତ ॥
କେତେହେଁ ଦୂରେ ଭଗବାନ । ସଖୀ କି କଲେ ଆଲିଙ୍ଗନ ॥
ଲୀଳା ଗମନ ଭୂମିତଳେ । ହସ୍ତ ନବେଣି ସଖୀ ହସ୍ତେ ।୩୨।
ବିବିଧ ବିନୋଦ ବିଳାସ । ବନ୍ଧ ବଚନ ପରି ହାସ ॥
ସଖୀ ସଙ୍ଗତେ ଦେବରସେ । କାନନେ କରନ୍ତି ବିଳାସେ ॥
ସୁନ୍ଦର ସମରେ ବୃନ୍ଦାବନୀ । ଭାବେ ତୋଷିଲ ଗୋପୀପତି ॥
ମନେ ବଢ଼ିଲା ଗର୍ବ କନ୍ଦ । କେଉଁ ଯାଉଁ ମୋର ପୁଣ୍ୟ କନ୍ଦ ॥
ରମିଲେ ଦେବ ବ୍ରହ୍ମରାଶି । ସଫଳ କଲ ବ୍ରହ୍ମନିଶି ॥
ଯେତେକ ଯୁବତୀ ପୂର୍ଣ୍ଣସ୍ବଳା । ତାହାଙ୍କୁ ତେଜି ବେଣୁଧାରୀ ॥
ଯେଣୁକାଳେ ରମଇ ମୋ ସଙ୍ଗେ । ଲୀଳା ବିସ୍ତାରି କାମରଙ୍ଗେ ॥
ଧନ୍ୟ ମୋହର ପୁଣ୍ୟକର୍ମ । କି ଭାଗ୍ୟ ହୋଇଲା ଜନମ ॥

ଜଗତେ ଛନ୍ତି ଯେତେ ନାରୀ । କେହ୍ନେ ନୋହନ୍ତି ମୋତେସରି ।୫୧।
ଯେ ପ୍ରଭୁ କମଳା ରମଣ । ଅନାଦି ପରମ କାରଣ ॥
ଯେ ଯୋଗୀ ଜନଙ୍କ ଦୁର୍ଲଭ । ସେ ମୋ ସଙ୍ଗତେ କଲେ ଭାବ ॥
ଯେତେ ବସ୍ତୁର ଗର୍ବବାଣୀ । ବୋଲଇ ଗୋପାଳ ରମଣୀ ॥

ବୃନ୍ଦାବନ୍ତି ଉବାଚ

ହେନାଥ ଶ୍ରୀନନ୍ଦ ନନ୍ଦନ । ଗୋପୀ ଜନଙ୍କ ପ୍ରାଣଧନ ॥
କ୍ଷଣେ ମାତ୍ରକ ତୁଟନ୍ତି ବୁଦ୍ଧି । ଅଳପେ ନଚଳଇ ଦେହ ॥
କନ୍ଧେ ବସାଇ ନିଅ ମୋତେ । ନୋହିଲେ ନଯିବି ସଙ୍ଗତେ ॥
ହସି ବୋଲନ୍ତି ଦେବ ହରି । ଶୁଣଗୋ ପ୍ରାଣ ସହଚରୀ ।୫୮।
କନ୍ଧ ଉପରେ ମୋର ବସ । କମ୍ପା ତେଜିବୁ ମୋର ପାଶ ॥
ଶୁଣି ଗୋପୀକା ମନ ତୋଷେ । ଉର୍ଦ୍ଧ୍ୱ ଚରଣ କୃଷ୍ଣ ପାଶେ ॥
କନ୍ଧେ ବସାନ୍ତେ ଦାମୋଦର । ତକ୍ଷଣେ ହୋଇଲେ ଅନ୍ତର ॥
ଗୋପୀ ଲୋଟିଲା ଭୂମିଗତେ । ଆତ୍ମା ବକଳ ମୋହ ଚିତ୍ତେ ॥
ବୋଲଇ ଦଶନଗ ଚୁମ୍ବି । ହେନାଥ କର ମୋତେ ତ୍ରାହି ॥
ହେ ନାଥ ରମଣ ସୁନ୍ଦର । ରସିକ ନାଗର ଶିଖର ॥
ହେ ପ୍ରାଣ ବଲ୍ଲଭ ଈଶ୍ୱର । କୃପାସାଗର ବେଣୁଧର ॥
ହେ ମହାପ୍ରଭୁ ଦେବଗୁରୁ । ପ୍ରେମ କାରୁଣ୍ୟର ସମୁଦ୍ର ।୬୨।
ମୋତେ ନବାସି ବନଭାଗେ । ତଜିଯେ ଗଲ କେଉଁ ଭଗେ ॥
ସଖୀସଙ୍ଗାତ ଛଡ଼ାଇଲ । ନିରେଖ କରି ମୋତେ ଗଲ ॥
ଶ୍ରୀମୁଖ ଦରଶନ ଦେଇ । ଜୀବନ ରଖ ହେ ମୋ ଧେଇ ॥
ଦେଖ ମୋହୋର ଦୁଃଖଭୋଗ । ମୁଂ ତୋର ଦାସୀ ସର୍ବକାଳେ ॥
ତୁ ଦେବ ପରମ ପୁରୁଷ । ସର୍ବ ଭୂତରେ ତୋ ନିବାସ ॥
ଶରଣ ସୋଦର ଈଶ୍ୱର । ଭୃତ୍ୟ ବତ୍ସଳ ବାନା ତୋର ॥
ଆରତ ଜନ ଭୟ ହରୁ । ତୁମେ ଅଭୟ ମହାମେରୁ ॥

ନଦେଖି ମୁଖ ଚନ୍ଦ୍ର ତୋର । ହେଉ ହୃଦଇ ଅନ୍ଧକାର ॥
ଯେମନ୍ତେ ବିକଳ ବଚନ । ବହୁତ କରଇ ରୋଦନ ॥
ହୃଦୟେ କର ଯୁଗ ଚାଡ଼ି । ଭୂମିରେ ପଡ଼େ ମୁହଁ ମାଡ଼ି ।୮୭।
ବିକର୍ଣ୍ଣ କେଶ ବାସ ତାର । ବିଗ୍ରହ ହୁଅଇ ଧୂସର ॥
ସହଜେ ନାହିଁ ଦେହେ ଗ୍ୟାନ । କୃଷ୍ଣରେ ରଖିଛୁ ଜୀବନ ॥
ତାର ବିକଳ ଦେଖି ବନେ । ଆକୁଳ ପକ୍ଷୀ ମୃଗ ମାନେ ॥
ରୁଦ୍ର ବଚନ ଶୁଣି କର୍ଣ୍ଣେ । ଉମା ବୋଲନ୍ତି ତୋଷ ମନେ ॥

ପାର୍ବତୀ ଉବାଚ

ହେ ଦେବ ତ୍ରିପୁର ଦହନ । ଅରଣ୍ୟ ମଧ୍ୟେ ଗୋପୀ ଜନ ॥
ଭ୍ରମନ୍ତି ବାଇଆପ୍ରାୟ ହୋଇ । ଦୟା କି ନକଲେ ଗୋସାଇଁ ॥
ଯେ ହରି ସର୍ବଜୀବଙ୍କ ଶ୍ରେଷ୍ଠ । ଆତ୍ମା ପୁରୁଷ ସର୍ବ ଦ୍ରଷ୍ଟା ।୮୩।
ତା ପଦୁପାଦେ ଦାସୀପଣେ । ଗୋପୀ ଭାବିଲେ ଅନୁକ୍ଷଣେ ॥
ଭାସିଲେ କୃଷ୍ଣମୟ ରସେ । ଆତ୍ମା ବିସ୍ତାରି ବନ ଦେଶେ ॥
କାହିଁକି କଲେ ଗୋପବାଳୀ । କାହିଁ ଭେଟିଲେ ବନମାଳୀ ॥
ହସି ବୋଲନ୍ତି ସଦାଶିବ । ଶୁଣ ଗୋ ଗୋପୀଙ୍କର ଭାବ ॥

ଶିବ ଉବାଚ

କୃଷ୍ଣଙ୍କୁ ନଦେଖି ନୟନେ । ତନ୍ମୟ ଲୀଳାରସ ମନେ ॥
ବନେ ଗମିଲେ କେତେଦୂର । କହନ୍ତି ବଚନ ମଧୁର ॥
ସତେ ହେଁ ନନ୍ଦସୁତ ହରି ।ଭେଟି ପାଇବା ସହଚରୀ । ୯୦ ।
ତେବେ ସେ ରହିବ ଜୀବନ । ଜୀବନ ପ୍ରଭୁ ଭଗବାନ ॥
କେ ବୋଲେ ଶୁଣଗୋ ମିତଣୀ । କୃପା କରିବେ ବେଣୁପାଣି ॥
ସେ ଆମ୍ଭ ଜୀବନ ଠାକୁର । ମନରେ ନଧର ଅନ୍ତର ॥
ଯେମନ୍ତ କହି ପରସ୍ପରେ । ଭ୍ରମନ୍ତି ଅରଣ୍ୟ କନ୍ଦରେ ॥
କୃଷ୍ଣ ଗମନ ମାର୍ଗ ପଥ । ପ୍ରବେଶ ହୋଇ ଗୋପୀ ଯୂଥେ ॥

କୃଷ୍ଣ ଚରଣ ଚିହ୍ନ ଦେଖି । ଆନନ୍ଦ ବୋଲନ୍ତି ଗୋ ସଖି ॥
ଯେଉଁ ପଥେ ଗଲେ ନନ୍ଦସୁତ । ଚରଣେ ଅବନୀ ଶୋଭିତ ॥
ଧ୍ୱଜ ଅଙ୍କୁଶ ବଜ୍ର ମୀନ । ଯେଉଁ ଆଦ୍ୟ ଅଷ୍ଟାଦଶ ଚିହ୍ନ ॥
ଶ୍ରୀ ପଦ୍ମ ପାଦେ ଛତ୍ର ବନ୍ଧ । ସୁନ୍ଦର ଦିଶେ ସର୍ବ ମଧ୍ୟ ॥
ଯେଉଁମନ୍ତେ ବନ୍ଧ ଯେଉଁକେ ଯେଉଁକେ । ବନେ ଗମନ୍ତି ମନ ଶୋକେ ॥
କୃଷ୍ଣ ଚରଣ ପଦ୍ମ ଲଗେ । ସଂଯୋଗ ହୋଇ ବନସ୍ଥଗେ ॥
ଦେଖିଲେ ବୃନ୍ଦାବଣ ପାଦ । ହୋଇଲେ ପରମ ବିଷାଦ ।୧୦୨
ବୋଲନ୍ତି ଦେଖ ସଙ୍ଗାତ୍ରୁଣୀ । କା ପୁଣ୍ୟବତୀ ଗୋପାଳୁଣୀ ॥
ଶ୍ରୀକୃଷ୍ଣ ସଙ୍ଗତେ ରମଇ । ଯେଉଁ କାନ୍ତଭାବେ ବିହରଇ ॥
ଗୋପୀଜନଙ୍କ ପ୍ରେମ ଧାମ । ଶ୍ରୀକୃଷ୍ଣ ସୁଖ ଅଭିରାମ ॥
ଯେଉଁକାନ୍ତେ କରଇ ରମଣ । ସୁଫଳ କଲା ଗୋ ଜୀବନ ॥
ତା ପାଦ ଚିହ୍ନ ଦେଖି ସଖୀ । ଆମ୍ଭେ ସକଳ ମହାଦୁଃଖୀ ॥
ପୁଣି କେତେଦେହଂ ଦୂରଗଲେ । ବଧୂ ଚରଣ ନ ଦେଖିଲେ ॥
କୃଷ୍ଣ ଚରଣ ରଜ ଦେଖି । ବହୁତ ବୋଲନ୍ତି ଗୋସଖୀ ।୧୦୩।
ଯେଉଁ ରଜ ଲକ୍ଷ୍ମୀ ଧରେ ଶିରେ । ବ୍ରହ୍ମାଶଙ୍କର ପୁରନ୍ଦରେ ॥
ସେ ରଜ ଦେଖ ଗୋ ନୟନ । ସୁନ୍ଦର ଦିଶଇ ପୁଳିନ ॥
ଦେଖ ଗୋ କୃଷ୍ଣ ପାଦ ଚିହ୍ନ । ବାଳୀରେ ହୋଇଛି ନିମଗ୍ନ ॥
କାଅବା ସଖୀକି କନ୍ଧରେ । ବସାଇ ନେଲେ ପ୍ରେମଭରେ ॥
ଭୂମିରେ ଭାର କାନ୍ତା ହୋଇ । ଚରଣ ଚିହ୍ନ ବିରାଜଇ ॥
ପ୍ରପଦ ଚଙ୍କ ଚିହ୍ନଦିଶି । ପାଦାଗ୍ରେ ହେଉ ବ୍ରହ୍ମରାଶି ॥
ସଖୀ ଯେ ଥିଲା ତାଙ୍କ କୋଳେ । ତା କେନି ପାଦ ମହୀତଳେ ॥
ସୁନ୍ଦର ଦିଶଇ ଧୂଳିରେ । ଦେଖ ଗୋ ପଲ୍ଲବ ଶଯ୍ୟାରେ ॥
ଆନନ୍ଦେ କଲେ କାମକେଳି । ହରଷ ମନେ ବନମାଳୀ ।୧୧୮।
ଯେଉଁମନ୍ତେ କୃଷ୍ଣ ଗତି ପଥ । ବନେ ଝୁଣ୍ଡନ୍ତି ଗୋପୀ ଯୂଥ ॥

କେତେଦୂରେ ଦୂରେ ବୃନ୍ଦାବତୀ । ସଖୀଙ୍କି ଦେଖିଲେ ଯୁବତୀ ॥
ପ୍ରିୟ ବିଚ୍ଛେଦ ଭ୍ରମଚିତ୍ତେ । ଅଚୈତନ୍ୟ ହୋଇ ମହୀଗତେ ॥
ପ୍ରଖର ବହଇ ନିଶ୍ୱାସ । ଗୋପୀଏ ମିଳିଲେ ତାପାଶ ॥
ବୋଲନ୍ତି ଦେଖି ଦୁଃଖଚିତ୍ତ । କେଉଁଠି ନିର୍ଦ୍ଦୟ ନନ୍ଦସୁତ ॥
ସେ ତାକୁ ପ୍ରିୟ ପଣେ ଭଜି । ହୋଇଲା ତାହାର ଗର୍ବ ଗଞ୍ଜି ॥
ସେତେ ବିଧୁର ଗୋପୀ ଜନେ । ଆଶ୍ୱାସି ମଧୁର ବଚନେ ॥
ବୋଲନ୍ତି ଶୁଣ ଗୋ ସଙ୍ଗାତ । ତୁ କିମ୍ପା ହୋଇଲୁ ଅନାଥ ।୧୨୭।
ଆମ୍ଭଙ୍କୁ ତେଜି ନରବର । ଏକାନ୍ତେ ତୋତେ ପ୍ରିୟ କର ॥

ବୃନ୍ଦାବତୀ ଉବାଚ

ଶୁଣି ବୋଲଇ ସନ୍ଦରୀ । ଯାହା କହିଲ ଗୋପ ନାରୀ ॥
ସେ ହରି ସର୍ବ ସୁଖଧାମ । ଭକତ ବାଞ୍ଛା କଳ୍ପଦ୍ରୁମ ॥
ଭକ୍ତ୍ୟ ବତ୍ସଳ ଭାବଗ୍ରାହୀ । ଗର୍ବ ଗଞ୍ଜନ ବାନାବହି ॥
ହୃଦୟେ କଲି ମୁହିଂ ଗର୍ବ । ଏ ସବୁ କଥା ଜାଣିଲେ ମାଧବ ॥
ତେଣୁ ନିଗ୍ରହ ମୋତେ କଲେ । ଅରଣ୍ୟ ମଧ୍ୟେ ତେଜି ଗଲେ ॥
ସଖୀ ବଚନ କର୍ଣ୍ଣେ ଶୁଣି । ବିସ୍ମୟ ମନେ ଗୋପାଙ୍ଗଣୀ ।୧୩୩।
ଦୁଃଖ ହୋଇଲା ଗୁରୁତର । ନୟନୁ ବହେ ନୀର ଧାର ॥
କରନ୍ତି ହାହାକାର ଧ୍ୱନି । ମୂର୍ଚ୍ଛନ୍ତି ଲୋଟନ୍ତି ଅବନୀ ॥
ମନେ ହୋଇଲା ଚମତ୍କାର । ବିସ୍ମରି ଆତ୍ମା ପର ବର ॥
ସକଳେ ହୋଇ ଏକ ମେଳ । ପ୍ରଳାପ ବଚନେ ଗୋପାଳୀ ॥
ଶ୍ରୀକୃଷ୍ଣ ଗୁଣ ଯଶମାନ । ବିଶେଷେ କରନ୍ତି ଗାୟନ ॥
ସୁଜନେ ଶୁଣ ଏକ ମନେ । ଗୋପୀଜନଙ୍କ ଭାବଧ୍ୟାନେ ॥
ଶ୍ରୀଭାଗବତ ରାସ ଅର୍ଥ । କହଇ ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ରାସ ବର୍ଣ୍ଣନେ ବୃନ୍ଦାବତୀ ସନ୍ଦର୍ଶନୋ ନାମ ଷଷ୍ଟିତମୋଽଧ୍ୟାୟ ।

# ସପ୍ତବିଂଶ ଅଧ୍ୟାୟ

ଶ୍ରୀ ଈଶ୍ୱର ଉବାଚ

ରୁଦ୍ର ବୋଲନ୍ତି ଶୁଣ ପ୍ରିୟେ । କୃଷ୍ଣ ଚରଣେ କର ଲୟେ ।୧।
ଗୋପୀ ବୋଲନ୍ତି ପ୍ରିୟ ବାଣୀ । ହେ ପ୍ରାଣ ନାଥ ବେଣୁପାଣି ॥
ତୁମ୍ଭ ଜନ୍ମରୁ ଗୋପପୁରୀ । ବ୍ରଜପୁ ଲକ୍ଷ୍ମୀ ଆଶ୍ରେ କରି ॥
ଧନ ସମ୍ପଦ ଯଶ ସୁଖ । ଅଧିକ ହୋଇଲେ ପଦ୍ମମୁଖ ॥
ହେ ପ୍ରାଣ ଦଇତ ଈଶ୍ୱର । ଆମ୍ଭଙ୍କୁ କର ପ୍ରତିକାର ॥
ଆମ୍ଭେ ତୋହର ନିଜ ଦାସୀ । ଦେଖାଅ ମୁଖ ପୂର୍ଣ୍ଣ ଶଶି ॥
ତୋ ପାଦେ ଖଟାଇ ଜୀବନ । ଆମ୍ଭେ ସକଳେ ଗୋପୀଜନ ।୨।
ତୋ ବିନୁ ଦିଗ ଅନ୍ଧକାର । ତୁ ଆମ୍ଭ ଜୀବନ ଈଶ୍ୱର ॥
ତୋତେ ନପାଇ ବନ ଘୋରେ । ବିକଳ ଜୀବନ କାତରେ ॥
ଶରଦ ସରସିଜ ଦଳ । ନିନ୍ଦଇ ନୟନ ଯୁଗଳ ॥
ସୁହାଂଶ କରୁଣା ଅପାଙ୍ଗେ । ଜୀବନ ରଖ ନାଥ ବେଗେ ॥
ନୋହିଲେ ନରହିବ ପ୍ରାଣ । ହେ ନାଥ ସୁରସ ଭୂଷଣ ॥
ବିନୋଦ ରସ ଚୂଡ଼ାମଣି । ଆମ୍ଭ ହୃଦୟ ତାପ ଜାଣି ॥
ହେ ନାଥ କର ଅନୁଗ୍ରହ । ଶ୍ୟାମଳ ସୁନ୍ଦର ବିଗ୍ରହ ॥
ଆମ୍ଭଙ୍କୁ ରଖ ବାରେ ବାର । ତୁ ନାଥ କରୁଣା ସାଗର ।୧୫।
ଗୋପାଳେ ବିଷ ଜଳ ପାନେ । ଜୀବନ ହାରିଲେ ଅଗ୍ୟାନେ ॥
ଅମୃତ କଲୁ ବିଷ ଜଳ । ଜୀବନ ପାଇଲେ ସକଳ ॥
ଅଘା ଅସୁର ବଳେ ଗିଳି । ତହିଁ ରଖିଲ ବନମାଳୀ ॥
ଇନ୍ଦ୍ର ହେବାଦେ ଗିରିଧାରି । ରଖିଲ ଗୋପପୁର ଶିଶୁ ॥
ଦାବାଗ୍ନି କଲୁ ଦେବ ପାନ । ଗୋପାଳେ ପାଇଲେ ଜୀବନ ॥
ପୁତନା ପ୍ରାଣ କଲୁ ପାନ । ଶକଟା ଜାମଳା ଭଞ୍ଜନ ॥
ତୃଣା ବୁଲେକ ବାତ ରୂପେ । ଗୋପେ ମିଳାଲ୍ଲ ଅନ୍ତକୋପେ ॥

ତାହାଙ୍କୁ କଲୁ ପ୍ରାଣ ହତ । ଦେବାଧି ଦେବ ନନ୍ଦ ସୁତ ।୨୩।
ତୁ ନୋହୁ ଯଶୋଦା ନନ୍ଦନ । ଅଖିଳ ଆତ୍ମା ନିରଞ୍ଜନ ॥
ବିଧାତା କଲ ଯତ୍ନେ ସ୍ତୁତି । ସାତ୍ତ୍ୱତ କୁଳେ ଉତପତ୍ତି ॥
ବିଶ୍ୱ ରକ୍ଷଣେ ତୋର ଜାତି । ଅନାଦି ଅବ୍ୟୟ ଅଚ୍ୟୁତ ।୨୬।
ହେ ବୃଷ୍ଣି ବଂଶ ଧୁରନ୍ଧର । ଯେ ତୋତେ ଭଜେ ନିରନ୍ତର ॥
ତାକୁ ଅଭୟ ପଦ ଦେଇ । ଯେ ହସ୍ତ ପଦେ୍ମ ମହାବାହୁ ॥
ଯେ ହସ୍ତେ ଲକ୍ଷ୍ମୀ କର ଧରି । ଅଖିଳ କାମ ପୂର୍ଣ୍ଣ କରି ॥
ଯେ ହସ୍ତ ସର୍ବ ଭୟ ହରେ । ସେ ହସ୍ତ ଦିଅ ଆମ୍ଭ ଶିରେ ॥
ତୁ ଆମ୍ଭ ଜୀବନର ସଖା । ମୁଖ କମଳ ବାରେ ଦେଖା ॥
ଆମ୍ଭେ ତୋ ଚରଣେ କିଙ୍କରୀ । ଆମ୍ଭନ୍ତ ଭଜ ପ୍ରିୟ କରି ॥
ତୋହର ଶ୍ରୀପଦ୍ମ ଚରଣ । ପ୍ରଣତ ଜନର ଶରଣ ॥
ଗୋ ବୃନ୍ଦ ପଛେ କରେ ଗତି । ଯେ ପାଦେ ଶ୍ରୀୟା ସେବେ ନିତି ॥
କାଳୀୟ ଶିରେ ଯେ ମଣ୍ଡନ । ଯେ ପାଦ ଚିନ୍ତେ ଯୋଗୀଜନ ॥
ସେ ପାଦ ଆମ୍ଭ ହୃଦ ଦେଶେ । ହେ ନାଥ ଦିଅ ମନ ତୋଷେ ॥
କନ୍ଦର୍ପ ଦର୍ପ ଅପହର । ହେ ନାଥ ରମଣ ସୁନ୍ଦର ॥
ହେ ପଦ୍ମ ଲୋଚନ ମୁରାରି । ମଧୁର ହାସେ ପ୍ରିୟ କରି ॥
ଅଧର ଅମୃତ ସେଚନ । କହିବ କୋମଳ ବଚନ ॥
ଗଣ୍ଡ ବିଜାଣି ମୁଖ ଚୁମ୍ବି । ବାହୁ ଯୁଗଳ ଅବଲମ୍ବି ॥
ନିବିଡ଼େ କର ଆଲିଙ୍ଗନ । ହେ ପ୍ରାଣନାଥ ଜନାର୍ଦ୍ଦନ ॥
ହେ ନାଥ ତୁମ୍ଭ କଥା ମୃତ । ତାପିତ ପ୍ରାଣୀଙ୍କ ଜୀବାତ ।୪୨।
ବ୍ରହ୍ମା ଶଙ୍କର ଆଦି ଦେବେ । ନିତ୍ୟ ପଢ଼ନ୍ତି ତୁଷ୍ଟି ଭାବେ ॥
ଜନ୍ମ କଲ୍ମଷ କରେ ନାଶ । ଶ୍ରବଣ ମଙ୍ଗଳ ପ୍ରକାଶ ॥
ଶ୍ରୀୟା ସଞ୍ଜୁତ ତୋର ଗୁଣ । ଯେ ପ୍ରାଣୀ କରେ ଉଚ୍ଚାରଣ ॥
ସେ ଟି ସକଳ ସୁଖ ଦାତା । ଅଶେଷ ଦାନ ପୁଣ୍ୟ କର୍ତ୍ତା ॥

ତୋ ପାଦେ ମୋହ ସର୍ବ ପ୍ରାଣୀ । ତରନ୍ତି ଭବ ତରଙ୍ଗିଣୀ ॥
ତୋର ମଧୁର ମନ୍ଦହାସ । ପ୍ରେମ କଟାକ୍ଷ ଭାବରସ ॥
ମଦନ ବିଳାସ ବିହାର । ଧ୍ୟାନ ମଙ୍ଗଳ ସେ ଆମ୍ଭର ॥
ଯେତୁକାନ୍ତି ବପୁର ତୋହୋର । ସୁମତି ହୃଦୟ କାତର ॥
ଗୋପ ନଗରେ ଯେତେବେଳେ । ଗୋବତ୍ସ ଘେନି ବାଳମେଳେ ॥
ବନେ ବିଜୟ କର ନାଥ । ଆମ୍ଭର ମନେ କ୍ଷୋଭ ଜାତ ।୫୨।
ନଳିନ ସୁନ୍ଦର ଚରଣ । ଅରଣ୍ୟେ ଲାଗି ଶିଳତୃଣ ॥
ଶ୍ରୀଶ୍ରୀ ହୋଇବ ପାଦତଳ । ଭାବିତ ହୋଉ ସମାକୁଳ ॥
ଦିବସ ଶେଷେ ବାଳ ସଙ୍ଗେ । ବିଜୟେ କର ଲୀଳାରଙ୍ଗେ ॥
ଅଳକାବୃତ ସ୍ମିତ ମୁଖ । ଦେଖି ଉପେଖଂ ସର୍ବ ଦୁଃଖ ॥
ଗୋରଜେ ସୁନ୍ଦର ଶ୍ରୀଅଙ୍ଗ । ବସନ ବର୍ଣ୍ଣଇ ପିଶଙ୍ଗ ॥
ଅରୁଣ ଅପାଙ୍ଗ ଲହସ । ଦେଖି ନସ୍ତରୁ ଗୋପନାସ ॥
କନ୍ଦର୍ପ କୋଟିଏ ମଦନ । ହୃଦୟ କରଇ କଦନ ।୫୯।
ନୟନ ଚକୋର ଆମ୍ଭର । ଦେଖି ତୋ ମୁଖ ସୁଧାକର ॥
ଆନନ୍ଦ କେ ପାଶବ କିବା । ପ୍ରସନ୍ନ ହୁଅ ଭବଗ୍ରାହ୍ମୀ ॥
ସୁନ୍ଦର ଚରଣ ପଙ୍କଜ । ସ୍ତୁତେ ନବେଶି ଦେବରାଜ ॥
ଯେ ପଦ ପଙ୍କଜ କମଳା । ନିତ୍ୟେ ସେବନ ରସେଭୋଳା ॥
ପ୍ରଣତ ଜନ କାମପ୍ରଦ । ଯେ ପଦ ଧରଣ ସମ୍ପଦ ॥
ବିପଦ କାଳେ ଚିନ୍ତାକର । ସକଳ ଆପଦୁଂ ନସ୍ତର ॥
ଅଶେଷ ମଙ୍ଗଳ କାରଣ । ଯେ ପଦ କମଳ ଭୂଷଣ ॥
ସେ ପଦ ସ୍ତନେ ଯେବେ ଲାଗି । ଆମ୍ଭେ ହୋଇବୁ ସଉଭାଗୀ ।୬୨।
ସୁରତି ବନ୍ଧନ ସୁନ୍ଦର । ଶୋକ ନାଶନ ଯେ ଆମ୍ଭର ॥
ବଂଶୀ ଚୁମ୍ବନ କୁତୁହଳେ । ଜଗତ ମୋହ ଅବହେଳେ ॥
ଅଖିଳ ଜନ ଅନୁରାଗ । ଯେ ରଙ୍ଗ ଅଧର ସଂଯୋଗ ॥

ଯେଉଁ ରଙ୍ଗ ଅଧରୁ ଅମୃତ । ପାନ କରୁଅ ନନ୍ଦସୁତ ॥
ଯେତା ମୁଖ ନଦେଖି ଶ୍ରୀରଙ୍ଗ । ନିମିଷ ମଣୁ କୋଟି ଯୁଗ ॥
ଦେଖିଲେ ମୁଖ ଚନ୍ଦ୍ର କାନ୍ତି । ଫିଟଇ କାମ ତମଭ୍ରାନ୍ତି ॥
ତୋ ମୁଖ ଅରବିନ୍ଦ ଗନ୍ଧେଂ । ଆନନ୍ଦ ହୋଇ ସବୁ ଗୋଇ ॥
ନୟନ ପିଛୁଡ଼ା ନଥିଲ । କୋପେ ଧାତାକୁ ଦେଉ ଗାଳି ॥
ସେ ଆମ୍ଭ ନୟନ କମଳେ । ନିର୍ମାଇ କଲ ପକ୍ଷ୍ମମାଳେ । ୭୬ ।
ଯେ ବନ୍ଧୁ ଜଗତରେ ବଡ଼ । ଆମ୍ଭେ ତାହାଙ୍କୁ ହେଲୁ ଜଡ଼ ॥
ପତି ତନୟ ଇଷ୍ଟ ମିତ୍ର । ସଖା ସୁହୃଦ ବନ୍ଧୁ ଭ୍ରାତ ॥
ସମସ୍ତ ଲଂଘି ଗୋପବାଳୀ । ତୋ ପଦ୍ମ ପାଦ ତଳେ ମିଳି ॥
ରଜନୀ କାଳେ ଘୋର ବନେ । କମ୍ପା ତେଜିଲ କୋପ ମନେ ॥
କିତବ ମାନଙ୍କର ଗୁରୁ । ଅଶେଷ ଧର୍ମ ରକ୍ଷା କରୁ ॥
କୃପା ଲୋଚନ ମନ୍ଦହାସ । ସୁନ୍ଦର ଦୀର୍ଘ ବକ୍ଷ ଦେଶ ॥
ଦେଖି ହୋଇଲୁ ଆମ୍ଭେ ମୋହ । ହେ ନାଥ କର ଅନୁଗ୍ରହ ॥
ବିଶ୍ୱ ମଙ୍ଗଳେ ତୋ ପ୍ରକାଶ । ଆମ୍ଭ ସଙ୍କଟେ କରୁ ନାଶ । ୮୪ ।
ତୋଭବେ ବଳଲ ଉତ୍ସାହା । ତୁ ଦେବ ଦୀନ ଜନ ସାହା ॥
ଆମ୍ଭଙ୍କୁ ରଖ ପାଦ ତଳେ । ତୋ ବିନୁ ଜୀବନ ବିକଳେ ॥
କାହାଂକ ଯିବୁ ଦୟାନିଧି । ଉପାୟେ ନବଳଇ ବୁଦ୍ଧି ॥
ତୋ ନାମ ଧରି ଦେଶାନ୍ତରେ । କି ଅବା ବୁଲିବୁ ସଂସାରେ ॥
ପଶିବୁ ଅରଣ୍ୟ କନ୍ଦରେ । ପ୍ରାଣ କି ତେଜିବୁ ଶସ୍ତ୍ରରେ ॥
ତୁ ନାଥ ସର୍ବ ବୁଦ୍ଧି ଦାତା । ସର୍ବ ରକ୍ଷଣ ହର୍ତ୍ତା କର୍ତ୍ତା ॥
ତୋ ପଦ୍ମ ଚରଣେ ଆମ୍ଭର । ଜୀବନ ଧନ ପର ପର ॥
ଯେ ପାଦ ପଦ୍ମଭବ ତୋଳେ । ସ୍ତନ ମଣ୍ଡଳେ ଗୋପବାଳୀ । ୯୨ ।
ଆନନ୍ଦେ କରି ବିଭୂଷଣ । ବିଗୃରୁ ସର୍ବ ସଖୀଗଣ ॥
କୋମଳ ସ୍ତନ ଯେ ଆମ୍ଭର । ସୁନ୍ଦର ପାଦ ସୁକୁମାର ॥

ଲଗିଲେ ଚାଲକ ପ୍ରେ ପାଦ । ପ୍ରେତେ ବକ୍ଷ ଘାଜବାସ ॥
ପ୍ରେ ପଦ୍ମପାଦ ଭୂମିଗତେ । ଅରଣ୍ୟେ ଭ୍ରମଇ ବାପଥେ ॥
କୁଶ ପଷାଣ ଦ୍ରୁମ ଭୂମି । ଭ୍ରମି ହୋଇଲ ପଥଶ୍ରମି ॥
ଭୂଦେବ ଆମ୍ଭର ଜୀବନ । ଚେଷ୍ଟା ଆକୁଳ ଆମ୍ଭ ମନ ॥
ହେ ପ୍ରାଣନାଥ ପ୍ରିୟପତି । ସବ ସମ୍ପଦ ସୁଖଗତି ॥
ଅନେକ ମତେ କଲେ ସ୍ତୁତି । ଅଶେଷ ଗୋକୁଳ ଯୁବତୀ ।୧୦୦।
ଦୟା କରିବେ ପଦ୍ମମୁଖ । ଖଣ୍ଡିବେ ଗୋପୀଙ୍କର ଦୁଃଖ ॥
ଯେ ଦୁଃଖ ନାଶନ ମୁରାରି । ତାହାଙ୍କ ପଦ ଚିତ୍ତେ ଧରି ॥
କହଇ ବିପ୍ର ଜଗନ୍ନାଥ । ସୁଜନେ ଶୁଣ ରସ ଗ୍ରନ୍ଥ ॥

ଇତି ଶ୍ରୀମତ୍ ପରମହଂସେ ଶୌକାଗମେ ରାସଲୀଳା ବର୍ଣ୍ଣନେ ଗୋପୀକାନୁ ଗୀତଂ ନାମସପ୍ତବିଂଶତିତମ ଅଧ୍ୟାୟ ।

## ଅଷ୍ଟାବିଂଶ ଅଧ୍ୟାୟ

### ଈଶ୍ୱରଉବାଚ

ସୁଜନେ ଶୁଣ ମନ ତୋଷେ । ରୁଦ୍ର କହନ୍ତି ଉମା ପାଶେ ।୧।
କୃଷ୍ଣ ବିଚ୍ଛେଦେ ସବେ ଗୋଇ । ପ୍ରଳାପ ରସେ ଗୀତ ଗାଇ ॥
ହରି ଚରିତ୍ର ଗୁଣମାନ । ଚିତ୍ତେ ସୁମରି ଗୋପୀଜନ ॥
ରୋଦନ କଲେ ଉଚ୍ଚସ୍ୱରେ । ପ୍ରେମ କାରୁଣ୍ୟ ରସଭରେ ॥
ମଣ୍ଡଳ ହୋଇ ଥିଲେ ବସି । କରୁଣା ଚିତ୍ତେ ବ୍ରଜବାସୀ ॥
ବିଜୟେ କଲେ ବେନୁପାଣି । ସକେ ବିକଳ ଭାବ ଜାଣି ॥
ମୁଖ ପଙ୍କଜେ ମନ୍ଦ ହାସ । ଅରୁଣ ଅପାଙ୍ଗ ପ୍ରକାଶ ॥
ଶିରେ ଶେଖର ପୁଷ୍ପଦାମ । କୋଟି ମଦନ ଅଭିରାମ ॥
କର୍ଣ୍ଣେ କୁଣ୍ଡଳ ବେଣୀଶୋଭା । ଗଣ୍ଡେ ଝଲକେ ରତ୍ନପ୍ରଭା ।୧।
ଅଳକାବୃତ୍ତ ମନୋହର । ସୁନ୍ଦର ସୁରଙ୍ଗ ଅଧର ॥
କଣ୍ଠେ ଭୂଷଣ ରତ୍ନହାର । ହୃଦୟ କମଳ ବିସ୍ତାର ॥

ଆଯାନୁ ଧର୍ଘ ବାହୁବେନ । ପତନ ଗ୍ରୈଳ ପତ୍ରଧାନ ॥
କୁସୁମ ମାଳ ବକ୍ଷସ୍ଥଳେ । ମଧୁର ବଂଶୀ କରତଳେ ॥
ମତ୍ତ କୁଞ୍ଜର ଲୀଳାଗତି । ନବ ଜଳଦ ବପୁ କାନ୍ତି ॥
ଶ୍ରୀକୃଷ୍ଣଦର୍ଶନ ଲାଳସେ । ଗୋପୀ ଗୃହଂ ତ୍ରି ଦଶାଦଶେ ॥
ମଧ୍ୟେ ବିଜୟେ ଦେବହରି । କୋଟି କନ୍ଦର୍ପ ରୂପ ଧରି ॥
ଆନନ୍ଦ ହୋଇ ସର୍ବନାରୀ । ନୟନ କମଳ ବିସ୍ତାରି ।୧୭।
ଦେଖି ପରମାନନ୍ଦ ରୂପ । ହେଲେ ଖଣ୍ଡିଲେ ସର୍ବ ତାପ ॥
ସମସ୍ତେ ଉଠି ବ୍ୟାକୁଳାହେଲେ । ନମିଲେ ପାଦପଦ୍ମ ତଳେ ॥
ନୟନ କମଳ ବିକାଶି । ଦେଖନ୍ତି ଶ୍ୟାମଧାମ ରାଶି ॥
ଇନ୍ଦ୍ରିୟ ଗଣେ ଦେହେ ଥାଇ । ଯେସନ୍ତେ ଆନନ୍ଦେ ପ୍ରାଣପାଇ ॥
ସେ ଗୋପୀଜନେ କୃଷ୍ଣଦେଖି । ବିରହ ବେଦନା ଉପେକ୍ଷି ॥
ଅଞ୍ଜଳି ଅନୁବନ୍ଧ କରି । ଶ୍ରୀକୃଷ୍ଣ ହସ୍ତ କରେ ଧରି ॥
ଗନ୍ଧ ଚର୍ଚ୍ଚିତ ବାହୁବେନ । କେ ଅଂଶେ ଧଇଲେ କାମେଣୀ ॥
ବିରହ ବେଦନା ଅନଳେ । ହୃଦୟେ ତାପ ସମାକୁଳେ ॥
ସ୍ତନେ ଧଇଲେ କୃଷ୍ଣପାଦ । କଳସେ ଯେସନ୍ତେ କୋକନଦ ।୨୬।
କେ ଭ୍ରୂଭେଦଂ ବଙ୍କିମା ଅପାଙ୍ଗେ । ଦଶନ ଚାପଇ କେସରେ
କେ କରେ ଅଙ୍ଗୁଳି ତର୍ଜନା । ଅରୁଣ ନୟନେ ଅଙ୍ଗନା ।
କେ ଚକ୍ଷୁଦ୍ୱାରେ କୃଷ୍ଣାନନ । ହୃଦୟେ ଦେଖି କଲେ ଲୀନ ॥
ନୟନ ଉନ୍ମିଳିତ କଲେ । ହରଷେ ସନ୍ତୋଷ ନୋହିଲେ ॥
ସାଧୁ ଯେସନେ ତା ଚରଣେ । ହେବେ ଭଜଇ ଅନୁକ୍ଷଣେ ॥
ଆନନ୍ଦେ ନୋହଇ ସନ୍ତୋଷ । ବଳାଇ ପାଦ ପଦ୍ମେ ଆଶ ॥
ଗୋପୀ ନେତ୍ରେନେ କୃଷ୍ଣମୁଖ । ନୟନ ପାତେ ପାଇ ସୁଖ ॥
ସନ୍ତୋଷ ନୋହନ୍ତି ହୃଦୟେ । କୃଷ୍ଣ ବଦନ କରି ଲୟେ ।୩୪।
ଗୋପୀୟେ କୃଷ୍ଣ ରୂପ ଗ୍ଲୁହ୍ନଂ.. । ନୟନ ବୁଜି ଧ୍ୟାନେ ରହି ॥

ହୃଦୟ ଦ୍ରବିଲା ତାହାର । ପୁଲକ ଜାତ କଳେବର ॥
ଅଷ୍ଟାଙ୍ଗ ଯୋଗ ଧ୍ୟାନ ରସେ । ଯୋଗିନ୍ଦ୍ର ଯେସନେ ମନ ତୋଷେ ॥
ଶ୍ରୀକୃଷ୍ଣ ରୂପ ରସଲୀଳା । ନୟନେ ଦେଖି ଗୋପବାଳା ॥
ଅଶେଷ ତାପ ଅପହରି । ପରମ ସୁଖେ ମନ ଧରି ॥
ପଣ୍ଡିତ ଦେଖି ଯେସନେ ଜନେ । ତାପ ଖଣ୍ଡନ୍ତି ସୁଖମନେ ॥
ସେ ଗୋପନାରୀଙ୍କର ସଙ୍ଗେ । ଆବୃତ ହୋଇ କୃଷ୍ଣରଙ୍ଗେ ॥
ଦିଶନ୍ତି ପରମ ସୁନ୍ଦର । ଗୁଣ ଶକ୍ତିରେ ନିରାକାର । ୪୨ ।
ଗୋପୀଙ୍କି କଲେ ସମାଧାନ । ବିଜୟେ କାଳିନ୍ଦୀ ପୁଳିନ ॥
କୁନ୍ଦ ମନ୍ଦାର ବିକଶିତ । ସୁଗନ୍ଧ ବହେ ମନ୍ଦବାତ ॥
ଭ୍ରମର କରନ୍ତି ଶବଦ । ଆକାଶେ ଉଦେ ପୂର୍ଣ୍ଣଚନ୍ଦ୍ର ॥
କିରଣେ ଅନ୍ଧକାର ନାଶି । ନଦୀ ପୁଳିନ ଶୋଭାଦିଶି ॥
ଯମୁନା ତରଙ୍ଗ ତରଳ । ନିର୍ମଳ ଦିଶେ ଧୂଳିଜାଳ ॥
ସୁନ୍ଦର ସଇକତ ଶ୍ରେଣୀ । ସଞ୍ଚୟ ନିକେତନ ଜାଣି ॥
ପଣ୍ଡିତ ଯେସନେ ଶ୍ରୁତି ମତେ । ପ୍ରବେଶ ମନୋରଥ ଅନ୍ତେ ॥
କୃଷ୍ଣ ଦର୍ଶନର ଆନନ୍ଦେ । ହରଷ ମନେ ଗୋପୀବୃନ୍ଦେ ॥
ଅଙ୍ଗ ଉତ୍ତରୀ ବାସ ଦେନ । ଆସନ ରଚିଲେ କାମେଶ୍ମା । ୫୧ ।
କୁଚ କୁଙ୍କୁମ ରଙ୍ଗରାଗ । ବସନେ ଦିଶନ୍ତି ସୁଭଗ ॥
ଗୋପୀଙ୍କ ବସାସନେ ବିଜେ । ଆତ୍ମା ବାନ୍ଧବ ଦେବରାଜେ ॥
ଦେବାଧି ଦେବ ଭଗବାନ । ପରମେଶ୍ୱର ନିରଞ୍ଜନ ॥
ଅଷ୍ଟାଙ୍ଗ ଯୋଗେ ଯୋଗୀଜନେ । ହୃଦପୁ କମଳ ଆସନେ ॥
ଧ୍ୟାନେ ଚିନ୍ତନ୍ତି ଯାର ପାଦ । ପ୍ରକାଶ ବ୍ରହ୍ମ ସଦାନନ୍ଦ ॥
ଶୋଭେ ସେ ପ୍ରଭୁ ବ୍ରହ୍ମରାଶି । ଗୋପୀ ଜନଙ୍କ ମଧ୍ୟେ ବସି ॥
ତ୍ରୈଲୋକ୍ୟ ସୁନ୍ଦର ମୋହନ । ଲାବଣ୍ୟ ତନୁ ଭଗବାନ ॥
ନୀଳ ଉତ୍ପଳ ଶ୍ୟାମ ଘନ । ତରୁଣ ତମାଳ କାନନ । ୫୪ ।

ଅତସୀ କୁସୁମ ଶ୍ୟାମଳ । ମର୍କତ ରୁଚି ଦୂର୍ବାଦଳ ॥
ଦଳିତ ଅଞ୍ଜନ ସୁନ୍ଦର । ନନ୍ଦଇ ଶ୍ୟାମ କଳେବର ॥
କୋଟିଏ ମଦନ ମୂରଛନ । କେକୀ ଚନ୍ଦ୍ରିକା ଶୋଭେ କେଶ ॥
କର୍ଣ୍ଣେ କୁଣ୍ଡଳ ଗୁଞ୍ଜମାଳ । ପଙ୍କଜ ମୁଖ ସ୍ମିତଶାଳୀ ॥
କର୍ଣ୍ଣେ କଦମ୍ବ ଅବତଂସ । ରଙ୍ଗ ନୟନ ତାମରସ ॥
ନାସେ ସୁନ୍ଦର ଗଜମୋତି । ଯେସ୍ନେ ଆକାଶେ ଚନ୍ଦ୍ରଜ୍ୟୋତି ॥
କଣ୍ଠେ ବଗଳେ ରତ୍ନହାର । କୌସ୍ତୁଭ ମଣି ମନୋହର ॥
ଶ୍ରୀବତ୍ସ ଲକ୍ଷ ବକ୍ଷ ସ୍ଥଳେ । ରତ୍ନ କଙ୍କଣ ବାହୁମୂଳେ ।୬୭।
ପୀତ ବସନ କଟି ମାଝେ । ମଞ୍ଜିର ଚରଣ ସରୋଜେ ॥
ଅଶେଷ ଲାବଣ୍ୟ ସୁନ୍ଦର । ପରମାନନ୍ଦ ରୂପସାର ॥
ନୟନେ ଦେଖି ଗୋପବାଳୀ । ଆନନ୍ଦେ ପିଚ୍ଛଡ଼ା ନଗୁଳ ॥
ବଙ୍କ ନୟନେ ମନ୍ଦହାସେ । କୃଷ୍ଣଙ୍କୁ ବେଢ଼ି ଚଉପାଶେ ॥
କେ ଧରନ୍ତି ଯାନୁ ଦୁଇ । କେ ବାହୁ ଯୁଗେ ଭର ଦେଇ ॥
କେ ହୃଦେ ଆଉଜାଇ ସୁଖେ । ତାମ୍ବୁଳ ଦିଅନ୍ତି କେ ମୁଖେ ॥
ଚାମର ଢାଳନ୍ତି ତରୁଣୀ । କେ ଧରି ଢାଳନ୍ତି ବିଅଣୀ ॥
କେ ହୃଦେ ଲେପନ୍ତି ଚନ୍ଦନ । କେ କେଶ କରନ୍ତି ବନ୍ଧନ ॥
ଥୋକାଏ କ୍ରୋଧଭର ହୋଇ । ଶ୍ରୀକୃଷ୍ଣଚନ୍ଦ୍ର ମୁଖ ଚୁମ୍ବି ।୬୮।
ବୋଲନ୍ତି ମଧୁର ବଚନ । ଶ୍ରୀ ଦେବ ଦେବ ଭଗବାନ ॥
ଆମ୍ଭେ ତେ ପଦ୍ମପାଦ ତଳେ । କିଙ୍କରୀ ହୋଇ ସର୍ବକାଳେ ॥
ତୋ ଭାବ ଗୁଣ ଅନୁସରି । ଧ୍ୟାନେ ତା ରୂପ ଚିନ୍ତା କରି ॥
ଆନନ୍ଦେ ମନ କରି ସ୍ଥିର । ତୋତେ ପଚ୍ଛୁରୁ ଦାମୋଦର ॥
ତୁ ଦେବ ପୁରୁଷ ଈଶ୍ୱର । ନାଗର ମାନଙ୍କର ବର ॥
ସକଳ କଳା ପରମାଣୁ । ଭାବ ଅଭାବ ସର୍ବଜାଣୁ ॥
ସଂସାରେ ଛନ୍ତି ପ୍ରାଣୀ ଯେତେ । ତାଙ୍କ ପ୍ରକୃତି ଚିହ୍ନ ମତେ ॥

ଭଜିଲା ଲୋକଙ୍କୁ ଯେ ଭଜି । ଅଭକ୍ତ ଜନଙ୍କୁ ନ ଭଜି ।୮୪।
ଆତ୍ମା ଭାବରେ ମନ ରଞ୍ଜି । ଭଜିଲେ ଯେ ନର ନଭଜି ॥
ଯେ ପ୍ରାଣୀ ନ ଭଜନ୍ତେ ଭଜେ । ଅଶେଷ ଲୋକ ଅଭିରଞ୍ଜି ॥
କହିବା ପ୍ରେମାଙ୍କର ଗୁଣ । କୃଷ୍ଣ ବୋଲନ୍ତି ଗୋପୀ ଶୁଣ ॥

ଶ୍ରୀ ଭଗବାନୁବାଚ

ଯାହା ପଚ୍ଛରିଲ ମୋ ଆଗେ । ପ୍ରେମ ସମ୍ଭ୍ରମ ଅନୁରାଗେ ॥
ବିବିଧ ପ୍ରେମ ଭାବଗତି । କହଣେ ଶୁଣ ପ୍ରିୟବତି ॥
ଯେ ପ୍ରାଣୀ ଭଜିଲେ ଭଜଇ । ସୁହୃଦ ଧର୍ମ ନ ଲଭଇ ॥
କେବଳ ଲୋଭେ ଆତ୍ମା ଲାଭ । ଆତ୍ମା କାରଣେ କରେ ଭାବ ॥
ଗୋବତ୍ସ ରଖନ୍ତି ଗୋପାଳ । ନିତ୍ୟେ ଚରାନ୍ତି ତୃଣ ଜଳ ।୯୩।
ସେବନ୍ତି କ୍ଷୀର ଲୋଭ ଆଶେ । ଆତ୍ମା ପୋଷଣ କର୍ମ ତୋଷେ ॥
ଗୋସେବା ଫଳ ନ ଲଭନ୍ତି । ସ୍ୱଧର୍ମ କର୍ମେ ସେ ରହନ୍ତି ॥
ଭଜିଲେ ଭଜନ୍ତି ଯେ ଜନ । ସେ ଆତ୍ମା ଲାଭ ପ୍ରୟୋଜନ ॥
ସଂସାରେ ଥାନ୍ତି ଆତ୍ମା ଧର୍ମେ । ସେ ସଦାଧର୍ମ ନିତ୍ୟ କର୍ମେ ॥
ଅଭାବେ ଅଭାବ ତତ୍ପର । ଭାବେ ଭଜଇ ପ୍ରିୟାକର ॥
ତାହାଙ୍କୁ ବୋଲି ଆତ୍ମା କାମି । ସେ ମୋହ ପାଶେ ହୋଏ ଭ୍ରମି ॥
ଭଜିଲେ ନଭଜନ୍ତି ଯେହୁ । ରାକ୍ଷସ ଅଂଶେ ଜାତ ସେହୁ ॥
ସକଳ ଧର୍ମ ସେ ନାଶନ୍ତି । ପ୍ରାଣୀଙ୍କି ଦ୍ରୋହ ଆଚରନ୍ତି ॥
ସେ ଗୁରୁ ଦ୍ରୋହୀ ମହୀ ତଳେ । ମୋହ ହୁଅନ୍ତି ମାୟା ବଳେ ॥
ଅସାର ବୋଲନ୍ତି ଜଗତେ । ନର୍କରେ ପଡ଼ଇ ସେ ଅନ୍ତେ ॥
ଅଭକ୍ତ ଜନଙ୍କୁ ଯେ ଭାବେ । ଭଜନ୍ତି ଦୟାଳୁ ସ୍ୱଭାବେ ॥
ତାହାଙ୍କୁ ବୋଲି କାରୁଣିକ । ସେ ସତ୍ୟ ଧାର୍ମିକ ବିବେକ ॥
ଯେସନେ ପିତର ଜନନୀ । ବାଳ ପୁତ୍ରଙ୍କୁ ସ୍ନେହ ଘେନି ॥
ନିର୍ମଳ ଭାବେ ଦୟାଚିତ୍ତେ । ପୁତ୍ର ପାଳନ୍ତି ଅବିରତେ ॥

ଯେ ପ୍ରାଣୀ ପିତା ମାତା ପ୍ରାୟେ । ଜଗତେ କରନ୍ତି ସଦାୟେ ॥
ସେ ଟି ମହନ୍ତ ସାଧୁ ଧୀର । ଦୀନ ଦୟାଳୁ ରତ୍ନାକର ।୧୦୯।
ତାହାଙ୍କ ଭାବେ ବଶ ହରି । ସେ ଟି ଜଗତ ଜନ ତାରି ॥
ସେ ଟି ଅଶେଷ ସୁଖମୟେ । ଦେହଲେ ଖଣ୍ଡନ୍ତି ସର୍ବଭୟେ ॥
ଶୁଣ ଗୋ ପ୍ରାଣ ସଙ୍ଗାତ୍ତୁଣୀ । ତ୍ରିବିଧ ମତେ ସର୍ବପ୍ରାଣୀ ॥
ରଜ ତାମସ ସତ୍ତ୍ୱ ଗୁଣେ । ବ୍ରତିଲେ ସଂସାର କାରଣେ ॥
ତ୍ରିଗୁଣ ଜନଙ୍କର ଗତି । କହିଲି ଶୁଣ ମହାସତୀ ॥
ଯେବେ କହଇ ମୋର ଗୁଣ । ସକଳେ ଯେକ ମନେ ଶୁଣ ॥
ମୁଂ ସେ ଅନାଦି ନିରାକାର । ତ୍ରିଗୁଣ ଅତୀତ ଈଶ୍ୱର ॥
ମୁଂ ଯେ ପ୍ରକୃତି ଅଂଶା ଅଂଶେ । ତ୍ରିଗୁଣ ବ୍ରହ୍ମସ୍ୱ ପ୍ରକାଶେ ॥
ଜାତ ହୋଅନ୍ତେ ଚରାଚରେ । ଯେ ସୃଷ୍ଟି ପାଳନ ସଂହାରେ ॥
ମୋହୋର ନାହିଂ ଆଦି ଅନ୍ତ । ମନ ବଚନେ ଅପ୍ରମିତ ॥
ମୁଂ ସର୍ବ ପ୍ରାଣୀ ଚିତ୍ତେ ଥାଇ । ଗୁଣ କରଣେ ନ ମିଶଇ ॥
ଯେ ମୋତେ ଭଜେ ନିରନ୍ତରେ । ଚିତ୍ତ ନିବେଶି ମୋ ପଦରେ ॥
ତାହାଙ୍କୁ ନ ଭଜଇ ମୁହିଂ । ତା ଆତ୍ମା ସୁଖ ବଢ଼ାଇ ॥
ନିର୍ଧନ ଯେସନେ ଧନ ପାଇ । ତଉଦ ବଶେ ତା ହରାଇ ॥
ଚିନ୍ତା କରଇ ନିରନ୍ତରେ । ଦାରିଦ୍ର୍ୟ ଦୁଃଖ ଉପୁଜରେ ॥
ମୋତେ ଭଜନ୍ତି ସାଧୁଜନ । ମୋ ପାଦେ ନିବେଦନ୍ତି ମନ ॥
ମୋ ଭାବ ଭଗତ ବିଶ୍ୱାସେ । ଭଜନ୍ତି ରଜନୀ ଦିବସେ ।୧୧୭।
ମୁଂ ଯେବେ ହୋଇବି ପ୍ରସନ୍ନ । ମୋ ଠାବୁଂ ନିବର୍ତ୍ତିବ ମନ ॥
ଯେତେ ବିଚାରି ନ ଭଜଇ । ସାଧୁଙ୍କ ହୃଦେ ବିହରଇ ॥
ସାଧୁ ମୋହୋର ପ୍ରିୟତମ । ମୁଂ ତାଙ୍କ ଆତ୍ମା ଅଭିରାମ ॥
ମୋହୋର ପୁଣ୍ୟ ଗୁଣ ସବୁ । ନିର୍ଗୁଣ ଭାବେ ସ୍ୱପ୍ରକାଶ ॥
ଲୁଚନ୍ତି ସକଳ ଗୋପନାରୀ । ମୋ ପାଦପଦ୍ମ ଚିତ୍ତଧରି ॥

ଦେଲେକ ଦେବଙ୍କର ସଦାସ୍ତର । ବେଦ ବହିତ କର୍ମସାର ॥
ଯେତ ତନସ୍ତ ଗୃହ ଭୋଗ । ସୁଖ ସମ୍ପଦ ମୋକ୍ଷ ଯୋଗ ॥
ତେଜିଲେ ମାୟା ମୋହ ପାଂଶ । ମୋ ଭାବେ ହୋଇଲ ବଶ୍ୟାସ ॥
ଯଶୋରେ ଭଜିଲ ଗୋ ମୋତେ । ପ୍ରେମ ହୃଦୟ ଭକତରେ ।୧୩୫।

ତୁମ୍ଭ ବଦନ ଅପ୍ରସନ୍ନ । ଦେଖି କାତର ମୋର ମନ ॥
ହେ ସଖୀ ନକର ଗୋ କ୍ରୋଧ । ମୋ ଭାବେ ଆତ୍ମା କର ବୋଧ ॥
ତୁମ୍ଭ ପୀରତି ରସସିନ୍ଧୁ । ଭାବ ଲହରୀ ପ୍ରେମ ବନ୍ଧୁ ॥
ସୁଖେ ଭାସିଲା ମୋର ମନ । ଭାବେ କିଣିଲ ମୋ ଜୀବନ ॥
ଯେ ତୁମ୍ଭ ଭାବେ ମୋ ଚରଣେ । ମନ ନିବେଶି ଅନୁକ୍ଷଣେ ॥
ଭଜଇ ପ୍ରୀତି ଅନୁସରି । ଲଭଇ ପ୍ରେମାନନ୍ଦ ବାରି ॥
ଖଣ୍ଡଇ ବନ୍ଧନ ସମ୍ଭ୍ରମ । ଜନ୍ମ ମରଣ ପଥ ଶ୍ରମ ।୧୪୨।
ତୁମ୍ଭ ଭାବରେ ମୋତେ ଜାଣି । ଭଜ ତରନ୍ତି ପୁଣ୍ୟପ୍ରାଣୀ ॥
ସେ ସତ୍ୟ ବଚନ ଆମ୍ଭର । ହସି ବୋଲନ୍ତି ବେଣୁଧର ॥
ସୁଜନେ ଶୁଣ ମନ ତୋଷେ । ଗୋପୀଜନଙ୍କ ଭକ୍ତି ଆଶେ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ କାରୁଣ୍ୟ ରସ ଗୀତ ॥

ଇତି ଶ୍ରୀମତ୍ ପରମରହସ୍ୟେ ବୈଷ୍ଣବାଗମେ ରାସଲୀଳା ବର୍ଣ୍ଣନେ ଶ୍ରୀକୃଷ୍ଣ ପ୍ରାଦୁର୍ଭାବ ବୋଧନେ ନାମ ଅଷ୍ଟାବିଂଶ ଅଧ୍ୟାୟଃ ।

## ଊନବିଂଶ ଅଧ୍ୟାୟ

### ଶ୍ରୀ ପାର୍ବତୀ ଉବାଚ

ହିମାଦ୍ରୀ ସୁତା ଶୁଣି ତୋଷେ । ପଚାରେ ମୃତ୍ୟୁଞ୍ଜୟ ପାଶେ ।୧।
ହେ ନାଥ ଶଶାଙ୍କ ମଣ୍ଡଳ । କାନନ ମଧ୍ୟେ ଗୋପବାଳୀ ॥
କି ଭାବ କଲେ କୃଷ୍ଣ ସଙ୍ଗେ । ରାସ ବିନୋଦେ ରସ ରଙ୍ଗେ ॥
ବିସ୍ତାରି କହ ମୋ ଅଗ୍ରତେ । ସଦୟ ଅନୁଗ୍ରହ ଚିତ୍ତେ ॥

## ଈଶ୍ୱର ଉବାଚ

ଶୁଣି ସନ୍ତୋଷ ଶୂଳପାଣୀ । ବୋଲନ୍ତି ଶୁଣ ସଙ୍ଗାଭୁଣୀ ॥
କୃଷ୍ଣ ବଚନ ସୁପ୍ରେମଳ । ଶ୍ରବଣେ ଶୁଣିଲେ ସକଳ ॥
ହୋଇଲେ ପରମ ହରଷ । ତଦଙ୍ଗେ ଉପଚିତା ଶେଷ ।୭।
ହୃଦୟ ତାପ ଅପହର । ଅଖିଳ ବରଜ କୁମାରୀ ॥
ଶ୍ୟାମ ଲାବଣ୍ୟ ଘନ କାନ୍ତି । ନୟନେ ଦେଖି ତୋଷ ହୋନ୍ତି ॥
ରମଣୀ ରତ୍ନ ବୃନ୍ଦ ସଙ୍ଗେ । ଗୋବିନ୍ଦ ପ୍ରେମ ଭାବରଙ୍ଗେ ॥
ଆରମ୍ଭ କଲେ ରାସ ଲୀଳା । ଆନନ୍ଦ ମନେ ଗୋପବାଳା ॥
ଯେତେକ ଆଚରେକ ଛନ୍ଦ ଦେବେଶ । ଭୂଜ ନବେଶି ଭାବବଶେ ॥
ହୋଅନ୍ତି ମଣ୍ଡଳ ମଣ୍ଡଳ । ହରଷେ ନୟନ ଉଚ୍ଛଳ ॥
କଦମ୍ବ ପୁଷ୍ପଦଳ ଜାଣି । ଅଙ୍ଗେ ପୁଲକ ରୋମ ଶ୍ରେଣୀ ॥
ଗାୟନ କରନ୍ତି ସୁସ୍ୱରେ । ପଞ୍ଚମ ଧ୍ୱନି ରସ ଭରେ ।୧୪।
କ୍ୱଣିତ କଣନ୍ତି କଙ୍କଣ । ରୁଣିତ ଚରଣ ଭୂଷଣ ॥
ଚଳତ କଣ୍ଠ ରତ୍ନହାର । କଟି ମେଖଳା ରତ୍ନସାର ॥
ବଳୟ ନିନାଦ ମଞ୍ଜୁଳ । ଚଞ୍ଚଳ ଶ୍ରବଣ କୁଣ୍ଡଳ ॥
ମତ୍ତ ମରାଳ ଗତି ଲୀଳା । ରାସ ମଣ୍ଡଳେ ଗୋପବାଳା ॥
ଦିଶନ୍ତି ପରମ ସୁନ୍ଦର । ଅଙ୍ଗ ଲାବଣ୍ୟ ସୁଧାକର ॥
କରଣେ ନିର୍ମଳ କାନନ । ତେଜ ପୂରିଲା ତ୍ରିଭୁବନ ॥
ଗୋପୀଜନଙ୍କ ମଧ୍ୟେ ହରି । କୋଟି କନ୍ଦର୍ପ ରୂପଧରି ॥
ବ୍ରଜପ୍ରେ ନଟବର ବେଶେ । ଶ୍ୟାମ ଲାବଣ୍ୟ ଅଙ୍ଗଭାସେ ॥
ଗୋପ କୁମାରୀ ଭୁଜପାଶେ । ଭ୍ରମନ୍ତି ନୃତ୍ୟ ରଙ୍ଗ ରସେ ॥
ଯେସନେ ହେମ ମଣିଶ୍ରେଣୀ । ମଧ୍ୟେ ମର୍କତ ଶିଖାମଣି ॥
ସୁନ୍ଦର ଅଶେଷ ଧରଣୀ । ସଙ୍ଗତେ ଭାନୁର ଦୁଲ୍ଲଣୀ ।୨୭।
ଚମ୍ପକ କର୍ଣ୍ଣିକା ମଧ୍ୟରେ । ଶୋଭିତ ନୀଳ ଇନ୍ଦୀବରେ ॥

ଗୋପ ନନ୍ଦନୀ ନୃତ୍ୟରସେ । ପଞ୍ଚମ ସ୍ୱରେ ଗୀତ ଘୋଷେ ॥
କଳସ୍ୱ ନୂପୁର ଶବଦ । କଟି ମେଖଳା ଘଣ୍ଟି ନାଦ ॥
ରସ ଶଙ୍ଖ ଲେ ଘୋର ଧ୍ୱନ । ଶବଦ ଶୁଭେ ପୁରଜନ ॥
ଘନ୍ନୁ ନନ୍ଦନୀ କରେ ହସ୍ତ । ନଟବେଶି ପ୍ରଭୁ ନନ୍ଦସୁତ ॥
ନୃତ୍ୟ କରନ୍ତ ଭାବ ଭରେ । ଗୋପୀକା ମଣ୍ଡଳୀ ମଧରେ ॥
ଯେତେ ଅଛନ୍ତି ଗୋପନାରୀ । ଶ୍ରୀକୃଷ୍ଣ ତେତେ ରୂପଧରି ॥
ଗୋପୀଙ୍କ ହସ୍ତ କୃଷ୍ଣ ବନ୍ଧେ । ଶ୍ରୀକୃଷ୍ଣ ହସ୍ତ ଅନୁବନ୍ଧେ ।୩୬।
କଣ୍ଠ ଗ୍ରହାଚ ବାହୁ ବେନ । ଆନନ୍ଦେ ଗୋକୁଳ କାମେମା ॥
କୃଷ୍ଣଙ୍କୁ ଦେଖି ବେନ ପାଶେ । ଗୋପ କାମେମା ପ୍ରେମବଶେ ॥
କରନ୍ତ ନୃତ୍ୟ ଗୀତ ଧ୍ୱନ । ଦେଖନ୍ତ ସୁର ସିଦ୍ଧମୁନ ॥
ସ୍ୱର୍ଗେ ସକଳ ଦେବଗଣ । ତମାନେ କଲେ ଆରୋହଣ ॥
ସିଦ୍ଧ ଗନ୍ଧର୍ବ ବିଦ୍ୟାଧର । ଗୁହ୍ୟକ ଚାରଣ କନ୍ନର ॥
ଯେ ଯାହା ପ୍ରିୟା ବୃନ୍ଦ ଘେନ । ଶିବ ଶଙ୍କର ପଦ୍ମଯୋନ ॥
ଆନନ୍ଦେ ରହିଲେ ଆକାଶେ । କୃଷ୍ଣଙ୍କୁ ଦେଖନ୍ତ ହରଷେ ॥
ସହସ୍ର ସହସ୍ର ବିମାନେ । ଅଶେଷ ଅମର ଗଗନେ ।୪୬।
କୁସୁମ ବରଷନ୍ତ ସୁଖେ । କରନ୍ତ ଜୟଧ୍ୱନ ମୁଖେ ॥
ଗନ୍ଧର୍ବ କରନ୍ତ ଗାୟନ । ନାଚନ୍ତ ଅପସରା ମାନ ॥
ବାଦ୍ୟ ବଜାନ୍ତି ବିଦ୍ୟାଧର । ନର୍ତ୍ତନ କରନ୍ତ କନ୍ନର ॥
କୋଟି ଦୁନ୍ଦୁଭି ଘୋଷନାଦ । ବ୍ରହ୍ମା ଘୋଷନ୍ତ ଚାରିବେଦ ॥
ସିଦ୍ଧ ଚାରଣ ସ୍ତୁତି ଭଣି । ହରଷେ ଦେବ ଶୂଳପାଣି ॥
ବୃଷଭ ପିଠି ପରେ ରହି । କୃଷ୍ଣ ବଦନ ଚନ୍ଦ୍ର ଚାହିଁ ॥
ସୁରଙ୍ଗ ଅମିୟ ଅଧରେ । ମୁରଲୀ ଧ୍ୱନ ଉସଭରେ ॥
ଆନନ୍ଦ ଚରାଚର ମଧ୍ୟ । ସହଜେ କାଳ ଭୟ ନାହିଁ ॥
ନଦୀ ଭୁଲୁଣ୍ଠି ଗଣପନ୍ଥ । ସଙ୍ଗତେ ଘେନ ପଶୁପନ୍ଥ ।୫୧।

ତାଣ୍ଡବ ନୃତ୍ୟ ରସେ ଭୋଳ । ଆନନ୍ଦେ ବଦନେ ଅଶ୍ରୁଜଳ ॥
ନାରଦ ବୀଣା କରେ ଧରି । ବଜାନ୍ତି ଧୀର ଧୀର କରି ॥
ତାମ୍ବୁରୁ କରନ୍ତି ଆଳାପ । ମର୍ଦ୍ଦଳ ଧରେ ସ୍କନ୍ଦ ରୂପ ॥
ତାଣ୍ଡବ ରଙ୍ଗେ ସୁରନାରୀ । ଜୟ ଶବଦ ଧ୍ୱନି କରି ॥
ଆନନ୍ଦେ ଚଉଦଶ ଲୋକ । ଦେଖନ୍ତି ପ୍ରେମାନନ୍ଦ ରୂପ ॥
ଆନନ୍ଦେ ସୁର ନାଗବୃନ୍ଦ । ବୋଲନ୍ତି ଦେଖଗୋ ଗୋବିନ୍ଦ ॥
ନୟନା ନନ୍ଦ ରସ ନିଧି । କରୁଣା ଲାବଣ୍ୟ ବାରିଧି ।୬୮।
ସେହୁ ସେ ଜଗତ ଜନବନ୍ଧୁ । ପ୍ରେମ କାରୁଣ୍ୟ ରସସିନ୍ଧୁ ॥
ଶରଣ ଜନଙ୍କ ଅଭୟ । ପରମାନନ୍ଦ ସୁଖମୟ ॥
ସଫଳ କରଗୋ ନୟନ । କୃତାର୍ଥ ହୋଇବ ଜୀବନ ॥
ଧନ୍ୟଯେ ବ୍ରଜ ରମଣୀ । ଯାହାକୁ ଲଭେ ସୁରମୁନି ॥
ବ୍ରହ୍ମ ସଙ୍ଗତେ ବିହରନ୍ତି । କମଳା ସମ ରୂପବନ୍ତୀ ॥
ଗୋପୀଜନଙ୍କୁ ଦାସୀପଣେ । ସେବା କରିବୁ ଅନୁକ୍ଷଣେ ॥
ସ୍ୱର୍ଗ ସମ୍ପଦେ କାର୍ଯ୍ୟ ନାହିଁ । ସୁଦୟା କରିବ କି ବିହି ॥
ସେବକା ଗୋପୀଙ୍କ ପୟରେ । ଜନ୍ମ ହୋଇବା ଗୋପପୁରେ ॥
ହେ କୃଷ୍ଣ ଜଗତ ଈଶ୍ୱର । ବ୍ରହ୍ମାଦି ତୋପାଦେ କିଙ୍କର ।୬୭।
ତୁ ଦେବ ବାଞ୍ଛା କଳ୍ପତରୁ । ଆମ୍ଭମାନଙ୍କ ଭୟ ହରୁ ॥
ତୋପାଦ ସେବ ଅନ୍ତର୍ଯ୍ୟାମୀ । ଇନ୍ଦ୍ର ପାଳଇ ସ୍ୱର୍ଗଭୂମି ॥
ଦୁଷ୍ଟ ଅସୁର ବୃନ୍ଦମାରି । ବ୍ରହ୍ମାଣ୍ଡ ରଖ ଦୟାକରି ॥
ତୋ ନାମ ଈଶ୍ୱର ଜପଇ । ଚରଣେ କମଳା ସେବଇ ॥
ତୁହି ସେ ଅନାଦି ନିରଞ୍ଜନ । ସକଳ ପ୍ରାଣୀଙ୍କ ଜୀବନ ॥
ଆମ୍ଭ ନୟନ ସୁଖ ଘର । ନୀଳ ରୁଚିର କଳେବର ॥
ତୋ ନୃତ୍ୟ ରାସଲୀଳା ରସ । ନୟନେ ଦେଖନ୍ତି ତ୍ରିଦଶ ॥
ସୁର କାମିନୀ ବୃନ୍ଦମାନେ । ମୋହିଲେ ପ୍ରଭୁ ଭଗବାନ ॥

ଶ୍ରୀ ବୃନ୍ଦାବନ ଭୂମିଦେଶେ । ରାସ ଉତ୍ସବ ମହାରସେ । ୭୬ ।
ସଙ୍ଗତେ ଧେନୁ ଭାନୁସୁତ । ଅଶେଷ ଗୋପାଳ ବନିତା ॥
ମଣ୍ଡଳ ହୋଇ ନୃତ୍ୟରସେ । ସୁନ୍ଦର ଚରଣ ବିକାଶେ ॥
ଭୂଜ ବିଧୃତ ଅଞ୍ଚଳାକ୍ଷେ । ସମ୍ମିତ ଭ୍ରୂଲତା ବିଳାସେ ।
କୃଷ୍ଣ ସହିତେ ଯୁକ୍ତେ ଯୁକ୍ତେ । ପ୍ରେମ ବିକାର ଅନ୍ତରକେ ॥
ହାର କୁଣ୍ଡଳ ବନମାଳ । ସଞ୍ଜ ସଘନ କୁଚତେଳ ॥
କପୋଳ ଦେଶେ ସ୍ୱେଦ ବିନ୍ଦୁ । ଅମୀୟ ସେଚନେକ ଇନ୍ଦୁ ॥
ଚିକୁର ଚର୍ମଦେଶେ ଲୋଟି । କଟି ବସନ ଗଣ୍ଠି ଫିଟି ॥
ରାସ ମଣ୍ଡଳେ ଗୋପୀଜନେ । ଚଳିତ ଚନ୍ଦ୍ରଯୋଗେ ଘନେ ।୮୪।
କେ ନୃତ୍ୟରସେ ସାବଧାନ । କେ ଉଚ୍ଚେ କରନ୍ତି ଗାୟନ ॥
ସଙ୍ଗୀତ ଗାନ ତାନ ରସେ । କଣ୍ଠ କୂଜିତ କଳ ଘୋଷେ ॥
ପ୍ରେମ ଅବେଶ ତନୁଧାରି । କୃଷ୍ଣଙ୍କୁ ଆଲିଙ୍ଗନ କରି ॥
କାହାର ମନ ଉନ୍ତରସେ । କେ ମୁଖ ଚୁମ୍ବନ୍ତି ହରଷେ ॥
କେ କୃଷ୍ଣ ଗଣ୍ଡେ ଦେଇ ଗଣ୍ଡ । ନିବିଡ଼େ ବାନ୍ଧି ଭୂଜ ଦଣ୍ଡ ॥
କେ ଶ୍ରାନ୍ତ ହୋଇ ଅନୁରାଗେ । ତନୁ ନିବେଶି କୃଷ୍ଣଅଙ୍ଗେ ॥
ଚରଣେ ନିବେଦଇ ଶିର । ଉଠାଇ ଧରି କୃଷ୍ଣ କର ॥
ମୁଖ କମଳ ସଉରଭେ । ଭ୍ରମର ବୃନ୍ଦ ଗନ୍ଧ ଲୋଭେ ।୯୨।
ନିଃଶ୍ୱାସ ବାତେ ମନ୍ଦ ମନ୍ଦ । ନଚୁମ୍ବି ମୁଖ ଅରବିନ୍ଦ ॥
ଭ୍ରମନ୍ତି କଳ ଘୋଷକରି । ପୁଷ୍ପ କାନନେ ଅପହରି ॥
ଆନନ୍ଦେ ପକ୍ଷୀ ମୃଗ ମାନେ । କୃଷ୍ଣଙ୍କୁ ଦେଖନ୍ତି ନୟନେ ॥
ଚକିତ କୃଷ୍ଣରୂପ ଗୃହିଂ । ଯୋଗୀ ଯେସନେ ଧ୍ୟାନେ ରହି ॥
ଜଳେ ନିଷ୍ଚଳ ହଂସପନ୍ତି । ଦେଖି ଶ୍ରୀକୃଷ୍ଣ ଲୀଳାଗତି ॥
ରାସ ମଣ୍ଡଳେ ନୃତ୍ୟ ରସେ । ଆନନ୍ଦେ ରସ ସ୍ୱପ୍ରକାଶେ ॥
ହୁଂକାର ନାଦେ ଦେବ ହରି । ମେଘ ଗମ୍ଭୀର ଧ୍ୱନି କରି ।

ପଞ୍ଚମ ସ୍ୱରେ ଗୀତ ଗାଇ । ଶବଦେ ବ୍ରହ୍ମାଣ୍ଡ ପୂରଇ ॥
ମୋହିଲେ ସୁର ସୁରନର । ବ୍ରହ୍ମା ଈଶ୍ୱର ପୁରନ୍ଦର ।୧୦୧ ।
ସମାନେ ବସି ମୋହଗଲେ । ଆନନ୍ଦ ରସମୟ ଚିତ୍ତେ ॥
ପଞ୍ଚାଇ ନିଜ ଦେହ ଗ୍ୟାନ । ସ୍ଥାବର ହୋଇଲେ ଅଚେତନ ॥
ମାୟା ବିରଳ ସର୍ବ ଚିତ୍ତ । କାଳ ଶ୍ୱାଳମେ, ମୋହଗତ ॥
ଅଶେଷ ବ୍ରହ୍ମାଣ୍ଡ ମୋହନ । ରାଧାରମଣ ଭଗବାନ ॥
ରାସ ଉତ୍ସବ ଲୀଳା ରସେ । ନୃତ୍ୟ ଗାୟନ ମନ ତୋଷେ ॥
କରନ୍ତେ ରସ ରସକେଳି । ମଦନ ରସେ ବନମାଳୀ ॥
ଜାଣି ଦେବୀ ଯୋଗମାୟା । କାନନେ ବିସ୍ତାରିଲେ ଛାୟା ।୧୦୮।
ନିତ୍ୟ ବୈକୁଣ୍ଠ ଧାମ ତେଜ । ବିରଜେ କାଳନ୍ଦ ନିକୁଞ୍ଜ ॥
ନୟନେ ନଦେଖିଲେ କେହି । ମନ ବଚନେ ଭେଟ କାହିଁ ॥
ଦ୍ରୁମ ବିଶାଳ ମହାଶୋଭା । କୋଟିଏ ଚନ୍ଦ୍ର ଜିଣିପ୍ରଭା ॥
ସହସ୍ର ସହସ୍ର ନିକୁଞ୍ଜ । ସଦନ ପ୍ରାୟେ ତେଜ ପୁଞ୍ଜ ॥
ନବ ପଲ୍ଲବ ଶେଜ୍ୟାମାନ । ରଞ୍ଚିଲେ ଶ୍ରୀନନ୍ଦନନ୍ଦନ ॥
ତଳେ ନିର୍ମଳ ଧୂଳି ଜାଳ । ଉପରେ ନବ ରଙ୍ଗ ଦଳ ॥
ଗନ୍ଧ ଶୀତଳ ସୁକୁମାର । ବଦଳ ପଲଙ୍କ ଆକାର ॥
କୁଞ୍ଜ ଆବୃତ ବୃକ୍ଷପାଶେ । ଉପରେଲତାବୃତ ଦିଶେ ।୧୧୭।
କୁଞ୍ଜ କୁଟୀର ଗୃହଜାଣି । କୁସୁମ ପଡ଼ଇ ଧରଣୀ ॥
ପବନ ବହେ ମନ୍ଦମନ୍ଦ । ପ୍ରସରେ ସୁମନ ସୁଗନ୍ଧ ॥
ନିର୍ମଳ ଚନ୍ଦ୍ର ପରକାଶ । ସୁନ୍ଦର ବନଭୂମି ଦେଶ ॥
ଆନନ୍ଦେ ଦେବ ମଧୁହାରୀ । ଗୋପୀଙ୍କେ ରୂପେରୂପେ ଧରି ॥
କୁଞ୍ଜ କୁଟିରେ ଶଜ୍ୟାପରେ । ବିଜୟେ ଗୋପୀଙ୍କ ସଙ୍ଗରେ ॥
ସବୁରି ସଙ୍ଗେ ବହୁରାଶି । ପ୍ରେମକାନ୍ତ ପ୍ରିୟ ଭାବ ରସି ॥
କୃଷ୍ଣ ସଙ୍ଗତେ ଗୋପବାଳୀ । କରନ୍ତି କାମ ରସେ କେଳି ॥

ସମସ୍ତେ ଜାଣନ୍ତି ମନରେ । ପ୍ରେକାନ୍ତେ କୃଷ୍ଣ ମୋ ସଙ୍ଗରେ ॥
କରନ୍ତି କାମ କ୍ରୀଡ଼ାରସ । ସମ୍ପୂର୍ଣ୍ଣ କଲ ମୋର ଆଶ ୧୨୫।
ପ୍ରେକାନ୍ତେ କୃଷ୍ଣଙ୍କୁ ରମନ୍ତି । କୃଷ୍ଣ ସଙ୍ଗତେ ବିହରନ୍ତି ॥
ଅଧରପାନ ନଖକ୍ଷତ । ଆଲିଙ୍ଗନ କାମ ରସ ଭେଦ ॥
ପରମାନନ୍ଦ ସଙ୍ଗେ ନାରୀ । ଯେବେ ହୋଇଲେ କାମଭୃଗୀ ॥
ଶିଥିଳ ଅଙ୍ଗ କେଶ ବାସ । ମଳିଣ ହୋଇଲା ସୁବେଶ ॥
ଘୂର୍ଣ୍ଣିତ ନୟନ ଅଳସେ । ସ୍ୱେଦ ଗଳଇ ଭାଲଦେଶେ ॥
ଶୃଙ୍ଗାର ରସେ ମହାଶ୍ରମ । ହୃଦୟୁ କମ୍ପେ ଝମ ଝମ ॥
ଅଙ୍ଗ ଅଳସେ ଗୋପବାଳୀ । କେଶ ବସନ ଅସମ୍ଭାଳି ॥
ପରମ ଦୟାଳୁ ଶ୍ରୀହରି । ଗୋପୀ ଜନଙ୍କୁ କୋଳେ ଧରି ॥
କେଶ ବାନ୍ଧନ୍ତି ନିଜ କରେ । ବସନ ଆଚ୍ଛାଦି କଟିରେ ।୧୩୪।
ମୁଖ ପୋଛନ୍ତି ପଦ୍ମ କରେ । ଅଞ୍ଚଳେ ବାଞ୍ଚନ୍ତି ସଧିରେ ॥
ଖଞ୍ଜନ୍ତି ମଣି ରତ୍ନେହାର । କର୍ଣ୍ଣେ ତାଟଙ୍କ କଣ୍ଠେ ହାର ॥
ହସ୍ତେ କନକ ରତ୍ନେଚୂଡ଼ି । ଭୁଜେ ସୁନ୍ଦର ତାଡ଼ଯୋଡ଼ି ॥
ବସନ କଟି ତଟେ ଖଞ୍ଜି । ପାଦେ ନୂପୁର ଅଭରଞ୍ଜି ॥
ଗୋପୀଙ୍କ ଅଙ୍ଗେ ଭଗବାନ । ଖଞ୍ଜିଲେ ଅଳଙ୍କାର ମାନ ॥
ପ୍ରେମ ବଚନେ ଦେବହରି । ଗୋପୀଙ୍କ ଚିତ୍ତ ବୋଧ କରି ॥
ବ୍ରହ୍ମାଦି ଜିଣି ଗର୍ବ ମତ୍ତ । ଦୁଷ୍ଟ ମଦନ ମହାପାତ୍ର ॥
ତାଗର୍ବ ହେଲେ କଲେ ନାଶ । ରସ ବିଳାସ ପିତ ବାସ ।୧୪୨।
ଆତ୍ମା ରମଣେ ଆତ୍ମାରାମ । ଅଖଣ୍ଡ ପୂର୍ଣ୍ଣ ସର୍ବକାମ ॥
ରମିଲେ ଅଶେଷ ରମଣୀ । ମଦନ ନପାରିଲା ଜିଣି ॥
ଯେ କଟେଟିନ୍ଦ୍ରିୟୁ ଊର୍ଦ୍ଧ୍ୱରେତା । ଶିବ ପରମ ଗୁଣେଜିତା ॥
ସେ ସିନା ମୁକ୍ତିବନ୍ତ ହୋଇ । ଯେବେ ରମିଲେ ସର୍ବଗୋଇ ॥
ତାର ମୂରତି ହସଙ୍କାମ । ସ୍ଫଳିତ ଗତି ଆତ୍ମାଧାମ ॥

ଚେଣୁ ମଦନ ଦର୍ପଗଞ୍ଜେ । ଗୋପ ସୁବଣ୍ଠା ମନରଞ୍ଜେ ॥
ଗୋପୀ ଜନଙ୍କ ପ୍ରାଣପତି । ଚରଣ ସୁଚଗ ଦେଇମତି ॥
ବ୍ରାହ୍ମଣ ଜଗନ୍ନାଥ ଭଣି । ସୁଜନେ ଭଜ ବେଣୁପାଣି ॥

ଇତି ଶ୍ରୀମଦ୍ ପରମରହସ୍ୟେ ଗୌରୀଆଗମେ ରାସଲୀଳା କୀର୍ତ୍ତନେ
ନାମ ଊନବିଂଶୋଽଧ୍ୟାୟଃ ।

## ବିଂଶ ଅଧ୍ୟାୟ

### ଶ୍ରୀଈଶ୍ୱର ଉବାଚ

ଅପର୍ଣ୍ଣା ମୁଖ ଶୃଙ୍ଗାରର । କହନ୍ତି କୃଷ୍ଣ ରସ ସାର ।୧।
ହେ ସଖୀ ଶୁଣ ଏକ ମନେ । ନନ୍ଦ ନନ୍ଦନ ବୃନ୍ଦାବନେ ॥
ଲୀଳା ରମଣେ ଗୋପୀଜନ । ରମିଲେ ପ୍ରଭୁ ଭଗବାନ ॥
ସ୍ୱପ୍ରତିବମ୍ବ ଦେଖି ଜଳେ । ବାଳକ ଯେସନେ ଖେଳୁ ଖେଳେ ॥
ଶ୍ରୀକୃଷ୍ଣ ଅଙ୍ଗ ସଙ୍ଗ ଲଭି । କାମ କଲ୍ଲୋଳ ରସ ଭାବ ॥
ସମ୍ପୂର୍ଣ୍ଣ କଲେ ମନୋରଥ । ରାଧା ସହିତେ ଗୋପୀଯୂଥ ॥
କୁଞ୍ଜ ମଞ୍ଜୁଳ ପୂର୍ଣ୍ଣଶାଳା । ପଲ୍ଲବ ଶଯ୍ୟା ଉପରେ ବାଳା ॥
ଶ୍ରୀକୃଷ୍ଣ ହସ୍ତ କରେ ଧରି । କୁଞ୍ଜୁ ବାହାର ସବୁ ନାରୀ ॥
ପ୍ରବେଶ କାଳନ୍ଦୀ ପୁଳିନେ । ଦେଖନ୍ତି ସୁରବଧୂ ମାନେ ॥
ମଦନେ ହୋଇଲେ ପୀଡ଼ିତ । ଆନନ୍ଦ ରସେ ମୋହ ଚିତ୍ତ ॥
ତାରକା ମଣ୍ଡଳ ଗଗନେ । ଚନ୍ଦ୍ର ସହିତେ ଗ୍ରହମାନେ ॥
ଶ୍ରୀକୃଷ୍ଣ ଲୀଳାର ସଭରେ । ବସୁପ୍ତ ମଦନ କାତରେ ॥
ଚକିତେ ଅଛନ୍ତି ସକଳ । ବ୍ରହ୍ମା ସହିତେ ଦିଗପାଳ ।୧୩।
ବ୍ରଜ କାମେମା କୃଷ୍ଣ ସଙ୍ଗେ । କାଳନ୍ଦୀ ତଟେ ନାନାରଙ୍ଗେ ॥
ମତ୍ତ ମରାଳ ଲୀଳାଗତି । ବଚନେ କୃଷ୍ଣ ଗୀତ ଗାନ୍ତି ॥
ଦକ୍ଷିଣ ହସ୍ତ ଊର୍ଦ୍ଧ୍ୱେ ତୋଳି । ବଦନ ଘୂରାନ୍ତି କବରୀ ଲି ॥
କଟିରେ ଦେଲ ବାମ ପାଣି । ମସ୍ତକ ବୁଲନ୍ତି ତରୁଣୀ ॥

ନାସା ଫୁଲାଇ ମନ୍ଦହାସେ । କଟାକ୍ଷେ ନେତ୍ର ବାନ ଘୋଷେ ॥
ଚଳ ଭ୍ରୂହାନ୍ତି ବକ୍ରକର । ଆନନ୍ଦେ ବଢ଼ନ୍ତି ଭୁଜଙ୍ଗ ॥
କର୍ଣ୍ଣେ କୁଣ୍ଡଳ ଅବଲମ୍ବ । ଗଣ୍ଡେ ଦର୍ପଣେ ପ୍ରତିବିମ୍ବ ॥
କୃଷ୍ଣ କରଜ ଘାତ ଲାଗି । ଅଙ୍ଗ ସ୍ୱରସ ରସ ଭାଗୀ ॥
ସେ ସବୁ ଗୋପୀଜନ ସଙ୍ଗେ । କୃଷ୍ଣ ବଜାନ୍ତି ଲୀଳାରଙ୍ଗେ ॥
କୁଚ କୁଙ୍କୁମ ରଙ୍ଗରାଗ । ଲାଗି ସୁନ୍ଦର ଶ୍ୟାମ ଅଙ୍ଗ ॥
ଦଶନ କ୍ଷତ ନଖରେଖ । ଶ୍ରୋଣିତ ସ୍ରବେ କୃଷ୍ଣଦେହ ॥
ନୟନେ ଅଞ୍ଜନ କାଳିମା । କପୋଳେ ସିନ୍ଦୂର ରଙ୍ଗିମା ॥
ଲୋକ ହସଇ ମଧୁରିମା । ଶ୍ରୀକୃଷ୍ଣ ବଦନ ଚନ୍ଦ୍ରମା ।୨୭।
ସୁରତି ରସ ଶ୍ରମ ଜାତ । ଶାନ୍ତ ନମନ୍ତେ ନନ୍ଦସୁତ ॥
ଗୋପ ନନ୍ଦନୀ ସଙ୍ଗ କରି । କାଳିନ୍ଦୀ ଜଳେକ ବିହରି ॥
ତରୁଣୀ ସଙ୍ଗେ ମତ୍ତକରୀ । ସାରସ ଜଳେ କି କି ହରି ॥
ଶ୍ରୀକୃଷ୍ଣ ସଙ୍ଗେ ଗୋପବାଳୀ । ଭାବେ କରନ୍ତି ଜଳକେଳି ॥
ଜଳ ଅଞ୍ଜୁଳି ବେନି କରେ । ପକାନ୍ତି ଶ୍ରୀକୃଷ୍ଣ ଉପରେ ॥
ବକ୍ର ନୟନ ମନ୍ଦ ହାସେ । କୃଷ୍ଣଙ୍କୁ ଚାହାନ୍ତି ହରଷେ ॥
ଜଳ ସେଚନେ ଦେବ ହରି । ଅଙ୍ଗ ଢାଳନ୍ତି ବକ୍ର କରି ॥
ଭୁଜ ପ୍ରସାରି ସମ୍ଭାଳନ୍ତି । ଗୋପ ନନ୍ଦନୀ ବଢ଼ୁରନ୍ତି ।୩୪।
ଆଣନ୍ତି ପକାଇ ଯେତେକ ଜଳ । ବାହୁ ପ୍ରସାରି ନନ୍ଦବାଳ ॥
ଲେଉଟି ତୋଳି ଜଳରାଶି । ଆମ୍ଭ ଉପରେ ହୁଣ୍ଡୀ କେଶି ॥
ସଜଳ କରନ୍ତି ସେଚନ । କେତିକି ଶ୍ରୀ ନନ୍ଦନନ୍ଦନ ॥
ଯେତେ ବହୁରି ସବୁନାରୀ । ନନ୍ଦ ନନ୍ଦନ ହସ୍ତ ଧରି ॥
ମୁଖେ ସିଥିଲେ ଜଳବିନ୍ଦୁ । ନୟନ ବୁଜି କୃପାସିନ୍ଧୁ ॥
ହସନ୍ତି ଉତ୍କଣ୍ଠିତ ହୋଇ । ଶ୍ରୀହସ୍ତ ଧରିଛନ୍ତି ନେଇ ॥
ଅବଶେ ଦେବ ଗୋପୀନାଥ । ଚରଣେ ଧରି ଗୋପୀଯୂଥ ॥

ମାନୁ ସୁଗନ୍ଧ ଅନୁବନ୍ଧେ । ନନ୍ଦ ପଡ଼ାନ୍ତି ଜଳ ମଧ୍ୟେ ।୪୨।
ଶ୍ରୀକୃଷ୍ଣ ହସ୍ତ ପଦ୍ମଛାଡ଼ି । ଉତ୍ଥାନ ହୋଇ ଜଳେ ପଡ଼ି ॥
କେ ବୁଡ଼ ହୁଅନ୍ତି ବାହାର । ନାସା ଶ୍ରବଣେ ପଶେ ନୀର ॥
କେ ମୁଖ ପୋଛି ପଳାବନ୍ତି । ଲେଉଟି କୃଷ୍ଣଙ୍କୁ ଗୁହାନ୍ତି ॥
କେହି ନ ରହିଲେ ସମୀପେ । ଦୂରୁ ଡାକନ୍ତି ଅତି କୋପେ ॥
ଚରଣ ଛାଡ଼ିଲ ଆମ୍ଭର । ଜାଣିଲୁ କପଟ ତୁମ୍ଭର ॥
ଯେବେ ଜାଣିମା ନନ୍ଦବାଳ । ଧରିବୁଁ ତୋପାଦ କମଳ ॥
ହସ୍ତ ଧରିବୁ ଯତ୍ନ କରି । ଉପରେ ପକାଇବୁ ବାରି ॥
ଯେମନ୍ତ କହି ଗୋପବାମା । ବେଢ଼ିଲେ ଗୋକୁଳ ଚନ୍ଦ୍ରମା ॥
ଜଳେ ପଳାନ୍ତି କୃଷ୍ଣ ହସି । ପଛେ ଗୋଡ଼ାନ୍ତି ଶୁଭ୍ରକେଶୀ ।୫୧।
କେତେହେଁ ଦୂରେ ଗୋପୀବୃନ୍ଦ । ନବଢ଼େ ଧଇଲେ ଗୋବିନ୍ଦ ॥
ବୋଲନ୍ତି ପ୍ରଭୁ ମଧୁହାସି । ଶୁଣଗୋ ପ୍ରାଣ ସହଚରୀ ॥
ମନେ ନକର ଗରୁରୋଷ । କ୍ଷେମା କରିବ ଆମ୍ଭ ଦୋଷ ॥
ଶୁଣି ସନ୍ତୋଷ ଗୋପୀଜନ । କୃଷ୍ଣଙ୍କୁ କଲେ ଆଲିଙ୍ଗନ ॥
ପ୍ରେମ ଚୁମ୍ବନ ବହୁ ହାସେ । ଜଳ ସେଚନ କ୍ରୀଡ଼ା ରସେ ॥
କଞ୍ଜ କୁମୁଦ ଇନ୍ଦୀବର । ସୁମନ ରସେ ମଧୁକର ॥
ନଷ୍ଟଲେ ରସ ପାନ କରି । କଲ୍ଲୋଳେ ଉଛୁଳଇ ବାରି ॥
ସଧୀରେ ଉଡ଼ି ମଧୁକରେ । ବସନ୍ତି ଗୋପୀଙ୍କ ମୁଖରେ ।୫୯।
କରନ୍ତି ମନୋହର ଧ୍ୱନି । କୃଷ୍ଣର ସଙ୍ଗେ ନିତମ୍ବିନୀ ॥
ଏବେ କରନ୍ତି ଜଳ କେଳି । ହରଷ ମନେ ଗୋପବାଳୀ ॥
ଜଳୁ ବାହାର ହୋଇ ନୂତିଲ । ପୁଷ୍ପ କାନନ ପରିମଳେ ॥
ସଧୀରେ କରନ୍ତି ଭ୍ରମଣି । ସଙ୍ଗତେ ବରଜ ରମଣୀ ।୬୩।
କରିଣୀ ବୃନ୍ଦ ଯେହ୍ନ ସଙ୍ଗେ । ମତ୍ତ କୁଞ୍ଜର ପ୍ରେମରଙ୍ଗେ ॥
କାନନେ କରନ୍ତି ବିହାର । ଚେତନ୍ତେ ଗୋପୀକା ବେଣୁଧର ॥

ପୁଷ୍ପ କାନନ କୁସୁମିତ । ମନ୍ଦ ମରୁତ ବାନ୍ଧିମୁନ୍ତ ॥
ଶୀତଳ ଚନ୍ଦ୍ରମା କିରଣ । ନାଦ କରନ୍ତି ଭୃଙ୍ଗଗଣ ॥
ଯେ ବ୍ରହ୍ମ ଧାମ ଆତ୍ମାରତ । ଅନ୍ତରେ ନିଗୂଢ଼ ସୁରତ ॥
ଅବଳା ଅନୁରତ ହୋଇ । କାନନ ମଧ୍ୟେ ବିହରଇ ॥
ଶଶାଙ୍କ କିରଣେ ମଣ୍ଡିତ । ଶରଦ ରଜନୀ ସମସ୍ତ ॥
ସେ ସତ୍ୟକାମ ବ୍ରହ୍ମରାଶି । ରମଣୀ ରସେ ମନଭାସି ।୭୯।
ଅଖଣ୍ଡ ପ୍ରେମ ସୁଧାଧାର । ନିତ୍ୟ ନିର୍ଗୁଣ ନିରାକାର ॥
ତା ପ୍ରେମ ଅଭିଳାଷେ ରସି । ବ୍ରଜ ଯୁବତୀ ପୁଣ୍ୟରାଶି ॥
ବ୍ରହ୍ମ ଯାମିନୀ କଲେ ଶେଷ । ସଂସାରେ ରୁହାଇଲେ ଯଶ ॥
ଧର୍ମ ରକ୍ଷଣେ ଅବତାର । ଅଧର୍ମ କରନ୍ତି ସଂହାର ॥
ଯାପାଦ ପଦ୍ମ ଧ୍ୟାନ କରି । ଯୋଗ ସାଧନ୍ତି ବ୍ରହ୍ମଋଷି ॥
ତରନ୍ତି ସଂସାର ସାଗର । ଖଣ୍ଡନ୍ତି ତ୍ରିଗୁଣ ବିକାର ॥
ଅଦେହ ଦେହବନ୍ତ ହୋଇ । ଗୋପୀଙ୍କ ସଙ୍ଗେ ବିହରଇ ॥
ସେ ବ୍ରହ୍ମ ରାଶି ନିରଞ୍ଜନ । ଅନାଦି ନାଥ ଭଗବାନ ।୮୦।
ବିସ୍ତାର କଲେ ଯେତେ ଲୀଳା । ଶ୍ରୀବୃନ୍ଦାବନେ ନନ୍ଦବାଳା ॥
ସେ ଲୀଳା ଶୁଣି ପୁଣ୍ୟ ପ୍ରାଣୀ । ତରିବେ ଭବ ତରଙ୍ଗିଣୀ ॥

ପାର୍ବତୀ ଉବାଚ

ଶୁଣି ବୋଲନ୍ତି ହେମବନ୍ତୀ । ହେ ପ୍ରାଣନାଥ ପଶୁପତି ॥
ଯେ ହରି ସର୍ବ ଧର୍ମକର୍ତ୍ତା । ଧର୍ମ ସଞ୍ଚୟ ସୁରକ୍ଷିତା ॥
ସେ ପରଦାର ଉମର୍ଷଣେ । ନିନ୍ଦିତ କର୍ମ ଆଚରଣେ ॥
ଆପତ କାମ ଯଦୁପତି । ରମିଲେ ଗୋକୁଳ ଯୁବତୀ ॥
ଏମନ୍ତ କଥା ଲୋକରେ ସଂଶୟ । କହିବ ସର୍ବ ଅଭିପ୍ରାୟ ॥

ଶ୍ରୀଈଶ୍ୱରୋବାଚ

ରୁଦ୍ର ବୋଲନ୍ତି ଶୁଣ ପ୍ରିୟେ । ହେ ପ୍ରଭୁ ସର୍ବ ସୁଖମୟେ ।୮୮।

ଯା ରୂପ ଧ୍ୟାନେ ରୋଗୀବୃନ୍ଦ । ହେଲେ ନାଶନ୍ତି ଭବବନ୍ଧ ॥
ଯା ନାମ ହରେ ସର୍ବ ମୋହ । ସଚରା ଚର ଯାର ଦେହ ॥
ଯେ ଆତ୍ମା ରୂପେ ନିଜଗତେ । ଥାବେ ବସଇ ସର୍ବଭୂତେ ॥
ଯେ ଗୁଣାଶ୍ରିତ ନିରାକାର । ନିତ୍ୟ ପ୍ରକାଶ ନିର୍ବିକାର ॥
ତାହାର କାହିଂ ଜଡ଼ ଭ୍ରମ । କର୍ମ ଅକର୍ମ ଧର୍ମାଧର୍ମ ॥
ଯାହାକୁ ନ ଲାଗଇ ମାୟା । ପ୍ରକୃତି ପୁରୁଷ ଯାଶ୍ରୟା ॥
ଯେହ୍ନେ ଅନଳ ତେଜ ରାଶି । ବଳେ ସକଳ ଦ୍ରବ୍ୟଗ୍ରାସି ॥
ତାହାକୁ ନ ଲାଗଇ ଦୋଷ । ବିଷ ଭକ୍ଷିଲେ ବ୍ୟୋମକେଶ ॥
ସଂସାରେ ଥିବେ ଯେତେ ଜନ । ପାଳିବେ ମହନ୍ତ ବଚନ ॥
ମହନ୍ତ ଜନେ ଯା ଆଚରି । ଇତର ଜନେ ତା ନ କରି ॥
ବିଷ ଭକ୍ଷିଲେ କେ ତରିବ । ଯେବେ ଅଧର୍ମ ଆଚରିବ ॥
ମହନ୍ତ ଜନେ ନ ବାଧଇ । ଇତର ଜନ ନାଶ ଯାଇ ॥
ଯେ ପ୍ରଭୁ ଅଶେଷ ଭୁବନେ । ରମଣୀ ରସେ ବୃନ୍ଦାବନେ ॥
ରମିଲେ ବରଜ ରମଣୀ । ଜଗତ ପ୍ରଭୁ ବେନୁପାଣି ॥
ଯେତେ ଗୋପାଳ ଗୋପୀଜନ । ପତି ତନୟ ବନ୍ଧୁ ଜନ ॥
ସବୁରି ହୃଦେ ତା ନିବାସ । ଯେ ଆତ୍ମା ଈଶ୍ୱର ପୁରୁଷ ।୧୦୪।
ଭଗତି ଅନୁଗ୍ରହ କରି । ଜାର ବିହାର ଲୀଳା କରି ॥
ସେ ଲୀଳା ରସ କରି ପାନ । କୃଷ୍ଣ ଭଜିଲେ ସାଧୁଜନ ॥
ସେ ସର୍ବ ଗୋପୀ କୃଷ୍ଣସଙ୍ଗେ । ବନେ ବିହାର କ୍ରୀଡ଼ାରଙ୍ଗେ ॥
କୃଷ୍ଣ ବିହାର ଅଭିଳାଷେ । ବ୍ରହ୍ମ ରଜନୀ ଅବଶେଷେ ॥
ହରଷେ ଗଲେ ଗୋପପୁରୀ । ଶ୍ରୀକୃଷ୍ଣ ଭାବ ମନେ ଧରି ॥
ଗୋପାଳେ ନ ପାରିଲେ ଜାଣି । ମାୟା ମୋହିଲେ ଚକ୍ରପାଣି ॥
ସକଳେ ଜାଣନ୍ତି ମନରେ । ରମଣୀ ଅଛନ୍ତି ମନ୍ଧରେ ॥
କୃଷ୍ଣ ଗୋପୀକା ଲୀଳାରସ । ଅଖଣ୍ଡ ପ୍ରେମ ସ୍ୱପ୍ରକାଶ ।୧୧୨।

ଶ୍ରଦ୍ଧାଯେ ଶୁଣନ୍ତି ଯେ ନର । ମନରେ କରନ୍ତି ବିଚାର ॥
ବଚନେ ଯେଅବା କହନ୍ତି । ଶ୍ରୀକୃଷ୍ଣ ପଦ ସେ ଲଭନ୍ତି ॥
ସୁଜନେ ଶୁଣ ଶୁଦ୍ଧ ମନେ । କୃଷ୍ଣ ଚରଣ ପଦ୍ମଧ୍ୟାନେ ॥
କୃଷ୍ଣ ବିହାର ରସଗ୍ରନ୍ଥ । କହଇ ବିପ୍ର ଜଗନ୍ନାଥ ।

ଇତି ଶ୍ରୀମଦ୍ ପରମରହସ୍ୟେ ଶୈବାଗମେ ରାସଲୀଳା ବର୍ଣ୍ଣନେ
ନାମ ତ୍ରିଂଶୋଽଧ୍ୟାୟଃ ।

## ଏକତ୍ରିଂଶ ଅଧ୍ୟାୟ

ଗୋପୀଜନଙ୍କ ଭାବରସ । ଭବାନୀ ଶୁଣି ମନେତୋଷ । ୧ ।

ପାର୍ବତୀ ଉବାଚ

ବୋଲନ୍ତି ଶୁଣ ଭୂତପତି । ପୂର୍ବେ ପରୀକ୍ଷ ମହୀପତି ॥
ଶ୍ରୀଭାଗବତ ଧର୍ମ ବାଣୀ । ଶୁକ ମୁନିଙ୍କ ମୁଖୁ ଶୁଣି ॥
ନିର୍ମଳ ଶୁଦ୍ଧ ସତ୍ତ୍ୱଗ୍ୟାଂନେ । ଆତ୍ମା ନିବେଦ୍ଧ କୃଷ୍ଣ ଧ୍ୟାନେ ॥
କିଭାବେ ତେଜିଲେ ଜୀବତ । ସେ ତ ପରମ ଭାଗବତ ॥
ହେ ପ୍ରାଣନାଥ ମୋ ଅଗ୍ରତେ । କହିବ ସାଧୁଜନ ହିତେ ॥
ହରଷେ ଚନ୍ଦ୍ର ଚୂଡ଼ାମଣି । କହନ୍ତି ପୁଣ୍ୟ ପୁଞ୍ଜ ବାଣୀ ॥

ଶ୍ରୀ ଈଶ୍ୱର ଉବାଚ

ହେ ସଖୀ ପଚ୍ଛରିଲ୍ ଯାହା । ତୋଆଗେ କହିବ ମୁଂତାହା ।୮।
ବ୍ୟାସ ନନ୍ଦନ ଶୁକଦେବ । ରାଜା ଅଗ୍ରତେ କୃଷ୍ଣଭାବ ॥
ବର୍ଣ୍ଣିଲେ ଭାଗବତ ରସ । ଶ୍ରୀକୃଷ୍ଣ ଭକ୍ତି ଉପଦେଶ ॥
ସେକଥା ଶୁଣ ଏକମନେ । ଜାହ୍ନବୀ ନଦୀ ସନ୍ନିଧାନେ ॥
ପରୀକ୍ଷ ନୃପତି ଅଗ୍ରତେ । ଶୁକ କହନ୍ତି ତୋଷ ଚିତ୍ତେ ॥

ଶ୍ରୀ ଶୁକ ଉବାଚ

ଶୁଣ ହେ ନୃପତି କୁଞ୍ଜର । କୃଷ୍ଣ ମହିମା ରସ ସାର ॥
ଅନନ୍ତ ଅପ୍ରମେୟେ ହରି । ପ୍ରଭବେ ସର୍ବ ଜନେ ତରି ।୧୪।

ସେ ସର୍ବ ଶରଣ ମୁରାରି । ଭକ୍ତ ରକ୍ଷଣେ ଦେହଧରି ॥
ଯେସନ୍ତେ ଅଗାଧ ଜଳେ ମୀନ । ଜାଲରେ ନୋହନ୍ତି ବନ୍ଧନ ॥
ସୁଜନେ ଶ୍ରୀକୃଷ୍ଣ ବିଶ୍ୱାସେ । ବନ୍ଧ ନୋହନ୍ତି ମୋହ ପାଶେ ॥
ଭକ୍ତ କୁଞ୍ଜରେ ଇନ୍ଦ୍ରିମନେ । ଭ୍ରମଇ ସଂସାର ଗହନେ ॥
ଶ୍ରୀକୃଷ୍ଣ ଭକ୍ତି ରସ ସ୍ୱାଦେ । ଘନ ରୋମାଞ୍ଚ ମତ୍ତଭେଦେ ॥
ଆନନ୍ଦେ ଅଶ୍ରୁ ମଦ ଧାରି । ଅଙ୍ଗେ ବଜ୍ରପ୍ରେ ଚନ୍ଦ୍ରଧରି ॥
କାମାନ୍ଧ ଶବରତା ନାଶେ । ଭସ୍ମେ ଚଳାନ୍ତି ଦଶ ଦିଶେ ॥
ମୋକ୍ଷ ସଜ୍ୟ ମହେନ୍ଦ୍ରକୂଳ । ଯେବା ଆରୋହଣ କୁଶଳ ॥
ଭକ୍ତି ନିଶ୍ରେଣୀ ସେ ଭଜିବ । ଅଭକ୍ତ ଭାବେ ନାଶଯିବ ।୨୩।
କର୍ତ୍ତବ୍ୟ ବଚନ ମାନସେ । ପ୍ରାଣୀ ବର୍ତ୍ତନ୍ତି ପାପ ବଶେ ॥
ଯେବେ ନଭଜିବେ ଶ୍ରୀହରି । କେସନ୍ତେ ତରିବେ ଭବବାରି ॥
ଶ୍ରୁତି ପୁରାଣ ଅଧ୍ୟୟନେ । ନିଗମାଗମ ବିବ୍ୟଗ୍ୟାଂନେ ॥
ସେ ସର୍ବ ଭାବେ ନତରନ୍ତି । ଯେବେ ନୋହଇ କୃଷ୍ଣରତି ॥
ଭକ୍ତି ବିହୀନେ ଶାସ୍ତ୍ର ଯେତେ । ଶସ୍ୟ ପାଷାଣ ମହୀଗତେ ॥
ଅପୁଷ୍ପ ବଣ୍ଠ ବଧ୍ୟ ଜନ । ନିର୍ଜଳ ଗ୍ରାମ କୂପ ମାନ ।
ନିଅର୍ଥ ବୋଲନ୍ତି ସଂସାରେ । ତେସନେ ଭକ୍ତି ହୀନ ନରେ ॥
ଉତ୍ତମ କୁଳେ ଜାତ ହୋଇ । ଯେବେ ଶ୍ରୀକୃଷ୍ଣ ନଭଜଇ ।୩୧।
ବିଦ୍ୟା ତପସ୍ୟା ଗୁଣ ଯେତେ । ନିଷ୍ଫଳ ବୋଲନ୍ତି ଜଗତେ ॥
ତୁ ପ୍ରେବେ ଭଜ ନରହରି । ନିଷ୍ପୃ କର୍ମ ଅହରି ॥
ଯେ ହରି ସର୍ବ ସୁଖ ଦାତା । ଗୁଣ ବିରୂଣ ହର୍ତ୍ତାକର୍ତ୍ତା ॥
ଭୃତ୍ୟଙ୍କୁ ନିଜ ପଦ ଦେଇ । ନିଷ୍ପୃ ଭ୍ରମ ନିବାରଇ ॥
ଯେ ପ୍ରଭୁ ଆତ୍ମା ହୀତକାରୀ । ସଚରାଚରେ ଅଛି ହରି ॥
ନଜାଣି ଭଜଇ ଯେ ଜନ । ତାକୁ ତାରଇ ଭଗବାନ ॥
ସେ ପ୍ରଭୁ ଅଶେଷ ଜଗତେ । ପଞ୍ଚ ସର୍ଜନ ପଞ୍ଚଭୂତେ ॥

ସର୍ଜଇ ଅଶେଷ ବିଗ୍ରହ । ପାଳଇ କରଇ ସଂଗ୍ରହ ।୩୯।
ଗୁଣ ଭେଦରେ ତନୁଭିନ୍ନ । ବ୍ରହ୍ମାଶଙ୍କର ଭଗବାନ ॥
ଯେ ପ୍ରଭୁ ନିଜ କଳେ ବରେ । ରଚନା କରି ଚରାଚରେ ॥
ଧରଣୀ ରୂପେ ପ୍ରକାଶଇ । ଅନନ୍ତ ରୂପେ ତା ବହଇ ॥
ଧାନ୍ୟାଦି ସର୍ବ ଶସ୍ୟରୂପେ । ଜୀବ ରକ୍ଷଣେ ହିଁ ପିଷ୍ଟୁପେ ॥
ପର୍ଜନ୍ୟ ରୂପେ ବୃଷ୍ଟି କରି । ଅନଳ ରୂପରେ ସଞ୍ଚରି ॥
ଯେ ପ୍ରଭୁ ଦିବସ ରଜନୀ । ପ୍ରକାଶେ ସୂର୍ଯ୍ୟ ଚନ୍ଦ୍ର ବେନି ॥
ଜଠର ନଳ ରୂପ ଧରି । ଅଶେଷ ଭକ୍ଷ ଜୀର୍ଣ୍ଣ କରି ॥
ଯେ ଆତ୍ମ ପ୍ରଭବ ସଂହାର । ଚେତନା ରୂପର ସଂସାର ॥
ଯେ ବ୍ରହ୍ମାଦିକ ବିସ୍ତରିବ । କାଳ ସ୍ୱଭାବ କର୍ମ ଭାବ ॥
ଯେ ସୃଷ୍ଟି କାରଣ ସକଳ । ଅଶେଷ ଆତ୍ମା ଆଦିମୂଳ ।୪୯।
ଭୂତ ଭବିଷ୍ୟ ବର୍ତ୍ତମାନ । ଯେ ତିନି କାଳ ପ୍ରୟୋଜନ ॥
ଅନାଦି ଅନନ୍ତ ଈଶ୍ୱର । ମନ ବଚନେ ଅଗୋଚର ॥
ତାହାକୁ ଅଛି କେ ଜଗତେ । ଆବ୍ରହ୍ମ ସ୍ତମ୍ଭ ପରଯନ୍ତେ ॥
ଯେ ହରି ହରେ ସର୍ବ ଦୁଃଖ । ଯେ ସଦାନନ୍ଦ ରସ ସୁଖ ॥
ତା ଭାବ ରସେ ଆତ୍ମା ତୋଷ । ସଂସାର ତାପ ହୁଏ ନାଶ ॥
ଶ୍ରଦ୍ଧା ଭକ୍ତିରେ ହୋଏ ଦୃଶ୍ୟ । ନାସ୍ତିକ ଭାବେ ଅପ୍ରକାଶ ॥
ଯାମାୟା ଲୀଳା ରସେ ଜନେ । ଅର୍ଜିତ ଆତ୍ମା ତ୍ରିଭୁବନେ ॥
ମାୟା ବଳରେ ମୋହଗତ । ଲୋକ ହୁଅନ୍ତି ଆତଯାତ ।୫୭।
ଯେ ବିଷ୍ଣୁ ମାୟା ବୋଲି ଜାଣି । ଭଜଇ ଶାର୍ଙ୍ଗ ଚକ୍ରପାଣି ॥
ଜନ୍ମ ମରଣ ଭୟ ହରି । ସଂସାର ବନ୍ଧନୁ ନିସ୍ତରି ॥
ଯେ କ୍ରୀଡ଼ା ନିର୍ଜିତ ଜଗତ । ଅଶେଷ ଲୋକେ ଯେ ଅଜିତ ॥
ସେ ଭକ୍ତିଭାବେ ହୋଏ ଜୟେ । ଭକ୍ତଙ୍କୁ କରଇ ଅଭୟେ ॥
ଯେଣୁ ଭାବ ଜାଣି ସାଧୁଜନ । ଧ୍ୟାନେ ଚିନ୍ତନ୍ତି ଭଗବାନ ॥

ସୁନ୍ଦର ଖର୍ବ ଭୂଜବ୍ଳର । ଶଙ୍ଖ ସାରଙ୍ଗ ଗଦାଧାରୀ ॥
କଣ୍ଠ କୁଣ୍ଡଳ ଭୂଷଣ । ହାର କେଉର ମଣିଗଣ ॥
କୌସ୍ତୁଭ ଶ୍ରୀବତ୍ସ ଲାଞ୍ଛନ । ପୀତବସନ ପରିଧାନ । ୬୫ ।
ପ୍ରସନ୍ନ ବଦନ ମଣ୍ଡଳ । ନୟନ ପୁଣ୍ଡରୀକ ଦଳ ॥
ମସୃଣ ଦୁର୍ବାଦଳ ଶ୍ୟାମ । କୋଟି ମଦନ ଅଭିରାମ ॥
ହୃଦୟ ମଧ୍ୟେ ଧ୍ୟାନକରି । ଭାବେ ଭଜନ୍ତି ବ୍ରହ୍ମଚାରୀ ॥
ଶ୍ରୀକୃଷ୍ଣ ଲୀଳା କଳେବରେ । ବ୍ରହ୍ମାଣ୍ଡ ମଧ୍ୟେ ଅବତରେ ॥
ମସ୍ତ୍ର କ୍ରମାନ୍ତ ନାନାମତେ । ଶ୍ରୀହରି ଅବତାର ଯେତେ ॥
ବହୁତ ଅଛି ରୂପ ଭେଦ । ମନ ନୟନ ସୁଖ ପ୍ରଦ ॥
ଯେ ରୂପେ ପ୍ରୀତି ଜାତ ଚିତ୍ତେ । ସେ ରୂପ ଭଜିବ ନରତେ ॥
ନୋହିଲେ ମନ ସ୍ଥିର ନାହିଁ । ଯେବେ ନ ଭଜ ଭାବଗ୍ରାହୀ ।୭୩।
ସର୍ବାତ୍ମା ଭାବେ କୃଷ୍ଣପାଦେ । ସାଧୁ ଭଜନ୍ତି ଅପ୍ରମାଦେ ॥
ବହୁତ ବିଘ୍ନ ଉପଗତେ । ବଶ ନୋହନ୍ତି କଦାଚିତେ ॥
ଭଜନ୍ତି ଦେବ ଦଇତାରି । ହେଳେ ତରନ୍ତି ଭବବାରି ॥
ଅଶେଷ ଦୁଃଖ ଗ୍ଲାନି ଜିଣି । ଲଭନ୍ତି ପ୍ରଭୁ ଚକ୍ରପାଣି ॥
ପରମ ଯୋଗୀ ସାଧୁଜନେ । ସକଳ ଭୂତେ ବିଷ୍ଣୁ ଧ୍ୟାନେ ॥
ଦେଖନ୍ତି ପ୍ରଭୁ ପୀତବାସ । ଛେଦନ୍ତି ଭବ ବନ୍ଧପାଶ ॥
ତୁ ଯେବେ ଭଜ ଭଗବାନ । ଭାବେ ଆନନ୍ଦ କରି ମନ ॥
ଯେ ହରି ସର୍ବ ଭୂତେ ବାସ । ତାହାଙ୍କୁ ଛେଦ ମୋହ ପାଶ ।୮୧।
ବାହ୍ୟ ଭାବନା ଦୂର କରି । ଏକାନ୍ତ ଭାବେ ଭଜ ହରି ॥
ଯେ ହରି ଆତ୍ମା ଦଇବତ । ଯେହରି ପ୍ରାଣ ପଞ୍ଚଭୂତ ॥
ତାବନ୍ତୁ ଅନ୍ୟ କିଛି ନାହିଁ । ହରି କରନ୍ତୁ ତୋତେ ଛାହିଁ ॥
ଶ୍ରୀକୃଷ୍ଣ ଭାବ କଳ୍ପ କତ୍ତ । କୃପା କଲ୍ଲୋଳେ ଜଡ଼ମତ୍ତ ॥
ଆନନ୍ଦେ ତୋଳ ଦଶ କର । ରାଜା ମସ୍ତକ ମୁକ୍ତ ଦର ॥

ଅର୍ପିତ କଲେ ଦୟା ନେତ୍ରେ । କମଳ ନେତ୍ରେ ସୁପ୍ରେମୋଦ୍ଧିତ ॥
ନୃପତି ରତ୍ନ ଚୂଡ଼ାମଣି । ଶ୍ରବଣେ ଶୁଣି ଶୁକବାଣୀ ॥
ନିର୍ମଳ ଗ୍ୟାନ ଦିନକର । ହୃଦୟ ଗଗନେ ତାହାର ।୮୯।
ତତକ୍ଷଣେ ହୋଇଲା ପ୍ରକାଶ । ସଂସାର ତମ କଲା ନାଶ ॥
ଶୁକ ବଚନ ସୁଧାରସେ । ଭକ୍ତ ନୃପତି ମନ ଭାସେ ॥
ପରମାନନ୍ଦ ବ୍ରହ୍ମରାଶି । ନୃପତି ଲୋଚନକୁ ଦିଶି ॥
ପ୍ରକାଶ ଅର୍କ ଇନ୍ଦୁ ତାରା । କୃଷ୍ଣାନୁଧାମ ବଦ୍ଧ୍ୟଧାରା ॥
ସମ ନୋହନ୍ତି କୋଟି ଅଂଶେ । ସୁନ୍ଦର ବ୍ରହ୍ମଧାମ ହାସେ ॥
ଦରିଦ୍ର ଯେହ୍ନେ ଦେବ ବରେ । ସମ୍ପଦ ଲଭଇ ଅଚିରେ ॥
ନୟନେ ଦେଖଇ ନୃପତି । ସଚରାଚର ବ୍ରହ୍ମ ଜ୍ୟୋତି ॥
ବ୍ରହ୍ମ ଜ୍ୟୋତିରେ ବିଶ୍ୱଲୟେ । ଜଳଧି ତରଙ୍ଗ ପରାୟେ ।୯୦।
ମହୀଗଗନ ଦିଗ ବାତ । ନଦୀ ପର୍ବତ ସିନ୍ଧୁ ସାତ ॥
ଅଖିଳ ଲୋକ ପ୍ରଜାମାନ । ବ୍ରହ୍ମ ତେଜରେ ସର୍ବ ଲୀନ ॥
କାରଣ ଯେହ୍ନେ ଚନ୍ଦ୍ର ସୂର୍ଯ୍ୟ । ବ୍ରହ୍ମାଣ୍ଡ ବ୍ରହ୍ମ ତେଜ ପୁଞ୍ଜ ॥
ବ୍ରହ୍ମରୁ ଆନ ନାହିଁ କେହି । ଜୀବ ଅଶେଷ ସର୍ବ ଦେହୀ ॥
ସେ ବ୍ରହ୍ମ ଧାମ ଭଗବାନ । ସତ୍ୟ ସ୍ୱରୂପ ନିରଞ୍ଜନ ॥
ଭକ୍ତ ସନ୍ନ୍ୟାସେ ସାଧୁଗଣ । ଯେ ବ୍ରହ୍ମ ଭାବେ ପରାୟଣ ॥
ସେ ବ୍ରହ୍ମରାଶି ସୁଖ ସିନ୍ଧୁ । ନୟନେ ଦେଖି ନୃପଇନ୍ଦୁ ॥
ଭାବଇ ବାହ୍ୟ ଅଭ୍ୟନ୍ତରେ । ବ୍ରହ୍ମ ପ୍ରକାଶ ନିରାକାରେ ।୯୧।
ନୟନ ବୁଜି ମହାରାୟେ । ବ୍ରହ୍ମରେ ଆତ୍ମା କରି ଲୟେ ॥
ହୃଦୟେ ଦେଖଇ ଶ୍ରୀହରି । କମଳ ଲୋଚନ ମୁରାରି ॥
ପୁଣି ଦେଖଇ ବାହ୍ୟଭାବେ । ମନ ବଚନ ଅସମ୍ଭବେ ॥
ଆତ୍ମା ଭାସିଲା ସୁଖ ହେଲେ । ବ୍ରହ୍ମ ଆନନ୍ଦ ରସ ଜଳେ ॥
ଶୁଣ ସୁଜନେ ଋଷବାଣୀ । ତରିବ ଭବ ତରଙ୍ଗିଣୀ ॥

ପରୀକ୍ଷିତ ଶୁଣନ୍ତେ ହୋଇ ମନ । କୃପା କରନ୍ତେ ଜନାର୍ଦ୍ଦନ ॥
ବ୍ରହ୍ମ ଆନନ୍ଦ ରସଗୀତ । କହଇ ସ୍ୱପ୍ନ ଜଗନ୍ନାଥ ॥

ଇତି ଶ୍ରୀମତ୍‌ପରମହଂସେ ଶୈବାଗମେ ଶୁକ ପରୀକ୍ଷିତ ସମ୍ବାଦେ ବ୍ରହ୍ମ ପ୍ରାଦୁର୍ଭାବେ ନାମ ଏକବିଂଶ ଅଧ୍ୟାୟ ।

## ଦ୍ୱାବିଂଶ ଅଧ୍ୟାୟ

ସୁଜନେ ଶୁଣ ସାବଧାନେ । ପରୀକ୍ଷି ନୃପତି ଯେସନେ ।୧।
ଲଭିଲା ବ୍ରହ୍ମାନନ୍ଦ ଭାବ । ଉମା ଅଗ୍ରତେ ସଦାଶିବ ॥

ଶ୍ରୀ ଈଶ୍ୱର ଉବାଚ

କହନ୍ତି ପ୍ରେମ ରସ ବାଣୀ । ଶୁଣଗୋ ହେମନ୍ତ ନନ୍ଦିନୀ ॥
ଗ୍ୟାଂନ ଲୋଚନେ ମହୀପତି । ଦେଖି ପରମ ବ୍ରହ୍ମଜ୍ୟୋତି ॥
ହରଷେ ହେଉଛଇ ମନ । ଧନ୍ୟ ହୋଇଲା ମୋ ଜୀବନ ॥
ଯେ ସେ ପରମ ବ୍ରହ୍ମରାଶି । ବ୍ରହ୍ମାଣ୍ଡ ରୂପେ ପରକାଶି ॥
ଜଗତ କରଇ ବିଧାନ । ଭାବେ ପାଳଇ ସର୍ବଜନ ।୧୦।
ସଂହାର କରଇ ଅନ୍ତରେ । ଯେସନ୍ତେ ବାଳକ ଖେଳାକରେ ॥
ବସ୍ତୁରୁ ବସ୍ତୁ ନୋହେ ଭିନ୍ନ । ଜଗତ ମୟ ଜନାର୍ଦ୍ଦନ ॥
ଯେସନ୍ତେ ଲବଣ ତେଜ ରାଶି । ଜଳ ଭିତରେ ପ୍ରକାଶି ॥
ଜଳରୁ ନୁହଇ ସେ ଆନ । ସ୍ଥୂଳ ବିକାରେ ମୂର୍ତ୍ତିଭିନ୍ନ ॥
ଅଶେଷ ଲୋକ ବସ୍ତୁ ବିନୁ । କେବଳେ ନୁହେଁ ଭିନ୍ନ ତନୁ ॥
ଜଗତ ରୂପେ ଭଗବାନ । ଗୁଣ ବିକାରେ ଭିନ୍ନଭିନ୍ନ ॥
ସଚରାଚର ବ୍ରହ୍ମତନୁ । କିଛି ହୁଁ ନାହିଁ ବସ୍ତୁ ବିନୁ ॥
ଅଗ୍ୟାଂନ ଜାଣିମ କେମନ୍ତେ । କୁତର୍କୀବାଦ ମୋହ ଚିତ୍ତେ ।୧୫।
ଧନ୍ୟପୁଣ୍ୟ ଶୁକ-ମହାମୁନି । କୃପା ସାଗର ବ୍ରହ୍ମଗ୍ୟାଂନୀ ॥
ଯାହାର ଅନୁଗ୍ରହ ବଳେ । ବ୍ରହ୍ମ ଦେଖିଲି ଚର୍ମଡୋଳେ ॥
ଭକ୍ତି ଯୋଗରେ ଗମ୍ୟହୋଇ । ବ୍ରହ୍ମ ଆନନ୍ଦ ରସମୟେ ॥

ଜଗନ୍ନାଟକ ସୂତ୍ରଧର । ବିଚିତ୍ର କର୍ମା ଚକ୍ରଧର ॥
ଅଭକ୍ତ ଭାବେ ଯେବେ ଚିତ୍ତ । ସେ ପ୍ରାଣୀ ମାୟାରେ ମୋହିତ ॥
ତାହାର କାହିଁ ବିଷ୍ଣୁ ଜ୍ଞାନ । ବିଫଳେ ନଅଇ ଜୀବନ ॥
ଭ୍ରମଇ ସଂସାର ସାଗରେ । ଜନ୍ମ ମରଣ ଭୟଙ୍କରେ ॥
ଦେଖସ୍ୱେ ମାୟା ମୋହ ଜଳେ । ଅଜ୍ଞାନ ତରଙ୍ଗ ପ୍ରବଳେ ।୨୩।
ବିଷ୍ଣୁକୁ ନଜାଣି ଜଗତ । ବିଅର୍ଥେ ଆତ୍ମା କରେ ହତ ॥
ଅନ୍ଧ ଯେସନେ ଘୋର ବନେ । ପଥ ନଜାଣି ଭ୍ରମମନେ ॥
ଭ୍ରମଇ ଆତ୍ମା ସମାକୁଳେ । ପ୍ରାଣୀ ତେସନେ ଯେ ସଂସାରେ ॥
ଉତ୍ତମ ସାଧୁ ବିଚକ୍ଷଣ । ଭଜନ୍ତି ପ୍ରଭୁ ନାରାୟଣ ॥
ବିଷୟ ରସ ଅପହରି । ଆନନ୍ଦେ ଆତ୍ମାକୁ ଉଦ୍ଧରି ॥
ଯେହ୍ନେ ଶୁଖିଲା ନାରିକେଳ । ତେଜଇ ଅନ୍ତଗତ ଜଳ ॥
ସୁଖେ ରହଇ ପୁଣ ଯେତେ । ବିଷ୍ଣୁ ଭଜନ ଜନ ମତେ ॥
ଯେ ପ୍ରାଣୀ ଇଚ୍ଛା କରେ ସୁଖ । ଭାବେ ନଭଜେ ପଦ୍ମମୁଖ ।୩୧।
ମାୟା ସୁଖରେ ତୋଷ ହୋଇ । ବିଷୟ କଉଣେ ରମଇ ॥
ଜଡ଼ ଇନ୍ଦ୍ରିୟ ମୋହ ଲାଗି । କାଳେ କୋହଇ ସୁଖଭାଗି ॥
ତୃଷାର୍ତ୍ତି ହୋଇ ଗଙ୍ଗାତୀରେ । ଗୋ ମୂତ୍ର ଜଳ ପାନକରେ ॥
ପଶୁଙ୍କ ପ୍ରାୟେ ତା ଜୀବନ । ଦଇବ ହେତୁରେ ବନ୍ଧନ ॥
ବିଅର୍ଥ କର୍ମ ପରାୟଣେ । ଆତ୍ମା ବଞ୍ଚିତ ଅକାରଣେ ॥
ଶ୍ରୀଭଗବାନ ନ ଭଜିଲେ । କେମନ୍ତେ ତରିବ ସେ ଭଲେ ॥
ମୋହ ସଂସାର କୂପେ ପଡ଼ି । ମାୟା ବନ୍ଧନ ପାଶେ ଜଡ଼ି ॥
ଜ୍ଞାନ ଲୋଚନ ଅପ୍ରକାଶ । କାଳ ଭୁଜଙ୍ଗ କରେ ଗ୍ରାସ ।୩୯।
ଯେ ଘୋର ସଙ୍କଟୁ ମୁରାରି । ଭଜିଲେ ଭାବେ ରକ୍ଷାକରି ॥
ପ୍ରାଣୀ ସଂସାର ମନରଞ୍ଜୁ । ଶ୍ରୀକୃଷ୍ଣ ଭଜୁବା ନଭଜୁ ॥
ସେ କୃପା ନକରିଲେ ମୋତେ । କ କାର୍ଯ୍ୟ ହୋଇବ ଜଗତେ ॥

ମୋହର ଜନ୍ମ ମହୀତଳେ । ସ୍ୱାର୍ଥ କ୍ରିୟା ରସଭୋଳେ ॥
ଅକାର୍ଯ୍ୟେ ଗଲା ଯେତେ ଦିନ । ତେଣୁ ତାପଇ ମୋର ମନ ॥
ପରମ ଯୋଗୀବୃନ୍ଦ ଯାହା । ଆତ୍ମାରେ କରନ୍ତି ଉତ୍ସାହା ॥
ଉତ୍ତମ ସାରଗ୍ରାହୀ ସାଧୁ । ଯେଉଁମାନେ ଆତ୍ମାଛନ୍ତି ବୋଧୁ ॥
ସେ ଭାବ ତେଜି କର୍ମା ମୁହିଁ । ଭବ ଅୟସେ ଦୁଃଖ ପାଇ ।୩୭।
ଜୀବନ କରିବ ବଞ୍ଚିତ । ଭଜନ୍ତ ଅବଯୁ ଅଚ୍ୟୁତ ॥
ସ୍ୱାର୍ଥ ଅନୁତାପେ ମନ । ଜୀବନ କରଇ ଉଚ୍ଛନ୍ନ ॥
ଧନ୍ୟ ମୋହୋର ପୁଣ୍ୟବଳ । ଭଜିଲି ପ୍ରଭୁ ଆଦ୍ୟମୂଳ ॥
ଯେବେ ତୃଷିତ ଜନ ଆଗେ । ଅମୃତ ଥିବ ଭୂମି ଭାଗେ ॥
ସେ ତାହା ମୁଞ୍ଚିବ କେମନ୍ତେ । ଆତ୍ମା ତୋଷିବ ସୁଖ ଚିତ୍ତେ ॥
ଅମୋକ୍ଷ ତାପ ନୟାନଳେ । ଚିତ୍ତ ଦହଇ ଅନ୍ତରାଳେ ॥
ଶାନ୍ତ କରିବ ଶୀଘ୍ର କରି । ପ୍ରସନ୍ନ ହୋଇବେ ମୁରାରି ॥
କାଳ କରାଳ ଗ୍ରାସେ ମୋର । ଭସ୍ମ ହୋଇଲା କଳେବର ।୪୫।
ଆତ୍ମା ଲଭିବ ଦିବ୍ୟଗତି । ପ୍ରଭୁ ମୋହର ଜଗଜ୍ୟୋତି ॥
ଯେତେ ବଡ଼ିଶ ମହୀପାଳ । ହୃଦୟୁ କଳଙ୍କ ନିଷ୍ଫଳ ॥
ପୁଲକ ରାଜି ଶୋହେ ଅଙ୍ଗେ । ଆତ୍ମା ଦ୍ରବିଲା ରସରଙ୍ଗେ ॥
ଝରିଲି ନୟନ ତରଙ୍ଗେ । ସଜଳ ସ୍ରାବୀ ହୃଦ ଭାଗେ ॥
ବହଇ ବେନି ଭାଗ ହୋଇ । ଉତ୍କଣ୍ଠ ବଚନ ଭାଷଇ ॥
ହେ ମୁନିବର ତୋ ପ୍ରସାଦେ । ଭୟ ନାଶିଲା ଅପ୍ରମାଦେ ॥
ହେମୁନି ଆଗ୍ୟାଂ ମୋତେଦେବା । ଯେବେ ଦେଖିଲ ମୋରସେବା ॥
ଆତ୍ମା କରିବ ଉପରାମ । ଲଭିବ ବ୍ରହ୍ମାନନ୍ଦ ଧାମ ॥
ହେ ଗଙ୍ଗା ଦେବୀ ବିଷ୍ଣୁ ପ୍ରିୟେ । ତୋପାଦେ କରଇ ବିନୟେ ।୫୪।
ଲଭିବି ବ୍ରହ୍ମ ସନାତନ । ଆନନ୍ଦେ ତେଜିବ ଜୀବନ ॥
ଅଶେଷ ଜନ ପ୍ରଜାମାନ । ଯେତେ ଅଛନ୍ତି ମୁନିଜନ ॥

ସମସ୍ତେ ହୋଅ ମୋତେତୋଷ । ଯେ ଦେହ କରିବଇ ନାଶ ॥
ହେ ଦେବ ଦଶ ଦିଗ ପାଳ । ଇନ୍ଦ୍ରାଦି ଅମର ସକଳ ॥
ସମସ୍ତେ ଥାଅ ତୁମ୍ଭେ ଜାଣି । ମୋର ଶରଣ ଚକ୍ରପାଣି ॥
ଯେମନ୍ତ କହି ମହାରାଜେ । ଯୋଗ ଆସନେ ବସିଲେ ଯେ ॥
ଚିନ୍ତଇ ପ୍ରଭୁ ବ୍ରହ୍ମରାଶି । ଆନନ୍ଦ ସୁଖ ଜଳେ ଭାସି ॥
ଚଞ୍ଚଳ ଇନ୍ଦ୍ରିୟ ଜିଣିଲା । ବିଷୟ ପ୍ରବନ୍ଧ ଛେଦିଲା ।୭୨।
ମନ ପ୍ରକୃତି କଲା ସ୍ଥିର । ହୃଦେ ଦେଖିଲା ଦାମୋଦର ॥
ଶ୍ୟାମ ସୁନ୍ଦର ଭୁଜ ଚାରି । ଶଙ୍ଖ କମଳ ଗଦାଧାରି ॥
କର୍ଣ୍ଣେ କୁଣ୍ଡଳ ଶୋଭିତ । ପୀତ ବସନ ପରିହିତ ॥
କୌସ୍ତୁଭ ମଣି ହୃଦେଶୋଭେ । ହେଲେ ସଚରାଚର ମୋହେ ॥
ଯଜ୍ଞ ପବିତ୍ର କନ୍ଧ ଦେଶେ । ରଙ୍ଗ ଅଧର ମନ୍ଦହାସେ ॥
କରୁଣା କମଳ ଲୋଚନ । ଅମୀୟ କରଇ ସିଞ୍ଚନ ॥
ହୃଦୟ କମଳ ମଧ୍ୟରେ । ଦ୍ୱାଦଶ ଅଙ୍ଗୁଳି ଶରୀରେ ॥
ବିଜୟେ ଦେବ ନରହରି । ବ୍ରହ୍ମ ଆନନ୍ଦ ରୂପ ଧରି ।୮୦।
ଧ୍ୟାନ ଲୋଚନେ ନୃପମଣି । ଆତ୍ମାରେ ଦେଖି ଚକ୍ରପାଣି ॥
ବେଗେ ତେଜିଲା କଳେବର । ଅନଳେ ଯେହ୍ନେ ଘୃତଧାର ॥
ଆତ୍ମାକୁ କଲା ଉପଶମ । ବ୍ରହ୍ମରେ ଲଭିଲା ବିଶ୍ରାମ ॥
ଆତ୍ମାରେ ଆତ୍ମା କଲା ଲୟେ । ସ୍ୱର୍ଗେ ଶୁଭିଲା ଜୟେଜୟେ ॥
ଦେବେ ଦୁନ୍ଦୁଭି ବାଦ୍ୟଘୋଷି । ଆନନ୍ଦେ କୁସୁମ ବରଷି ॥
ତକ୍ଷକ ନାଥ ବହ୍ମଶାପେ । ମିଳିଲା ନୃପତି ସମୀପେ ॥
କୋପେ ଦଂଶିଲା ତାରଦେହ । ବିଷ ଅନଳ କଲା ଦାହ ॥
ବ୍ରହ୍ମ ବଚନେ ସର୍ପବଂଶେ । ବନ୍ଦୁବେଶର ଗୁଣ କହେ ।୮୮।
ନୃପ ହୋଇଲା ଭସ୍ମରାଶି । ଦେଖନ୍ତି ସୁରନର ଋଷି ॥
ଦେଖି ପରୀକ୍ଷ ମୋକ୍ଷଗତି । ଆନନ୍ଦେ ଗଲେ ସର୍ବଜନ୍ତି ॥

ପ୍ରଜା କରନ୍ତି ହାହାକାର । ଭୂମି ହଟଇ ଅସୁନ୍ଦର ॥
ଶୁକ ବଚନେ ମହୀପତି । କମଳା ପତି ପାଦଚିନ୍ତି ॥
ବ୍ରହ୍ମ କାରୁଣ୍ୟ ତିନ ଧାମ । ଦେଖିଲେ ଲଭିଲ ବସ୍ତୁ ଗ୍ରାମ ॥
ଅତି ଦୁସ୍ତର କର୍ମପାଶ । କୋଟି କଳ୍ପକେ ନୋହେ ନାଶ ॥
ସେ କର୍ମ ପାଶ ସାଧୁଜନେ । ନାଶନ୍ତି ଶ୍ରୀହରି ଭଜନେ ॥
ଦେଖସେ ନୃପତି କୁଞ୍ଜର । ସଂସାରୁ ହୋଇଲା ନିସ୍ତାର ।୯୬।
ରୁଦ୍ର ବୋଲନ୍ତି ପ୍ରିୟେ ଶୁଣ । ପରୀକ୍ଷ ମହୀପତି ଗୁଣ ॥
ଯେ ପ୍ରାଣୀ ଶ୍ରବଣେ ଶୁଣନ୍ତି । ବୈକୁଣ୍ଠ ଲୋକେ ସେବସନ୍ତି ॥
ସୁଜନେ ଶୁଣ ଚିତ୍ତ ମନେ । କୃଷ୍ଣ ଚରଣ ପଦ୍ମଧ୍ୟାନେ ॥
ହେଲେ ତରିବ ଭବଜଳ । ଦୟା ସାଗର ନନ୍ଦବାଳ ॥
ଦାସ ବଚ୍ଛଳ ଦେବରାୟେ । ଟେକ ପଦ୍ମପାଦେ କରି ଲୟେ ॥
ତାହା କହିଲି ଭାଷାମତେ । ଆଗମ ବଚନ ସମ୍ମତେ ।୧୦୨।
ଶଙ୍କର ଗଉରୀ ସମ୍ବାଦ । ଅମୃତ ରସ ମୟେ ପଦ ॥
ମୋର ହୃଦୟ ମଧ୍ୟେ ହରି । କରୁଣା ଚିତ୍ତେ ହେଜେ କରି ॥
କହିଲେ ଗୋପୀ ପ୍ରେମ ରସ । ଅଦ୍ଭୁତ ପରମ ରହସ୍ୟ ॥
ମୋର ସମାନ ଭାଗ୍ୟହୀନ । ସଂସାରେ ନାହିଂ ଅନ୍ୟଜନ ॥
ଗୃହ ବିଷୟ ମୋହ ପାଶେ । ବନ୍ଦୀ ହୋଇଛି ମାୟା ବଶେ ॥
ଧର୍ମ ନକଲି ଆତ୍ମା ହିତେ । ଅର୍ଜଇ ଇନ୍ଦ୍ରିୟ ବଞ୍ଚିତେ ॥
ସୁକୃତ ନପାରିଲି କରି । ଅସାଧୁ ସଙ୍ଗେ ଦିନ ହରି ॥
ଶ୍ରୀଜଗନ୍ନାଥ ଭାବେ ଆଶ । ହୃଦୟେ କରଇ ସାହାସ ॥
ସେ ମୋତେ ଭାବେ ଉଦ୍ଧରିବେ । ସଂସାରେ ସଙ୍କଟୁ ତାରିବେ ॥
ତାଙ୍କ ଅଭୟ ପାଦତଳେ । ଶରଣ ଗଲି ସର୍ବ କାଳେ ॥
ଶ୍ରୀଗୁରୁ ବଚନ ତରଣୀ । ଅଜ୍ଞାନ ଅନ୍ଧାରକୁ ଜିଣି ॥
ହର ଅଭୟ ସଂପ୍ରଦାନେ । ଶ୍ରୀକୃଷ୍ଣ ଭକ୍ତି ରସ ଜ୍ଞାନେ ॥

ମୋର ଦୁଷ୍କୃତ ଅପହର । ନିର୍ମଳ ଭାବେ କୃପା କର ॥
କରୁଣା ରମଣୀଯ଼ ଚନ୍ଦ୍ର । ଅଗ୍ୟାଂନ ଅନ୍ଧକାର ଭାନୁ ॥
ଶ୍ରୀଗୁରୁ ଗୋବିନ୍ଦ ଚରଣେ । ଭକତି ଆତ୍ମା ନସ୍ତାରଣେ ।୧୧୭।
ନାଶିବ ଜଡ଼ ମାଯ଼ା ମୋହ । ସୁଜନେ କର ଅନୁଗ୍ରହ ॥
ବାକ୍ଷୁତ ପ୍ରକୃତ ଚଞ୍ଚଳେ । ପ୍ରାକୃତ ବଚନ ଭ୍ରସଲେ ॥
ଯାହା କହିଲି ଗୀତ ଛନ୍ଦେ । ସୁଜନେ ଶୁଣ ମନ ତୋଷେ ॥
ମୋର ଅପ୍ରାଧ କ୍ଷେମାକର । ମୁଂ ତୁମ୍ଭ ଚରଣେ କିଙ୍କର ॥
ଗୁରୁ ଗୋବିନ୍ଦ ସାଧୁଜନ । ସେମାନଙ୍କ ପାଦେ ଦେଇ ମନ ॥
ଶଇବାଗମ ସାର ଗ୍ରନ୍ଥ । କହିଲି ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମତ୍ ପରମରହସ୍ୟେ ଶୈବାଗମେ ପରୀକ୍ଷିତ ବ୍ରହ୍ମନିରୂପଣେ ଈଶ୍ୱର ଉମାସମ୍ବାଦେ ନାମ ଦ୍ୱାବିଂଶୋଽଧ୍ୟାଯ଼ଃ ।

—※—

**ସ ମା ପ୍ତ**

# ଶୁଦ୍ଧି ପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨ | ୧ | ଜରୁକ୍ରମ | ଜରୁକ୍ରମ |
| ୭ | ୨୦ | ଗୃଷପୂ | ବୃଷପୂ |
| ୮ | ୨ | ମହାମୁଖ | ମହାସୁଖ |
| ୧୩ | ୧୨ | କଅାଣ | କଙ୍କଣ |
| ୧୪ | ୨ | ଭଗଠ | ଭଗତ |
| — | ୧୦ | ମହାଶେରୁ | ମହାମେରୁ |
| ୧୫ | ୧୩ | ସୁଖ | ମୁଖ |
| ୧୭ | ୧୭ | କଟୁ | (କଟିଯିବ) |
| ୧୮ | ୧୦ | ଭଜ ଛନ୍ଦ, ମୁନନ୍ଦ | ଭଜ ଛନ୍ଦ, ମୁନନ୍ଦ |
| — | ୧୭ | ଗୋପନ ପରେ | ଗୋପ ନଗରେ |
| — | ୨୧ | ବ୍ରହ୍ମବଜ | ବ୍ରହ୍ମରଜ |
| ୧୯ | ୧୯ | ଗର୍ଭିକୁ | ଗର୍ଭକୁ |
| — | ୨୨ | ନଳନାଗ | ନନ୍ଦନାଗ |
| ୨୩ | ୧୧ | ଶ୍ରୀମହରମ | ଶ୍ରୀମପୁରମ |
| ୨୪ | ୨୦ | ଗଞ୍ଜରଙ୍ଗ | ଗଞ୍ଜରଙ୍ଗୀ |
| — | ଶେଷ | ଦୂରଂ | ଦୂରୁଂ |
| ୨୭ | ୧୬ | ନାଟେଶ | ନାମେ |
| ୨୯ | ୧୫ | ବ୍ୟଞ୍ଜନ | ବ୍ୟଞ୍ଜନ |
| ୩୦ | ୧୭ | ଅରୁଣିଶ | ଅରୁଣିମ |
| ୩୩ | ୧୭ | ପଞ୍ଚରଶୋଽଧ୍ୟାୟଃ | ପଞ୍ଚମୋଽଧ୍ୟାୟଃ |
| ୩୪ | ୨ | ରହେ | ରହେ |
| — | ୩ | ଦେଲେ, ପ୍ରକଟନେ | ଢନେ, ପର୍ଯ୍ୟଟନେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
| --- | --- | --- | --- |
| ୩୫ | ୩ | ଦ୍ୱିତ | ଦତ । |
| ୩୬ | ୪ | ନବା | କବା |
| — | ୮ | ପାଳନ୍ତା | ପାଳନ୍ତି |
| ୩୭ | ୮ | ଜଣିଲ | ଜଣିଲୁ |
| ୩୮ | ୧୩ | ତୁପ | ତପ |
| — | ୧୬ | ଭୁବନେଶ୍ୱର | ଭୁବନେଶ୍ୱରୀ |
| ୩୯ | ୧୩ | ଶ୍ରଦ୍ଧା | ଶ୍ରଦ୍ଧା |
| ୪୫ | ୧୯ | ବଣନେ | ଦ୍ରଶନେ |
| ୪୬ | ୧୧ | କାନ୍ତଶାରେ | କାନ୍ତମାରେ |
| — | ୧୭ | ପଦ୍‌ଦେ | ଗଦ୍‌ଗଦେ |
| — | ୨୧ | କଦୁଷ୍ଟ | କଦୁତ |
| ୪୭ | ୧୨ | କଷ୍ଟା | କଷ୍ଟ |
| — | ୨୦ | ତୋଣ | ତୋଣ |
| ୪୮ | ୯ | ବେଡ଼ା | ବେଗ୍ରା |
| — | ୨୦ | ତାହାର୍ଥୀ,ବେଣୁଆସ | ତାହାଙ୍କ, ବେଣୁଧାସ |
| — | ୨୧ | କାଳ | କଳ |
| ୪୯ | ୭ | ଯବ | ଜବା |
|  |  | କୁସୁମବନ୍ତଂସିତ | କୁସୁମାବତଂସିତ |
| — | ୧୨ | ଦ୍ୱଅ | ଦ୍ୱବ୍ୟ |
| — | ୧୬ | ଭଳ | ଭଗ୍ନୀ |
| — | ୧୯ | ଶୁର | ପୁର |
| ୫୦ | ୭ | ଅଜ୍ଜୁନ | ଅର୍ଜୁନ |
| — | ୧୨ | ଶୁଣମୋ | ଶୁଣଗୋ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୫୪ | ୧୭ | ସୁଚା | ସୁତା |
| ୫୫ | ୭ | ନନ୍ଧନ | ନନ୍ଦନ |
| — | ୧୪ | ମୋହ୍ବଚେ | ମୋ ହ୍ବଚେ |
| ୫୭ | ୭ | ଭଦଇ | ଭଜଇ |
| ୬୦ | ୧ | ନିଦ୍ରାହର କଲ | ନିଦ୍ରା ଦୂରକଲା । |
| — | ୪ | ଛିଳ | ଚଳ |
| — | ୧୦ | ଦୁକସହ | ଦୂଃସହ |
| ୬୧ | ୯ | ପ୍ରସନ୍ନ | ପ୍ରସନ୍ନ |
| — | ୧୪ | ଶ୍ରୀନନ୍ଦନ | ଶ୍ରୀନନ୍ଦନନ୍ଦନ |
| ୬୨ | ୨୦ | ନହୋଇ | କହଇ |
| ୬୩ | ୧୨ | ପୁଣ୍ୟସ୍ରବା | ପୁଣ୍ୟଶ୍ରବା |
| — | ୧୭ | କଂଶତ | ବଂଶନ୍ତ |
| — | ୧୯ | ନିଷ୍କାଶେ | ନିଷ୍କାମେ |
| — | ୨୧ | ବ୍ରହ୍ମଯେ | ବ୍ରହ୍ମମୟେ |
| — | ୨୨ | ଭସ୍ବର | ଜସ୍ବର |
| — | ୨୩ | ରେଙ୍ଗ | ରେଖ । |
| ୬୪ | ୩ | ମଧପତ | ମଧଗତ |
| — | ୧୪ | ପରିସ୍ଫୁତ | ପରିପ୍ଲୁତ |
| — | ୧୫ | ଶ୍ରୋଣି | |
| — | ୨୧ | ଗ୍ରଞ୍ଜେ | ଗଞ୍ଜେ |
| — | ୨୩ | ଗୁଲ | ଚୁଲ |
| — | ଶେଷ | ଗ୍ୟାମ | ଶ୍ୟାମ |
| ୬୫ | ୨୧ | ଘୁରୁକଣ୍ଠା | ଘୁରୁକଣ୍ଠୀ |
| ୬୭ | ୧୩ | ଦୋଷ | ଦୋଷ |
| — | ୨୨ | କେଢେବନ୍ | କେ ଢୋବନୁ |
| ୬୮ | ୯ | ଦର୍ଶନ | ଦଶନ |
| ୬୯ | ୨୦ | କେ ହୋଇ | ଏକ ହୋଇ । |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୭୦ | ୧୯ | ସ୍ୱାପ୍ରକାଶ | ସ୍ୱପ୍ରକାଶ |
| ୭୧ | ୧ | ସମ;ଗେତ | ସମାଗତ |
| — | ଶେଷ | କଂସାଳ | କଂସାଳ |
| ୭୨ | ୧୫ | ଯାରୁପ | ଯା-ରୂପ |
| ୭୩ | ୬ | ଗଭର | ଗହ୍ୱର |
| ୭୪ | ୮ | ବରନାଶ | ବଉନାଶ |
| ୭୫ | ୧୬ | ନମ୍ବୁନବ | ଜମ୍ବୁନଦ |
| ୭୬ | ୧୮ | ଆନନ୍ଦର ସକୁପ | ଆନନ୍ଦ ରସକୂପ |
| ୭୮ | ୬ | ନଶୁଣି | ଶୁଣି ମେ । |
| ୮୦ | ୫ | ଇନ୍ଦ୍ରାବ | ଇନ୍ଦ୍ରାଦ |
| ୮୧ | ୬ | ସେ, ପରେ ମୋର ଗୁଡ଼ଯାଇଛି । | 'ସେ ମୋର' ଆତ୍ମା ଅନ୍ତରଙ୍ଗୋ |
| ୮୨ | ୧୩ | ଅଂଶ୍ରୁମାଳ | ଅଂଶୁମାଳୀ |
| ୮୩ | ୬ | କ ଜପ୍ୟେ | କଜପ୍ୟେ |
| — | ୧୭ | ଘଷାମାନ | ଘଷାମଟେ |
| ୮୪ | ୪ | ଚସ୍ୱରେ | ଚସ୍ୱର । |
| ୮୫ | ୬ | ଯେ ତୁମ୍ଭ | ଯ୍ୱେ ତୁମ୍ଭ |
| ୮୬ | ୧୩ | ସୁଖ | ମୁଖ |
| ୮୭ | ୨୪ | ଗହ୍ୱର ଗଭର | ଗହ୍ୱର |
| ୮୯ | ୧୪ | ଅନକେ | ଅନ୍ୟକେ |
| ୯୦ | ୨୨ | ସାଳକ | ବାଳକ |
| ୯୩ | ୧୨ | ଦେଖିଲେ | ଦେଖିଲେ |
| ୯୮ | ୫ | ଇସ | ରସ |
| — | ୧୮ | ଆସୁଥିବେ | ଆସୁ ଯେ ଥିବେ |
| ୯୯ | ୨୧ | ଉଦ୍ଗମୋ | ଉଦ୍ଗମ ମୋ |
| ୧୦୦ | ୮ | ପଣ୍ଡସ୍ଥଳ | ଗଣ୍ଡସ୍ଥଳ |
| — | — | ସମୀକୁଳ | ସମାକୁଳ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
| --- | --- | --- | --- |
| — | ୧୭ | ଘଣ୍ଟିଲ | ରଣ୍ଟିଲ |
| ୧୦୧ | ୧୧ | ମୋହନ୍ତ | ନୋହନ୍ତ |
| ୧୦୨ | ୧୫ | ଅନନ୍ଦ | ଆନନ୍ଦ |
| ୧୦୩ | ୬ | ଝଲ୍କେପନେ | ଝଲେପନେ |
| — | ୧୧ | ପ.ଚଞ୍ଚନେ | ପାଚନେ |
| ୧୦୫ | ୭ | ର ସଭରେ | ରସଭରେ |
| — | ୧୪ | କୁଭୂହଳେ | କୁତୂହଳେ |
| ୧୧୨ | ୧୯ | ଜନୁଶ୍ୟାମ | ଘନଶ୍ୟାମ |
| ୧୧୩ | ୨ | ଭ୍ରମଳେ | ଭ୍ରମେଳେ |
| — | ୨୧ | ପୁଷ୍ପଦାମ | ପୁଷ୍ପଦାମ |
| ୧୧୫ | ୭ | ଭଲ | ଭଲ |
| — | ଶେଷ | | |
| ୧୧୬ | ୬ | ହସେ | ହେଳେ |
| ୧୧୭ | ୮ | ପଶ୍ଚାନେ | ପଶ୍ଚାନ |
| ୧୨୦ | ୧୪ | କମଳାରେ | କମଳା ବର |
| ୧୨୭ | ୧ | ଆବର | ଥାବର |
| ୧୨୯ | ୧୦ | ଭୁଥ | ଭାଥି |
| — | ୨୦ | ମୋହର | ମୋହଇ |
| ୧୩୨ | ୯ | ବୃଷ୍ଟି | ବୃଷ୍ଟି |
| — | ୧୨ | ପଞ୍ଚ ପ୍ରଦ | ଗଞ୍ଚ ପ୍ରଦ |
| ୧୩୩ | ୧୪ | ମୃଗହ୍ୱପ୍ନ | ମୃଗହପ୍ନ |
| ୧୩୪ | ୧୦ | ପ୍ରାଣେ | ପାଣେ |
| ୧୩୬ | ୧୫ | ବଜାଳ | ବଜ୍ରକ |
| ୧୩୯ | ୭ | କେଷେ | କୋଷେ |
| — | ୧୭ | ଆମ୍ବଆଣ | ଆମ୍ଭ ଆଣ |
| — | — | ହୋଚୋଷଣ | ହୋଇଚୋଷ |
| ୧୪୦ | ୪ | ପଲ୍ଲବେ | ପଲ୍ଲବେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
| --- | --- | --- | --- |
| ୧୪୧ | ୮ | ସୁଖେ | ମୁଖେ |
| — | ୧୬ | ଲଜ | ଲାଗି |
| ୧୪୨ | ୪ | ସେବଣ | ଯେବଣ |
| ୧୪୪ | ୧୪ | ଅଙ୍ଗଲୁ | ଅଙ୍ଗକୁ |
| — | ୧୬ | କଣ୍ଠୁ | କଣ୍ଠୁ |
| — | ୨୦ | କରଜ | ବରଜ |
| — | ୨୧ | ବେଢ଼େ | ବେଢ଼ି |
| — | ୨୩ | ଦ୍ୱଅଣ | ଦ୍ୱଅଣୀ । |
| ୧୪୬ | ୬ | ପଞ୍ଚଗଣ | ପଞ୍ଚବାଣ |
| ୧୫୦ | ୧୨ | କମନ | କମଳ |
| — | ୧୫ | ଶଙ୍କଟ | ଶକଟ |
| ୧୫୧ | ୮ | ଅଳଙ୍କ | |
| ୧୫୨ | ୨୩ | ଅଂଶ | ଅଙ୍ଗ |
| ୧୫୪ | ୨୦ | ମୋ ଧୋଇ | ମାଧୋଇ |
| ୧୫୯ | ୧୩ | ଚନ୍ତେ | ଚନ୍ଦ୍ରେ |
| ୧୬୦ | ୬ | ଶିଳଚଣ | ଶିଲଚ୍ଛଣ |
| ୧୬୨ | ୧ | ପାଣ | ପ୍ରାଣ |
| ୧୬୪ | ୧୮ | ବସାସନେ | ବସ୍ତ୍ରାସନେ |
| ୧୬୬ | ୧୬ | ବଶେ | ବଶେ |
| — | ୧୯ | ପିଚବାସେ | ଢବସେ । |
| ୧୬୯ | ୨ | ସୁପ୍ରେମଳ | ସୁପ୍ରେଷଳ |
| — | ୧୫ | ପଢ | ଗଢ |
| ୧୭୩ | ୬ | ବେଶେ | ଦେଶେ |
| ୧୭୪ | ୧୮ | ଗଢ | ଗଢ଼ |
| ୧୭୬ | ୧୨ | କ ହର | ଢହର |
| — | ୨୨ | ସିଥିଲେ | ସିଞ୍ଚିଲେ |

—8※8—